# ଦଣ୍ଡନାଟ

## ପ୍ରବିଧି ଓ ପ୍ରୟୋଗ



ଡଃ ସନ୍ତୋଷ କୁମାର ଶତପଥୀ

# ଦଣ୍ଡନାଟ : ପ୍ରବିଧି ଓ ପ୍ରୟୋଗ



ଡକ୍ଟର ସନ୍ତୋଷ କୁମାର ଶତପଥୀ

## ଦଣ୍ଡନାଟ : ପ୍ରବିଧି ଓ ପ୍ରୟୋଗ

ଲେଖକ : ଡକ୍ଟର ସନ୍ତୋଷ କୁମାର ଶତପଥୀ

ପ୍ରକାଶିକା: ଶ୍ରୀମତୀ ଶୈବାଳିନୀ ରଥ, କ୍ୱାଟର ନଂ ଏଫ୍ ଏଫ୍/୩, ଇ-ଟାଇପ୍, ବାଣୀବିହାର ନିଉ କଲୋନୀ, ଉତ୍କଳ ବିଶ୍ୱବିଦ୍ୟାଳୟ ପରିସର, ଭୁବନେଶ୍ୱର - ୭୫୧୦୦୪, ଫୋ.ନଂ : (୦୬୭୪)୫୮୫୪୪୨, ମୁଦ୍ରଣ : ରିପ୍ରୋପ୍ରିଣ୍ଟ, ଏନ୍- ୫/୪୩, ଆଇ.ଆର.ସି. ଭିଲେଜ୍, ନୂଆପଲ୍ଲୀ, ଭୁବନେଶ୍ୱର -୧୫, ଲିପି ସଂଯୋଜନା : ଏ.ଟି. ଟେକ୍ନୋକ୍ରାଟ,ପ୍ଲଟ ନଂ-୧୦୬୮, ନୟାପଲ୍ଲୀ, ଭୁବନେଶ୍ୱର-୧୨; ପ୍ରଚ୍ଛଦ: ଅସୀମ ବସୁ, ପ୍ରଥମ ପ୍ରକାଶ : ଜୁନ୍,୧୯୯୯ ।
ମୂଲ୍ୟ : ସାଧାରଣ- ୭୦ ଟଙ୍କା, ଶୋଭନ- ୮୦ ଟଙ୍କା ।

## *DANDANATA : PRABIDHI O PRAYOG*

**BY**

**Dr. Santosh Kumar Satpathy**

**Publisher:** Mrs. Saibalini Rath, Qn. No. FF/3, E Type, Vani Vihar, New Colony, Utkal University Campus, Bhubaneswar-751004, Ph.No. (0674)585442, **Printers:** Reproprint (P) ltd., N-5/43, I.R.C. Village, Nayapalli, Bhubaneswar-15, **Script Writer**: A.T. Technocrat, Pl.No. 1068, Nayapalli, Bhubaneswar-12, **Cover:** Asim Basu, **First Edition** : June, 1999.
**Price** : Ordinary Rs. 70/-, Deluxe- Rs 80/-

# ଉତ୍ସର୍ଗ

ଯେଉଁମାନେ ମୋତେ

ପ୍ରେରଣା ଦେଇଛନ୍ତି,

ସାହାଯ୍ୟ କରିଛନ୍ତି,

ସେମାନଙ୍କ ହାତରେ ...

ଲେଖକ

ଲେଖକଙ୍କ ଅନ୍ୟାନ୍ୟ କୃତି :

ଓଡିଶାର ଦଣ୍ଡନାଟ

ଦାସକାଠିଆ

ଗଞ୍ଜାମର ଲୋକନାଟ୍ୟ

ସ୍ମୃତି ଓ ସ୍ୱାକ୍ଷର (ସଂପାଦନା)

ପ୍ରକାଶ ଅପେକ୍ଷାରେ :

ପଶୁପକ୍ଷୀ ନାଚ

ବାଘନାଚ

# ମୁଖବନ୍ଧ

ଭାରତୀୟ ସାଂସ୍କୃତିକ ପରମ୍ପରାରେ ଅତି ପ୍ରାଚୀନ କାଳରୁ ଓଡ଼ିଶା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ଆସିଅଛି । ଭୌଗଳିକ ପରିସ୍ଥିତି ଦୃଷ୍ଟିରୁ ଏହା ବିଭିନ୍ନ ସଭ୍ୟତା ଓ ସଂସ୍କୃତିର ଏକ ମିଳନ ଭୂମି । ଆର୍ଯ୍ୟ, ଦ୍ରାବିଡ ଓ ଆଦିବାସୀମାନେ ସମୟ କ୍ରମେ ନିଜର ଶତ୍ରୁତା ବିସ୍ମୃତ ହୋଇ ଏକ ସୌହାର୍ଦ୍ଧ୍ୟପୂର୍ଣ୍ଣ ବାତାବରଣ ମଧ୍ୟରେ ଏଠାରେ ବସବାସ ଆରମ୍ଭ କରିଥିଲେ । ଓଡ଼ିଶାର ଉପକୂଳବର୍ତ୍ତୀ ସମତଳ ଭୂମି ଉତ୍ତରାପଥ ଓ ଦକ୍ଷିଣାପଥ ମଧ୍ୟରେ ଯୋଗସୂତ୍ର ରକ୍ଷା କରିବା ପାଇଁ ଏହାଥିଲା ଏକ ପ୍ରଶସ୍ତ ମାର୍ଗ । ଆର୍ଯ୍ୟମାନଙ୍କଦ୍ୱାରା ପରାଜିତ ଓ ବିତାଡିତ ହୋଇ ଆଦିବାସୀମାନେ ଓଡ଼ିଶା ବାଟ ଦେଇ ହିଁ ଦାକ୍ଷିଣାତ୍ୟକୁ ଯାଇଥିବା ଅଧିକ ସମ୍ଭବପର । ସେଥିପାଇଁ ଓଡ଼ିଶାର ସଭ୍ୟତା ଓ ସଂସ୍କୃତିରେ ପରସ୍ପର ବିରୋଧି ଏହି ତିନୋଟି ଗୋଷ୍ଠୀର ପ୍ରଭାବ ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ସର୍ବତ୍ର ଲକ୍ଷ୍ୟ କରାଯାଇଥାଏ । ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତ ପରମ୍ପରା ଏ ଦୃଷ୍ଟିରୁ ଆଜି ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଆହରଣ କରିପାରିଛି ।

ଓଡ଼ିଶାର ଲୋକନୃତ୍ୟ ପରମ୍ପରା ମଧ୍ୟ ଅତ୍ୟନ୍ତ ବିଚିତ୍ର । ଏଥିରେ ସୁଦ୍ଧା ଏହି ତ୍ରିବିଧ ପ୍ରଭାବ ଲକ୍ଷ୍ୟ କରିବା ଆଦୌ କଷ୍ଟକର ନୁହେଁ । ଏହାର ଶତାଧିକ ରୂପ ଓଡ଼ିଶାର ଜନଜୀବନକୁ ଏବେ ବି ଆମୋଦିତ କରିପାରୁଅଛି । ଆଙ୍ଗିକ ଓ ଆତ୍ମିକ ରୂପ ବିଭବ, ଉପସ୍ଥାପନ କୌଶଳ ପ୍ରଭୃତି ଦୃଷ୍ଟିରୁ ଏଗୁଡିକୁ ନାଟକ, ନାଟ, ନୃତ୍ୟ ଓ ନାଚ ଏହିପରି ଚାରି ଭାଗରେ ବିଭକ୍ତ କରାଯାଇପାରେ । ଏ ପ୍ରତ୍ୟେକେ ପୁଣି ପରିବେଷଣ କୌଶଳ ଦୃଷ୍ଟିରୁ ବିଭିନ୍ନ ଭାଗରେ ବିଭକ୍ତ ହୋଇପାରନ୍ତି । ଏ ସମସ୍ତର ଏକ ବିସ୍ତୃତ ବିବରଣୀ ଏ ପର୍ଯ୍ୟନ୍ତ ସଂଗୃହୀତ ହୋଇପାରିଛି ବୋଲି ମନେ ହୁଏ ନାହିଁ । କିନ୍ତୁ, ଛୋଟବଡ ପ୍ରତ୍ୟେକ ନୃତ୍ୟ ସହିତ ପରିଚିତ ନହେଲେ କେବଳ ଓଡ଼ିଶା ଲୋକନୃତ୍ୟ ପରମ୍ପରା କାହିଁକି ଓଡ଼ିଶାର ଲୋକ ସଂସ୍କୃତି ସଂପର୍କରେ ମଧ୍ୟ ଏକ ସ୍ପଷ୍ଟ ଧାରଣା କରିବା ସମ୍ଭବ ନୁହେଁ ।

ଆନନ୍ଦର କଥା, ଏହାର ପ୍ରଥମ ଅର୍ଘ୍ୟ ଡକ୍ଟର ସନ୍ତୋଷ କୁମାର ଶତପଥୀଙ୍କ ଲିଖିତ 'ଓଡ଼ିଶାର ଦଣ୍ଡନାଟ' ପ୍ରକାଶ ପାଇବାକୁ ଯାଉଛି । ଏହା ତାଙ୍କର ଦୀର୍ଘ ଦିନର ଅଧ୍ୟୟନ, ଅନୁଧ୍ୟାନ ଓ ଅନୁଶୀଳନର ଏକ ପ୍ରାମାଣିକ ଆଲେଖ୍ୟ । ଦଣ୍ଡନାଟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପ୍ରତିବର୍ଷ ଅନୁଷ୍ଠିତ ହୋଇ ଆସୁଥିଲେ ସୁଦ୍ଧା ଏ ସମ୍ପର୍କରେ ସବିଶେଷ ଆଲୋଚନା ଏ ପର୍ଯ୍ୟନ୍ତ ହୋଇପାରିନାହିଁ । ୰ ଲକ୍ଷ୍ମୀନାରାୟଣ ସାହୁ ଏ ସମ୍ପର୍କରେ ପ୍ରଥମେ ବିଧିବଦ୍ଧ ଆଲୋଚନାର

ସୂତ୍ରପାତ କରିଥିଲେ । ତାପରେ ହୁଏତ କେହି କେହି ଏହାର ସ୍ଥୂଳ ଆଲୋଚନାର ପ୍ରବୃତ୍ତ ହୋଇଅଛନ୍ତି । କିନ୍ତୁ, ଦଣ୍ଡନାଟରେ ପ୍ରାଚୀନତା, ଲୋକପ୍ରିୟତା, ଓଡିଶାର ଧର୍ମଧାରଣାରେ ଏହାର ପ୍ରଭାବ ପ୍ରଭୃତି ଦୃଷ୍ଟିରୁ ଏହି ଆଲୋଚନା ପର୍ଯ୍ୟାପ୍ତ ବୋଲି ମନେ ହୁଏ ନାହିଁ । ଶିବଶକ୍ତି ଉପାସନା ଓ ଅଗ୍ନିଦଣ୍ଡରୁ ଏହା ଯେ ଅତ୍ୟନ୍ତ ପ୍ରାଚୀନ, ଏପରିକି ପ୍ରାକ୍-ଆର୍ଯ୍ୟଯୁଗର ବୋଲି ମନେହୁଏ । ଚଢେୟା, ଚଢେୟାଣୀ କିମ୍ବା ଶବର, ଶବରୁଣୀ ଆଦିବାସୀ ସଂସ୍କୃତିର ପ୍ରତୀକ । ତା' ସହିତ ଧୂଳିଦଣ୍ଡ ବା ପାଣିଦଣ୍ଡ କୃଷିଭିତ୍ତିକ ସଭ୍ୟତା ପ୍ରଭାବରେ ସ୍ପଷ୍ଟ ସୂଚନା ଦେଇଥାଏ । ଧର୍ମ ଉପାସନା ସହିତ ନୃତ୍ୟର ସଂଯୋଗ ଏହାର ଅନ୍ୟତମ ବିଶେଷତ୍ୱ ।ଏହା ପୁଣି ଓଡିଶାର ଉପକୂଳବର୍ତ୍ତୀ ଅଞ୍ଚଳ ପରିବର୍ତ୍ତେ ଆଦିବାସୀ ଅଧ୍ୟୁଷିତ କିମ୍ବା ସନ୍ନିହିତ ଅଞ୍ଚଳରେ କେବଳ ଦେଖିବାକୁ ମିଳେ । ଏସବୁ ଦୃଷ୍ଟିରୁ ଦଣ୍ଡନାଟ ସହିତ ଓଡିଶାର ସାଂସ୍କୃତିକ ବିବର୍ତ୍ତନର ଯେ ଏକ ନିବିଡ ସଂପର୍କ ରହି ଆସିଅଛି ଏଥିରେ ସନ୍ଦେହ ନାହିଁ । ଏଣୁ ଏହାର ରସାତ୍ମକ ପରିବର୍ତ୍ତନ ଆଧୁନିକତା ପ୍ରଭାବିତ ଏହାର ସାଂପ୍ରତିକ ପରିବେଷଣ ଶିଳ୍ପ କୌଶଳ ମଧ୍ୟରୁ ଆଦିମ ରୂପଟିର ଅବଧାରଣା ପ୍ରଭୃତି ସମ୍ପର୍କରେ ଅଧିକ ଆଲୋଚନା ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ । ଏଥିପାଇଁ ଗବେଷକର ଆନ୍ତରିକତା ଓ ନିଷ୍ଠା ଆବଶ୍ୟକ ।

ଡକ୍ଟର ଶତପଥୀ ଓଡିଶାର ବିଭିନ୍ନ ଅଞ୍ଚଳ ବୁଲି ପ୍ରତ୍ୟକ୍ଷ ଭାବରେ ଯେଉଁସବୁ ତଥ୍ୟ ସଂଗ୍ରହ କରିଛନ୍ତି ତାହାରି ଉପରେ ପ୍ରସ୍ତୁତ ଗ୍ରନ୍ଥଟି ଆଧାରିତ । ଦଣ୍ଡନାଟ ସମ୍ପର୍କରେ ସେ ବହୁ ଉପାଦେୟ ତଥ୍ୟ ଆଲୋଚକମାନଙ୍କୁ ଯୋଗାଇ ଦେଇପାରିଛନ୍ତି । ପରବର୍ତ୍ତୀ ଆଲୋଚକମାନେ ଯେ ଏହାଦ୍ୱାରା ବିଶେଷ ଉପକୃତ ହେବେ ଏଥିରେ ସନ୍ଦେହ ନାହିଁ । ଓଡିଶାର ଅନ୍ୟାନ୍ୟ ଲୋକନୃତ୍ୟ ସମ୍ପର୍କରେ ସେ ଏହିପରି କେତୋଟି ପ୍ରାମାଣିକ ଗ୍ରନ୍ଥ ଆମକୁ ଦେବେ ବୋଲି ଆଶା । ଈଶ୍ୱର ତାଙ୍କର ଏହି ଜାତୀୟ ଉଦ୍ୟମକୁ ଅବ୍ୟାହତ ରଖନ୍ତୁ ।

ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ
ପ୍ରଫେସର, ଓଡିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ଭଞ୍ଜବିହାର, ବ୍ରହ୍ମପୁର - ୭୬୦୦୦୭

କାର୍ତ୍ତିକ ପୂର୍ଣ୍ଣିମା
୨୯.୧୧.୧୯୯୩

୫୫୫୫୫

# ମୋ କଥା

ସ୍ଥୂଳ ଭାବରେ ଦେଖିଲେ ଦଣ୍ଡନାଟ ଏକ ମନୋରଞ୍ଜନ- ଭିତ୍ତିକ ନାଟ୍ୟାନୁଷ୍ଠାନ । କିନ୍ତୁ ଦଣ୍ଡନାଟର ଅନ୍ତଃଜଗତକୁ ଦୃଷ୍ଟି ନିକ୍ଷେପ କଲେ ଯେଉଁ ସବୁ ଉପାଦାନମାନ ଦେଖିବାକୁ ମିଳେ, ତାହା ମନୋରଂଜନ ଠାରୁ ବହୁ ଉର୍ଦ୍ଧ୍ୱରେ । ତେଣୁ ବହିଃଜଗତ ଅପେକ୍ଷା ଅନ୍ତଃଜଗତକୁ ଏଥିରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇଛି । 'ଓଡିଶାର ଦଣ୍ଡନାଟ' ପୁସ୍ତକରେ ଯେଉଁ ସବୁ ବିଷୟ ସଂପର୍କରେ ଆଲୋଚନା କରାଯାଇଥିଲା; ତାହାର ଅଗଣିତ ପାଠକ, ଆଲୋଚକ ଓ ଦଣ୍ଡଭୋକ୍ତା ପ୍ରବିଧିଓ ପ୍ରୟୋଗ ସଂପର୍କରେ କେତେକ ନୂତନ ତଥ୍ୟ ପ୍ରଦାନ କରି ଆଲୋଚନା କରିବାକୁ ମତ ଦେଇଥିଲେ । ସେସବୁ ପ୍ରସଙ୍ଗକୁ ଭିତ୍ତି କରି ଏକ ନୂତନ ଶୈଳୀରେ 'ଦଣ୍ଡନାଟ: ପ୍ରବିଧି ଓ ପ୍ରୟୋଗ' ପ୍ରସ୍ତୁତ ହୋଇଛି । ଓଡିଶାର ବିଭିନ୍ନ ପତ୍ରପତ୍ରିକା ସମେତ ଦେଶର ବିଭିନ୍ନ ଗବେଷଣାମୂଳକ ପତ୍ରିକାମାନଙ୍କରେ ଆଲୋଚକଗଣ ଯେଉଁସବୁ ତଥ୍ୟମାନ 'ଓଡିଶାର ଦଣ୍ଡନାଟ'ଗ୍ରନ୍ଥକୁ ଭିତ୍ତିକରି ଆଲୋଚନା କରିଥିଲେ, ସେସବୁ ଆବଶ୍ୟକ ଅନୁସାରେ ଏଥିରେ ସ୍ଥାନିତ । ଓଡିଶାର ଦଣ୍ଡନାଟ କେବଳ ଆମ ରାଜ୍ୟରେ ନୁହେଁ; ଏହା ଅନ୍ୟ ରାଜ୍ୟ ଓ ଦେଶକୁ ମଧ ସଂକ୍ରମିତ - ତାହାର ସୂଚନା ମଧ ଏଥିରେ ଆଲୋଚିତ । ସର୍ବୋପରି ଦଣ୍ଡନାଟ ମାନବ ସମାଜର କଲ୍ୟାଣ ପାଇଁ ଉଦ୍ଦିଷ୍ଟ; ତାହା ଏଠାରେ ପ୍ରମାଣ କରାଯାଇଛି । ଏହା ପାଠକମାନଙ୍କ ଦ୍ୱାରା ଗୃହୀତ ହେବ ବୋଲି ଆଶା ।

ଓଡିଶାର ଦଣ୍ଡନାଟ ଅନୁଷ୍ଠାନର କଳାକାର ଓ ଭୋକ୍ତାମାନଙ୍କ ସାହାଯ୍ୟ ଓ ସହଯୋଗ ନ ମିଳିଥିଲେ ଏହା ସଂପୂର୍ଣ୍ଣ ହୋଇପାରିନଥାନ୍ତା । ତେଣୁ ସେମାନେ କୃତଜ୍ଞତାର ପାତ୍ର ।

ଏହା ସ୍ୱୟଂସମ୍ପୂର୍ଣ୍ଣ ନୁହେଁ । ଦଣ୍ଡନାଟର ଅନେକ ତଥ୍ୟ ଉନ୍ମୋଚନ କରିବାରେ ବହୁ ଚେଷ୍ଟା କରିଛି । ପୂର୍ବୋକ୍ତ ଗ୍ରନ୍ଥର ଅନେକ ବିଷୟ ଏଥିରେ ସନ୍ନିବେଶିତ । ବହୁ ବିଷୟ

ପ୍ରକାଶ କରିବାକୁ ଦଣ୍ଡନାଟର ଭୋକ୍ତାମାନେ କୁଣ୍ଠିତ ହେଲେ । ପରମ୍ପରା ତ୍ୟାଗ କରିବାକୁ ସେମାନେ ଯେପରି ପ୍ରସ୍ତୁତ ନୁହଁନ୍ତି । ସେମାନଙ୍କ ସାହାଯ୍ୟ ମିଳିଲେ ପରବର୍ତ୍ତୀ ସଂସ୍କରଣରେ ପ୍ରକାଶ ପାଇବ । ଆବଶ୍ୟକତା ଦୃଷ୍ଟିରୁ 'ଓଡିଶାର ଦଣ୍ଡନାଟ'ର ମୁଖବନ୍ଧକୁ ଏଥିରେ ସ୍ଥାନ ଦିଆଯାଇଛି ।

ଗ୍ରନ୍ଥଟିର ରଚନା କାଳରେ ଦିଗଦର୍ଶକ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର ଗଣେଶ୍ୱର ମିଶ୍ର, ପ୍ରାଧ୍ୟାପକ ଲକ୍ଷ୍ମୀନାରାୟଣ ରାଉତ, ଅଗ୍ରଜ ମନ୍ମଥ ଶତପଥୀ, ଶ୍ରଦ୍ଧେୟ ଅମରେନ୍ଦ୍ର ଦାଶ ଓ ତୃପ୍ତିରାଣୀ ଦାଶଙ୍କ ସାହାଯ୍ୟ ଓ ପରାମର୍ଶ କେବେ ଭୁଲିବାର ନୁହେଁ । ସେମାନଙ୍କ ପ୍ରତି କୃତଜ୍ଞତାର ଭାଷା ମୋ ପାଖରେ ନାହିଁ ।

ବାଣୀବିହାର
ଉତ୍କଳ ବିଶ୍ୱବିଦ୍ୟାଳୟ

ସନ୍ତୋଷ କୁମାର ଶତପଥୀ
୩୦.୬.୯୯

# ସୂଚୀପତ୍ର

## ସଙ୍କେତ

'ନାଟ' ଓଡିଆ ଲୋକନୃତ୍ୟ ପରମ୍ପରାର ଏକ ବିଶିଷ୍ଟ ବିଭବ । ଏହା ନାଟକର ଅପଭ୍ରଷ୍ଟ ରୂପ ବୋଲି କହିବା ସମ୍ଭବ ନୁହେଁ । ସଂସ୍କୃତ ନାଟ୍ୟଶାସ୍ତ୍ରମାନଙ୍କରେ ଯେପରି ଉପରୂପକ ରୂପକର ଏକ ହ୍ରାସୀକୃତ ରୂପ, ସେହିପରି ନାଟ, ନାଟକର ଏକ ଗୌଣରୂପ ନୁହେଁ । ପ୍ରଚଳିତ ବିଭିନ୍ନ ନାଟକୁ ସମୀକ୍ଷା କଲେ ଓଡିଶାରେ ଏହାର ଏକ ସ୍ୱତନ୍ତ୍ର ରୂପ ଅବଧାରଣା କରାଯାଇପାରେ । ଏଗୁଡିକ ମୁଖ୍ୟତଃ ବାଦ୍ୟ ଓ ନୃତ୍ୟକୁ ନେଇ ପରିକଳ୍ପିତ । ସଙ୍ଗୀତ କିମ୍ବା ଭାଷା ପରବର୍ତ୍ତୀ କାଳରେ ଏଥିରେ ସଂଯୋଜିତ ହୋଇଛି ବୋଲି କୁହାଯାଇପାରେ । ଏଗୁଡିକ ସାଧାରଣତଃ ଆଙ୍ଗିକ ଅଭିନୟ ପ୍ରଧାନ । ବାଦ୍ୟର ତାଳେ ତାଳେ ଯେଉଁ ବାକ୍‌ହୀନ ଅଭିନୟ ପ୍ରଦର୍ଶିତ ହୁଏ, ତାହା ହିଁ 'ନାଟ' ରୂପେ ବିବେଚିତ । ଏଥି ମଧ୍ୟରୁ 'ଦଣ୍ଡନାଟ' ଅନ୍ୟତମ । କାୟକ୍ଳେଶ କିମ୍ବା କାୟାସାଧନା ଦ୍ୱାରା ଦେବତାର ସନ୍ତୁଷ୍ଟି ବିଧାନ କରି ନିଜର କିମ୍ବା ଅନ୍ୟର ମଙ୍ଗଳକାମନା କରିବା ଏହାର ଲକ୍ଷ୍ୟ । ତେଣୁ ପ୍ରାଥମିକ ଅବସ୍ଥାରେ ଏଥିରେ ବାଚିକ ଅଭିନୟ ଥିବା ସମ୍ଭବ ନୁହେଁ । କିନ୍ତୁ ପରବର୍ତ୍ତୀ ସମୟରେ ରାତ୍ରି ଉଜାଗର ଜନିତ କ୍ଳେଶକୁ ଲାଘବ କରିବା ପାଇଁ କେତେଗୁଡିଏ ମନୋରଞ୍ଜନାତ୍ମକ କୌଶଳ ଏଥିରେ ସଂଯୁକ୍ତ କରାଯାଇଛି । ତନ୍ମଧ୍ୟରୁ 'ସୁଆଙ୍ଗ' ବା 'ଯାତ୍ରା' ପ୍ରଧାନ । ପୂର୍ବରୁ 'ଦଣ୍ଡନାଟ' ସମ୍ପର୍କରେ ଯାହା କିଛି ଆଲୋଚନା କରାଯାଇଛି, ତାହା ଯଥେଷ୍ଟ ହୋଇଛି ବୋଲି ମନେ ହୁଏ ନାହିଁ । ତାହା ମଧ୍ୟ ଅନେକାଂଶରେ ଭ୍ରମାତ୍ମକ ଓ ରୂପ-ଦର୍ଶନ ରହିତ ।

ଓଡିଶାର ଅଧିକାଂଶ ଗ୍ରାମରେ ବିଭିନ୍ନ ପ୍ରକାର ନୃତ୍ୟ ରହିଛି । ଏଥି ମଧ୍ୟରେ ଦଣ୍ଡନାଟ ହେଲା ସବୁଠାରୁ ପ୍ରାଚୀନ ଓ ଜନପ୍ରିୟ । ଦଣ୍ଡନାଟ ଗଞ୍ଜାମ, ପୁରୀ, ଢେଙ୍କାନାଳ, ସମ୍ବଲପୁର, ନୟାଗଡ, ବଲାଙ୍ଗୀର, ଫୁଲବାଣୀ ଓ କୋରାପୁଟରେ ଅଧିକ ପରିଦୃଷ୍ଟ । ଏହି ଜିଲ୍ଲାମାନଙ୍କ ମଧ୍ୟରୁ ନୟାଗଡ, ଗଞ୍ଜାମ ଓ ଢେଙ୍କାନାଳର ଦଣ୍ଡନାଟ ଅଧିକ ଜନପ୍ରିୟ । ସଂପ୍ରତି

ଦଣ୍ଡନାଟ ଦଳର ସଂଖ୍ୟା ହ୍ରାସ ପାଉଥିଲେ ମଧ ପ୍ରତିବର୍ଷ ବିଧାନ ସ୍ୱରୂପ ୧/୨/୩ ଦିନ ପାଇଁ ଝାମୁ ସଦୃଶ ପାଳନ କରାଯାଏ । ଦଣ୍ଡନାଟ ଦଳରେ ବହୁ ପରିବର୍ତ୍ତନ ସଂଘଟିତ ହୋଇଛି । ତଥାପି ପାରମ୍ପରିକ ନୃତ୍ୟ ଶୈଳୀ ଗଞ୍ଜାମ, ଫୁଲବାଣୀ ଓ ଢେଙ୍କାନାଳ ଜିଲ୍ଲାର ଅଧିକାଂଶ ନାଟରେ ପ୍ରତିଫଳିତ । ଏହି ସମସ୍ତ ଗ୍ରାମର ଦଣ୍ଡନାଟ ଦଳରେ ଅଂଶଗ୍ରହଣକାରୀ ଦଣ୍ଡୁଆ ବା ଦଣ୍ଡଭୋକ୍ତା ଦଣ୍ଡବ୍ରତ ନିୟମ ପାଳନରେ ଅତ୍ୟନ୍ତ ନିଷ୍ଠା ଓ ଶୃଙ୍ଖଳା ପ୍ରକାଶ କରିଥାନ୍ତି । ଆଧୁନିକ ଯୁଗର ଚଳଚିତ୍ର, ନାଟକ, ନୃତ୍ୟ ଓ ସଙ୍ଗୀତ ଦ୍ୱାରା କେତେକ ପରିମାଣରେ ଏହା ପ୍ରଭାବିତ ହୋଇଥିଲେ ମଧ ପ୍ରାଚୀନ ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖିଥିବାରୁ ଏହାର ଲୋକପ୍ରିୟତା ଅନ୍ୟାନ୍ୟ ଲୋକନାଟ୍ୟ ତୁଳନାରେ ଅଧିକ । ଏହାର ପରମ୍ପରା ପ୍ରାଚୀନ କାଳରୁ ଅଦ୍ୟାବଧି ଲୋକସମାଜରେ ଏକ ଦୃଢ଼ ଆସ୍ଥାନ ପ୍ରତିଷ୍ଠା କରିପାରିଛି । ଏହା ପ୍ରତି ଜନତା ତଥା ଦର୍ଶକଙ୍କର ଭୟ, ଭକ୍ତି ଏବଂ ଉତ୍କଣ୍ଠା ଏତେ ଦୂର ଜଡିତ ଯେ ଏହାକୁ ସହଜରେ ପରିତ୍ୟାଗ କରିହୁଏ ନାହିଁ । ଏହା ବ୍ୟତୀତ ଶିକ୍ଷିତ, ଅଶିକ୍ଷିତ ତଥା ବ୍ରାହ୍ମଣଠାରୁ ଶୁଦ୍ର ଯାଏଁ ପ୍ରତ୍ୟେକଙ୍କର ଏଥିପ୍ରତି ସହଯୋଗ, ଶ୍ରଦ୍ଧା ଓ ସମ୍ମାନ ଅତୁଟ ରହିଛି । ଏ ଦୃଷ୍ଟିରୁ ଦଣ୍ଡନାଟର ବିଶେଷତ୍ୱ ଓ ତାହାର ସ୍ୱରୂପ ସମ୍ପର୍କରେ ଅବହିତ ହେବା ଆବଶ୍ୟକ ।

## ନାମକରଣ

'ଦଣ୍ଡ' ଶବ୍ଦର ଆଲୋଚନା କରିବାକୁ ଗଲେ ଚାରିଗୋଟି ବିଷୟ ଦେଖିବାକୁ ମିଳେ; ତାହା ହେଲା - ଭାବ, ରାଗ, ଗୀତ ଓ ଆଳାପ । ଦଣ୍ଡନାଟ ମୁଖ୍ୟତଃ ଶାରୀରିକ (ଆଙ୍ଗୀକ ଧର୍ମୀ) ନାଟ । ଏଥିରେ ଶରୀରକୁ ସମ୍ପୂର୍ଣ୍ଣ ବିନିଯୋଗ କରାଯାଏ । 'ଦଣ୍ଡ' ଶବ୍ଦର ବିଭିନ୍ନ ଅର୍ଥ ହେଲା- ବାଡି, ଶାସନ, ଠିଆ ହେବା, ଶାସ୍ତି, ଯମ, ବ୍ୟାୟାମ, ଝାମୁଯାତ୍ରା, ସମୟସୀମା, ଯୁଦ୍ଧ, ଛୋରିମାନା, ରାଜ୍ୟ ଶାସନର ନୀତି ବିଶେଷ, ରାଜଶକ୍ତିର ଚିହ୍ନ ବିଶେଷ, ସୈନ୍ୟ ଏବଂ ଚାରିହାତ ବିଶେଷ ପରିମାଣ ଇତ୍ୟାଦି । କିନ୍ତୁ ଏଠାରେ 'ଦଣ୍ଡ' କହିଲେ ବାଡି ବା ଯଷ୍ଟିକୁ ବୁଝାଏ । ତେଣୁ ଏହା ବାଡି/ଯଷ୍ଟି ନୃତ୍ୟ ହେବାକଥା । କିନ୍ତୁ ଏହାର ତାତ୍ତ୍ୱିକ ଅର୍ଥକୁ ନେଇ ନିମ୍ନଲିଖିତ ଅଭିମତଗୁଡିକୁ ବିଚାର କରାଯାଇପାରେ ।

ପ୍ରଥମେ ୰ ଲକ୍ଷ୍ମୀନାରାୟଣ ସାହୁ ଏ ସମ୍ପର୍କରେ ଲେଖିଛନ୍ତି, ''ମହାଦେବ ଅତି ଭୟଙ୍କର ଦେବତା । ମହାଦେବ ଲୟର ପ୍ରତୀକ । ସମସ୍ତେ ଲୟ (ବିଲୟ)କୁ ଭୟ କରନ୍ତି । ସେଥିପାଇଁ ଶିବଙ୍କୁ ପୂଜାକରି ସନ୍ତୁଷ୍ଟ କରିବା ନିମନ୍ତେ ଅତି କଠୋର ତପସ୍ୟା କରିବାକୁ ପଡେ । ଏହି ତପସ୍ୟା ହିଁ ଦଣ୍ଡନାଟ ।'' (୧) ୰ ସାହୁ ପୁଣି କହନ୍ତି,''ସନ୍ଧ୍ୟାବେଳେ ନିକଟସ୍ଥ ମହାଦେବ ମନ୍ଦିର ପାଖରେ ଥିବା କାମନା ଘରେ ଯେଉଁ ଦୀପ ପ୍ରଜ୍ୱଳିତ କରି ରଖା ହୋଇଥାଏ, ସେଇଥିରୁ ପାଟ ଦଣ୍ଡୁଆ ହାତରେ ଯେଉଁ ଦୁଇଟି ଦୀପଖଣ୍ଡ ଥାଏ ଏବଂ ପାଣି ଦଣ୍ଡୁଆ ହାତରେ

ଯେଉଁ ଅନ୍ୟ ଦୁଇଟି ଦୀପ ଦଣ୍ଡ ଥାଏ, ତାହାକୁ ପ୍ରଜ୍ଜଳିତ କରନ୍ତି, ଏହି ଦୀପ ଦଣ୍ଡରୁ ଏହି ନାଟକୁ ଦଣ୍ଡନାଟ କୁହାଯାଉଥିବ ''। (୨)

ଦ୍ୱିତୀୟତଃ ଭଗବାନ ଶିବ ହେଉଛନ୍ତି ଦଣ୍ଡଭୋକ୍ତାମାନଙ୍କର ପ୍ରଧାନ ଦେବତା । ତାଙ୍କର ଶ୍ରେଷ୍ଠ ନୃତ୍ୟ ହେଉଛି ତାଣ୍ଡବ । ଏହି ନୃତ୍ୟ ସାଧନା ସବାଶେ ସେ ପ୍ରଥମେ ପ୍ରିୟ ତଣ୍ଡମୁନିଙ୍କୁ ଶିକ୍ଷା ପ୍ରଦାନ କରିଥିଲେ । ଏ ସମ୍ପର୍କରେ ଆଚାର୍ଯ୍ୟ ଭରତ କହିଛନ୍ତି -

ରେଚକା ଅଙ୍ଗହାରଶ୍ଚ ପିଣ୍ଡୀବନ୍ଧାସ୍ତଥୈବ ଚ
ସୃଷ୍ଟ୍ୱା ଭଗବତା ଦତ୍ତାସ୍ତଣ୍ଡବେ ମୁନୟେ ତଦା ।
ତେନୋଽପି ହି ତତଃ ସମ୍ୟଗ୍ ଗାନଭାଣ୍ଡ ସମନ୍ୱିତଃ ।।
ନୃତ୍ତ ପ୍ରୟୋଗଃ ସୃଷ୍ଟୋ ଯଃ ସ ତାଣ୍ଡବ ଇତି ସ୍ମୃତଃ । (୩)

ଶିବ ବିଭିନ୍ନ ଅଙ୍ଗହାର ଏବଂ ତାଳ ଲୟ ସମନ୍ୱୟରେ ନୃତ୍ୟ କରିଥିଲେ । ରେଚିତ ଅଙ୍ଗହାର ଓ ପିଣ୍ଡିବନ୍ଧଗୁଡ଼ିକୁ ସୃଷ୍ଟି କରି ସେ ତାଣ୍ଡି (ତଣ୍ଡୁ) ମୁନିଙ୍କୁ ଉପଦେଶ ପ୍ରଦାନ କରିଥିଲେ । ପରେ ତାଣ୍ଡି ଗାନ, ବାଦ୍ୟଯୁକ୍ତ କରି ଯେଉଁ ନୃତ୍ୟ ସୃଷ୍ଟି କଲେ ତାହା 'ତାଣ୍ଡବ' ନାମରେ ଅଭିହିତ ହେଲା । ଅଭିନୟ ଦର୍ପଣରେ ମଧ ଏ ସମ୍ପର୍କରେ ଲେଖାଅଛି -

''ବୁଦ୍ଧ୍ୱାଽଥ ତାଣ୍ଡବଂ ତଣ୍ଡୋର୍ମର୍ତ୍ତ୍ୟେଭ୍ୟୋ ମୁନୟୋଽବଦନ୍'' (୪)

ଅର୍ଥାତ୍ ଶଙ୍କରଙ୍କ ଗଣ ତଣ୍ଡୁ ଦ୍ୱାରା ଭରତଙ୍କୁ ଦିଆଯାଇଥିବା ଏହି ନାଟ୍ୟ ପ୍ରଣାଳୀକୁ ପରବର୍ତ୍ତୀ କାଳର ମୁନିମାନେ ମାନବ ଜଗତରେ 'ତାଣ୍ଡବ' ନାମରେ ପ୍ରଚଳିତ କଲେ ।

ଦଣ୍ଡନାଟରେ ସମସ୍ତ ନୃତ୍ୟାଂଶ ଶିବଙ୍କ ତାଣ୍ଡବ ନୃତ୍ୟର ନିକଟବର୍ତ୍ତୀ ହୋଇଥିବା ଯୋଗୁଁ 'ତଣ୍ଡୁ'ରୁ ଅପଭ୍ରଂଶ ହୋଇ 'ଦଣ୍ଡ' ହୋଇଥିବା ଅନୁମେୟ ।

ତୃତୀୟତଃ ଦଣ୍ଡର ଅନ୍ୟ ଏକ ଅର୍ଥ ହେଉଛି ପତାକା-ଦଣ୍ଡ ବା ଧ୍ୱଜ (Flag staff) । ନାଟ୍ୟଶାସ୍ତ୍ରାନୁଯାୟୀ ଏହା ଜର୍ଜର ଦଣ୍ଡ -

ନାଟ୍ୟ ବିଧ୍ୱଂସିନଃ ସର୍ବେ ଯେନତେ ଜର୍ଜରୀକୃତାଃ ।
ତସ୍ମା ଜର୍ଜର ଏବେତି ନାମତୋଽୟଂ ଭବିଷ୍ୟତି ।। (୫)

ତେଣୁ ନାଟ୍ୟଶାସ୍ତ୍ର ରଚନା ହେବାର ବହୁ ପୂର୍ବରୁ ଜର୍ଜର 'ଦଣ୍ଡ'ର ପ୍ରଚଳନ ଥିବା ଏହି ଗ୍ରନ୍ଥରୁ ଅନୁମିତ । ଏହା ମଧ୍ୟରୁ ଦଣ୍ଡର ଅନ୍ୟନାମ ଜର୍ଜର ଥିବା ମଧ ଅନୁମାନ କରାଯାଇପାରେ । ଏତଦ୍ ବ୍ୟତୀତ ଏହି ଇନ୍ଦ୍ରଧ୍ୱଜ/ ଜର୍ଜର (ଦଣ୍ଡାସ୍ତ୍ର) ସହିତ ଦଣ୍ଡ ନାଟର ସାମଞ୍ଜସ୍ୟ ରହିଥିବା ଲକ୍ଷଣୀୟ ।

ଚତୁର୍ଥରେ, ଶିବଙ୍କର ମହାପ୍ରଳୟ କାଳୀନ 'ଉଦ୍ଦଣ୍ଡ ତାଣ୍ଡବ ନୃତ୍ୟ'ର ଅପଭ୍ରଷ୍ଟ ରୂପ ହେଉଛି - ଦଣ୍ଡନାଟ । (୬)

ପଞ୍ଚମତଃ, ନୃତ୍ୟ ଦୁଇ ପ୍ରକାର- ତାଣ୍ଡବ ଓ ଲାସ୍ୟ । ସାଧାରଣତଃ ପୁରୁଷ ପ୍ରଧାନ ନୃତ୍ୟ ହେଉଛି- ତାଣ୍ଡବ । ନାଟ୍ୟ ମନୋରମାରେ କୁହାଯାଇଛି-

ପୁଂ ନୃତ୍ୟଂ ତାଣ୍ଡବଂ ନାମ ସ୍ତ୍ରୀ ନୃତ୍ୟଂ ଲାସ୍ୟମୁଚ୍ୟତେ ।। (୭)

ପ୍ରକାଶ ଯୋଗ୍ୟ ଯେ ଦଣ୍ଡ ନାଟରେ କେବଳ ପୁରୁଷମାନେ ଅଂଶଗ୍ରହଣ କରି ଶାରୀରିକ ସାଧନା ଆବଶ୍ୟକତା କରୁଥିବାରୁ -'ତାଣ୍ଡବ'ରୁ ଅପଭ୍ରଂଶ ହୋଇ 'ଦଣ୍ଡ' ହୋଇଥିବା କଥା କେହି କେହି ଅନୁମାନ କରନ୍ତି ।

ଷଷ୍ଠତଃ, ଓଡିଶାର ପ୍ରତ୍ୟେକ ଦଣ୍ଡନାଟ ଗ୍ରାମ ବା ସହରର ମୁଖ୍ୟ ରାସ୍ତା ଉପରେ ଯଜମାନ ଗୃହ ସମ୍ମୁଖରେ ଅନୁଷ୍ଠିତ ହୁଏ । ଏହି ରାସ୍ତାକୁ ଗ୍ରାମ୍ୟ ଭାଷାରେ 'ଦାଣ୍ଡ' କୁହାଯାଇଥାଏ । ଏହି ନାଟ 'ଦାଣ୍ଡ'ରେ ଅନୁଷ୍ଠିତ ହେଉଥିବାରୁ 'ଦାଣ୍ଡ'ରୁ ଅପଭ୍ରଂଶ ହୋଇ 'ଦଣ୍ଡ' ନାମରେ ପ୍ରଚଳିତ ହୋଇଥିବା ସମ୍ଭବ ।

ସପ୍ତମତଃ, ଶାସ୍ତ୍ର ଓ ପୁରାଣରେ ଏହି ମାୟା ଜଗତରୁ ଉଦ୍ଧାର ପାଇବା ପାଇଁ ବିଭିନ୍ନ ପ୍ରକାରର ଶାରୀରିକ ଦଣ୍ଡର ବ୍ୟବସ୍ଥା ରହିଅଛି । ତେଣୁ ''ପ୍ରାଚୀନ ଶାସ୍ତ୍ରକାରମାନେ ସଂଯମ ଅର୍ଥରେ ବାକ୍‌ଦଣ୍ଡ, କାୟଦଣ୍ଡ ଓ ମନୋଦଣ୍ଡ କଥା ଉଲ୍ଲେଖ କରିଅଛନ୍ତି । ଯେଉଁମାନେ ଏହି ତିନି ସାଧନାରେ ସଫଳତା ଲାଭ କରନ୍ତି ସେମାନଙ୍କୁ ତ୍ରିଦଣ୍ଡୀ କୁହାଯାଏ । (୮) ଦଣ୍ଡନାଟର ଭୋକ୍ତାମାନେ ଏପ୍ରକାର ସାଧନା କରୁଥିବା ଯୋଗୁଁ 'ତ୍ରିଦଣ୍ଡୀ'ରୁ 'ଦଣ୍ଡ' ଶବ୍ଦର ସୃଷ୍ଟି ହୋଇଥିବା ଅସମ୍ଭବ ନୁହେଁ ।

ଅଷ୍ଟମତଃ, ଶିବଙ୍କର ତାଣ୍ଡବ ନୃତ୍ୟ ସମୟରେ ଭୂମିରେ ପାଦ ପଡନ୍ତେ 'ଦଂ' ଶବ୍ଦ ସୃଷ୍ଟି ହେଲା ଏବଂ ପାଦରେ ବନ୍ଧା ହୋଇଥିବା ଘୁଙ୍ଗୁରମାନଙ୍କରୁ ଗୋଟାଏ ଘୁଙ୍ଗୁର ବିଚ୍ୟୁତ ହୋଇ ମର୍ଦ୍ଦଳ ଦେହରେ ଆଘାତ ହେବାରୁ 'ଡଂ' ଶବ୍ଦର ସୃଷ୍ଟି ହୁଏ । ଫଳରେ ଉଭୟର ସମ୍ମିଶ୍ରଣରେ (ଦଂ+ଡଂ)'ଦଣ୍ଡ' ଶବ୍ଦର ସୃଷ୍ଟି ହୋଇଥିବା ଲୋକବିଶ୍ୱାସରେ ପ୍ରଚଳିତ । ଅବଶ୍ୟ ନୃତ୍ୟ ସମୟରେ ଏପରି ଶବ୍ଦ ସୃଷ୍ଟି ହେବା ଅସମ୍ଭବ ନୁହେଁ ।

ନବମତଃ, ଦଣ୍ଡ ଶବ୍ଦର 'ଦ' ଅକ୍ଷର ଶିବଙ୍କ କଳା ଏବଂ 'ଡ' ଅକ୍ଷର ଗୌରୀଙ୍କ କଳାରୂପେ ଗୃହୀତ । ଏହା ଉଭୟ ପୁରୁଷ ଓ ସ୍ତ୍ରୀଙ୍କ ପ୍ରତୀକ । ତେଣୁ ଏହାକୁ ଧ୍ରୁବଦଣ୍ଡ ବୋଲି କୁହାଯାଏ । (୯) ଉଭୟ ବର୍ଣ୍ଣର ମିଳନ ଓ ଅନୁନାସିକତା ମଧ୍ୟରୁ 'ଦଣ୍ଡ' ଶବ୍ଦ ସୃଷ୍ଟି ଲାଭ ହୋଇଥିବା ବିଶ୍ୱାସ କରାଯାଇପାରେ ।

ଦଶମତଃ, ଦଣ୍ଡୀଙ୍କ 'ଦଶକୁମାର ଚରିତ'ରେ ଦଣ୍ଡ ଶବ୍ଦର ଏକ ସୁନ୍ଦର ତର୍ଜମା କରାଯାଇଛି -

ବ୍ରହ୍ମାଣ୍ଡ ଛତ୍ର ଦଣ୍ଡଃ ଶତାଧୃତି
ଭବନାମ୍ଭୋରୁହୋ ନାଳଦଣ୍ଡଃ
କ୍ଷୌଣୀ ଯୌ କୂପଦଣ୍ଡଃ
କ୍ଷରଦମର ସରିତ୍ ପଟିକା କେତୁଦଣ୍ଡଃ ।।
ଜ୍ୟୋତିଶ୍ଚକ୍ରାକ୍ଷ ଦଣ୍ଡସ୍ତ୍ରି ଭୁବନ
ବିଜୟ ସ୍ତମ୍ଭଦଂଡୋଙ୍ଘ୍ରିଦଣ୍ଡଃ
ଶ୍ରେୟସ୍ତ୍ରୈ ବିକ୍ରମସ୍ତେ ବିତରତୁ
ବିବୁଧେ ଦ୍ୱେଷିଣାଂ କାଳଦଣ୍ଡଃ ।। (ନାନ୍ଦୀ)

ଯଥା- ବ୍ରହ୍ମାଣ୍ଡ ରୂପକ ଛତ୍ରର ଦଣ୍ଡ, ବ୍ରହ୍ମାଙ୍କର ବାସସ୍ଥାନ ନାଭିକମଳର ନାଳଦଣ୍ଡ, ପୃଥିବୀ ରୂପକ ତରଣୀର ମାସ୍ତୁଲ ଦଣ୍ଡ, ପ୍ରବାହିତ ମନ୍ଦାକିନୀର ପତକା ଦଣ୍ଡ, ନକ୍ଷତ୍ର ମଣ୍ଡଳର ଚକ୍ରଦଣ୍ଡ, ତ୍ରିଭୁବନ ବିଜୟର ସ୍ତମ୍ଭଦଣ୍ଡ, ଦେବଶତ୍ରୁଙ୍କର ଯମଦଣ୍ଡ ସଦୃଶ ତ୍ରିବିକ୍ରମ ବିଷ୍ଣୁଙ୍କର ପାଦଦଣ୍ଡ ଏହିପରି ସପ୍ତଦଣ୍ଡ କଲ୍ୟାଣ ବିଧାନ ସକାଶେ ଉଦ୍ଦିଷ୍ଟ । (୧୦) ଏହି ଦୃଷ୍ଟିରୁ 'ଦଣ୍ଡ'କଲ୍ୟାଣକାରୀ ନାଟ ।

ଏକାଦଶତଃ,'ଦଣ୍ଡ ନାଟରେ ଅଂଶ ଗ୍ରହଣ କରିଥିବା ବ୍ୟକ୍ତିମାନେ ଅତି ସଂଯମ ଓ ନିଷ୍ଠାପର ଭାବରେ ଚଳନ୍ତି ଓ ନିଜ ଇଚ୍ଛାରେ ନିଜ ଶରୀରକୁ ବହୁ ଭାବରେ ଦଣ୍ଡିତ କରିଥାନ୍ତି' । (୧୧) ତେଣୁ ନାଟ୍ୟ-ମନୋରମାରେ କୁହାଯାଇଛି -'ଅଙ୍ଗବିକ୍ଷେପ ବାହୁଲ୍ୟଂ ତଥାଽଭିନୟ ଶୂନ୍ୟତା' । (୧୨) ଅର୍ଥାତ୍, ବିଭିନ୍ନ ଅଙ୍ଗବିଶେଷ ନୃତ୍ୟ କିନ୍ତୁ ଅଭିନୟ ଶୂନ୍ୟ ଏ ପ୍ରକାର ଶାରୀରିକ ପୀଡନରୁ 'ଦଣ୍ଡ' ଶବ୍ଦ ଆସିଥାଇପାରେ ।

ଉପରୋକ୍ତ ବିଭିନ୍ନ ମତାମତରୁ ଏତିକି ସ୍ପଷ୍ଟ ହୁଏ ଯେ 'ଦଣ୍ଡ' ଶବ୍ଦ ଶାରୀରିକ ଦଣ୍ଡ, ଇର୍ଜର ଦଣ୍ଡ ଏବଂ ପ୍ରାଚୀନ ତନ୍ତ୍ର ଓ ଲୌକିକ ପରମ୍ପରାର ଏକ ସମ୍ମିଳିତ ରୂପ । ଏହାର ପ୍ରାରମ୍ଭିକ ରୂପ ସହ ବହୁ ଆନୁସଙ୍ଗିକ ବିଷୟର ସମ୍ମିଶ୍ରଣରେ ଆଜିର ଦଣ୍ଡନାଟ ରୂପ ପରିଗ୍ରହ କରିଅଛି । କିନ୍ତୁ ଏହାର ପ୍ରାଚୀନତା ଅନସ୍ୱୀକାର୍ଯ୍ୟ ।

# ପ୍ରାଚୀନ ଯୁଗରେ ଦଣ୍ଡନାଟ

ଦଣ୍ଡନୃତ୍ୟର ଅତୀତ ନିର୍ଦ୍ଧାରଣ କରିବା ସହଜ ନୁହେଁ, ତଥାପି ଏହା ଯେ ବହୁ ପ୍ରାଚୀନ ଓ ନାଟ୍ୟଶାସ୍ତ୍ର ରଚନା ପୂର୍ବରୁ ପ୍ରଚଳିତ, ଏପରି ଅନୁମାନ କରିବା ଅଯୌକ୍ତିକ ନୁହେଁ । ଦଣ୍ଡ ସହ କିଛି ନୃତ୍ୟ ଓ ସଙ୍ଗୀତର ପ୍ରୟୋଜନ ଉଭୟ ଦଣ୍ଡଭୋକ୍ତା ଓ ମାନବ ସମାଜର ମନୋରଞ୍ଜନ ନିମିତ୍ତ ଉଦ୍ଦିଷ୍ଟ ଥିଲା । ଏହା ମୁଖ୍ୟତଃ ଶାରୀରିକ ସାଧନା ଓ କଳାକୌଶଳ ଉପରେ ପର୍ଯ୍ୟବେସିତ । ଏହାକୁ ଦର୍ଶନ କରି ଦର୍ଶକମାନେ ଭକ୍ତି ଓ ଆମୋଦ ଅନୁଭବ କରୁଥିଲେ । ପ୍ରାଥମିକ ସ୍ତରରେ ଏଥିରେ କୌଣସି କଳାର ପ୍ରଭାବ ନଥିଲା । ତେଣୁ ଏହାକୁ ନୃତ୍ୟର ଏକ ପ୍ରାଥମିକ କଳା (Primitive Art ) ଭାବରେ ଗ୍ରହଣ କରାଯାଇପାରେ ।

ନାଟ୍ୟ ଶାସ୍ତ୍ରର ସୃଷ୍ଟି ପୂର୍ବବର୍ତ୍ତୀ ଲୋକନୃତ୍ୟ ଓ ଶାସ୍ତ୍ରୀୟ ନୃତ୍ୟସମୂହର ରୂପରେଖ ନିର୍ଦ୍ଧାରଣ କରିବା ସମ୍ଭବ ନୁହେଁ । ଅବଶ୍ୟ ନାଟ୍ୟଶାସ୍ତ୍ରର ଯେଉଁ ରୂପ ସଂପ୍ରତି ଦେଖିବାକୁ ମିଳେ, ତାହାର ରଚନା କାଳ ସମ୍ପର୍କରେ ଐତିହାସିକମାନଙ୍କର ବିଭିନ୍ନ ବିବାଦୀୟ ମତ ରହିଅଛି । ବୈଦିକ ଯୁଗରୁ ଆରମ୍ଭକରି ଖ୍ରୀ.ପୂ ଅଷ୍ଟମ ଶତକ ପର୍ଯ୍ୟନ୍ତ ବିଭିନ୍ନ ଯୁଗରେ ଏହା ରଚିତ ହୋଇଥିବା ପ୍ରମାଣର ଅଭାବ ନାହିଁ । ତଥାପି ଏହାର ଆଧୁନିକ ରୂପ ମହାକବି କାଳିଦାସଙ୍କ (ଖ୍ରୀ.ପୂ. ୧ମ ଶତକ ) ପୂର୍ବରୁ ଶେଷ ହୋଇଥିବା ନିଶ୍ଚିତ । (୧୩) କାରଣ ମହାକବି କାଳିଦାସଙ୍କ ନାଟକରେ ନାଟ୍ୟଶାସ୍ତ୍ରର ନିୟମାବଳୀର ଏକ ସ୍ପଷ୍ଟ ସଙ୍କେତ ଦେଖିବାକୁ ମିଳେ । ନାଟ୍ୟଶାସ୍ତ୍ରର ରଚନା କାଳ ସମ୍ପର୍କରେ ନିମ୍ନଲିଖିତ ଐତିହାସିକମାନଙ୍କର ଅନୁମାନ/ମତ ଉଲ୍ଲେଖ କରାଯାଇପାରେ :-

୧-ଵହ୍ମ୍ୟାଲାଲ ପୋଦାର - ବୈଦିକ ଯୁଗରୁ ପୌରାଣିକ ଯୁଗପର୍ଯ୍ୟନ୍ତ ।

୨-ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ- ଖ୍ରୀ.ପୂ. ୨୦୦ ବର୍ଷ

୩-ମହାମହୋପାଧ୍ୟାୟ ପା ବା, କାଣେ- ଖ୍ରୀ ପୂ. ୧ମ ଶତକଠାରୁ କାଳିଦାସଙ୍କ ସମୟ ପର୍ଯ୍ୟନ୍ତ ।

୪-ଡକ୍ଟର ମନମୋହନ ଘୋଷ- ଖ୍ରୀ.ପୂ.୨୦୦ ବର୍ଷର ସମୟ ମଧ୍ୟରେ ।

୫- ପ୍ରଫେସର କୀଥ - ଖ୍ରୀ.ପୂ.୩୦୦ ବର୍ଷ ।

୬- ଆଇ. ମ୍ୟାକ୍‌ଡୋନାଲ - ଖ୍ରୀ.ପୂ. ୬୦୦ବର୍ଷ ପ୍ରାୟ ।

୭- ସୁଶୀଲ କୁମାର ଦେ - ଖ୍ରୀ.ପୂ.୮୦୦ ବର୍ଷ ।

ଏଥିରୁ ସ୍ପଷ୍ଟ ହୁଏ ଯେ ନାଟ୍ୟଶାସ୍ତ୍ର ରଚନା ପୂର୍ବରୁ ଦଣ୍ଡନାଟ ଏକ ଆଙ୍ଗିକ- ନୃତ୍ୟାଭିନୟ ଥିବା ସମ୍ଭବ, ଏବଂ ନାଟ୍ୟଶାସ୍ତ୍ର ରଚନା ବେଳକୁ ଭାରତରେ ସଙ୍ଗୀତ ଓ ନୃତ୍ୟର ଏକ ସୁଦୀର୍ଘ ପରମ୍ପରା ଥିବା ମନେହୁଏ । ସେତେବେଳେ ଦଣ୍ଡନାଟ ତାଣ୍ଡବ ନୃତ୍ୟର ଏକ ଉପରୂପ ଥିଲା । ପରେ

ଏଥିରେ ଧର୍ମିୟ ପ୍ରଭାବ ଅନୁପ୍ରବେଶ କରିଥିବା ସମ୍ଭବପର । ଏଣୁ "ଦଣ୍ଡନାଟ ଏକ ପ୍ରକାର ନାଟ ସତ; କିନ୍ତୁ ତାହା ଭିତରେ ଦେବତାଙ୍କୁ ସନ୍ତୁଷ୍ଟ କରିବା ଏବଂ ରୋଗରୁ ମୁକ୍ତ ହେବା ଗୋଟିଏ ପ୍ରଧାନ ଅର୍ଥ"। (୧୪)- ମତକୁ ଅସ୍ୱୀକାର କରାଯାଇ ନପାରେ ।

ଦଣ୍ଡନାଟରେ ଶିବଙ୍କୁ ଶ୍ରେଷ୍ଠ ଦେବତା ଭାବରେ ଗ୍ରହଣ କରାଯାଇଛି । ପୌରାଣିକ ମତରେ ବ୍ରହ୍ମା,ବିଷ୍ଣୁ ଓ ମହେଶ୍ୱର ଯଥାକ୍ରମେ ସୃଷ୍ଟି, ସ୍ଥିତି ଓ ବିଲୟର ପ୍ରତୀକ । ତେଣୁ ଶିବ ହେଉଛନ୍ତି ଭୟଙ୍କର ଦେବତା । ଅନ୍ୟ ଦେବତାଙ୍କ ତୁଳନାରେ ଶିବଙ୍କର ଆଭୁଷଣ-ଦର୍ଶନ ମନରେ ଭୟ ଓ ଭକ୍ତି ଉଦ୍ରେକ କରାଏ । "ସେଥିପାଇଁ ତାଙ୍କୁ ପୂଜା କରି ସନ୍ତୁଷ୍ଟ କରିବା ନିମନ୍ତେ ଅତି କଠୋର ତପସ୍ୟା କରିବାକୁ ପଡେ । ଏହି ତପସ୍ୟା ହିଁ ଦଣ୍ଡନାଟ"। (୧୫) ତେଣୁ ଏଥିରୁ ଏହାର ପ୍ରାଚୀନ ସମ୍ପର୍କରେ ଅନୁମାନ କରାଯାଇପାରେ । ଏହା ବ୍ୟତୀତ ଶିବଙ୍କ ଆରାଧନା ସହ ଲିଙ୍ଗ ପୂଜା ଜଡିତ ଥିବା ଯୋଗୁଁ ବହୁ ମୁନୀ, ମନୀଷୀ ଏବଂ ଆଲୋଚକଙ୍କ ମତରେ ଏହି ନାଟ ପୌରାଣିକ କାଳରୁ ଭାରତରେ ପ୍ରଚଳିତ ।

ମହାଭାରତରେ ଜତୁଗୃହ ସମ୍ବନ୍ଧୀୟ ବର୍ଣ୍ଣନା କରାଯାଇଥିବା ବେଳେ ବାରୁଣାବତଠାରେ 'ଶିବଯାତ୍ରା' ଦେଖିବା ପାଇଁ ଦୁର୍ଯୋଧନ ପାଣ୍ଡବମାନଙ୍କୁ ପଠାଇଥିଲେ । ଏହା ଦଣ୍ଡଯାତ୍ରାର ଏକ ରୂପ ହୋଇପାରେ ।

ନାଟ୍ୟ ଶାସ୍ତ୍ରାନୁଯାୟୀ, ଦେବରାଜ ଇନ୍ଦ୍ର ଏକ ଅଲୌକିକ ଆୟୁଧ ସାହାଯ୍ୟରେ ନାଟ୍ୟ ବିନାଶକାରୀଙ୍କୁ ଜର୍ଜରିତ କରିଥିବା ଯୋଗୁଁ ଏହି ଧ୍ୱଜର ନାମ ଜର୍ଜର ହୋଇଛି । କାମନାର ସିଦ୍ଧି ତଥା ନାଟକର ସଫଳତା ଓ ନିର୍ବିଘ୍ନ ପରିସମାପ୍ତି ପାଇଁ ଦଣ୍ଡନାଟରେ ପ୍ରଥମେ ଦଣ୍ଡକୁ ପୂଜା କରାଯାଏ । ସେହିପରି ନାଟ୍ୟାରମ୍ଭ ପୂର୍ବରୁ ସର୍ବାଗ୍ରେ 'ଜର୍ଜର' ପୂଜା କରାଯିବା ସକାଶେ ନାଟ୍ୟଶାସ୍ତ୍ରରେ ମଧ୍ୟ ନିର୍ଦ୍ଦେଶ ଅଛି -

"ଜର୍ଜରାୟ ପ୍ରଯୁଞ୍ଜୀତ ପୂଜାଂ ନାଟ୍ୟ ପ୍ରସିଦ୍ଧ ୟେ "। (୧୬)

ତେଣୁ ନାଟ୍ୟଶାସ୍ତ୍ର ରଚନା ପୂର୍ବରୁ କୌଣସି ଏକ ଦଣ୍ଡର ପ୍ରଚଳନ ଥିବା ନିଃସନ୍ଦେହରେ କୁହାଯାଇପାରେ ।

ପୁନଶ୍ଚ ଦଣ୍ଡନାଟର ପ୍ରଧାନ ଦେବତା ଶିବଙ୍କ ଆରାଧନା ସହ ଲିଙ୍ଗ ପୂଜା ଜଡିତ ଥିବାରୁ ଏହି ପୂଜାରେ ସାଧାରଣତଃ ଦୁଇ ପ୍ରକାରର ଧାରା ଦେଖିବାକୁ ମିଳେ । ପ୍ରଥମ ହେଲା ମଙ୍ଗଳ ଏବଂ ଅନ୍ୟଟି ବ୍ୟଭିଚାର । ଏହି ଶିବ ବା ଲିଙ୍ଗ ପୂଜା ଅତି ପ୍ରାଚୀନ ସେଥିରେ ସନ୍ଦେହ ନାହିଁ । ଭାରତରେ ଶିବାରାଧନା ବ୍ରାହ୍ମଣଙ୍କ ବ୍ୟତୀତ ଅନ୍ୟ ସମ୍ପ୍ରଦାୟର ବ୍ୟକ୍ତିମାନେ ମଧ୍ୟ କରନ୍ତି । ଦେଖିବାକୁ ଗଲେ ଦଣ୍ଡନାଟରେ ଜାତି ପ୍ରଥାର କୌଣସି ପ୍ରଭାବ ନ ଥିବା ଯୋଗୁଁ ଏହାକୁ ଶିବାରାଧନାର ପ୍ରାଚୀନ ପରମ୍ପରା ସହ ସମ୍ପୃକ୍ତ କରାଯାଇପାରେ ।

ଭଗବାନ ଶିବ ଜାତୀୟସ୍ତରରେ ପ୍ରଧାନ ଦେବତା ଏବଂ ପୌରାଣିକ ତ୍ରୟୀର ଅନ୍ୟତମ ପ୍ରତିନିଧି ହୋଇଥିବା ଯୋଗୁଁ ଦକ୍ଷିଣ-ପୂର୍ବ ଭାରତରେ ଶିବଙ୍କ ପ୍ରତି ଜନସାଧାରଣଙ୍କ ଭୟ ଓ ଭକ୍ତି ବିଶେଷ ବିଦ୍ୟମାନ । ତେଣୁ କଳିଙ୍ଗର ସାଧବ ଓ ଧର୍ମ ପ୍ରଚାରକମାନେ ଶ୍ରୀଲଙ୍କା, ବାଲି, ସୁମାତ୍ରା, ମାଲେସିଆ ପ୍ରଭୃତି ଦେଶମାନଙ୍କରେ ବାଣିଜ୍ୟ ଓ ବ୍ୟବସାୟ ସହ ଶୈବ ଧର୍ମ ପ୍ରଚାର କରିଥିବା ଇତିହାସରୁ ଜଣାଯାଏ । ଶୈବଧର୍ମ ବାଲି ଦ୍ୱୀପର ଅନ୍ୟତମ ପ୍ରଚଳିତ ଧର୍ମ । ଓଡିଶା ସଦୃଶ୍ୟ ଆନ୍ଧ୍ର, ତାମିଲନାଡୁ ସମେତ ସମଗ୍ର ଦକ୍ଷିଣ ଭାରତରେ ବହୁଳ ଶିବ ପୂଜା ହେବା ସହ ଅସଂଖ୍ୟ ଶୈବ- ମନ୍ଦିରମାନ ଦୃଷ୍ଟି ଗୋଚର ହୁଏ । ଶିବଙ୍କର ତାଣ୍ଡବ ମୂର୍ତ୍ତି ଏଠାରେ ପୂଜିତ ହେଉଥିବା ଯୋଗୁଁ ଶିବଙ୍କୁ 'ନଟରାଜ' ନାମରେ ଭୂଷିତ କରାଯାଇଛି ।

"ବଙ୍ଗ ପ୍ରଦେଶରେ ବିଭିନ୍ନ ଅଞ୍ଚଳରୁ ପୁରାତନ ଶିବଲିଙ୍ଗମାନ ମିଳିଅଛି, କେଉଁଠାରୁ ଏକମୁଖୀ ଲିଙ୍ଗ, କେଉଁଠାରୁ ବା ଚତୁଃମୁଖୀ ଲିଙ୍ଗ । ଏଥିରୁ ଉକ୍ତ ପ୍ରଦେଶରେ ଶୈବ ଧର୍ମର ପ୍ରାଚୀନତା ଜଣାଯାଏ, ଏବଂ ମନେ ହୁଏ- ମଧ୍ୟ ଯୁଗ ବେଳକୁ ଏଠାରେ ଶୈବଧର୍ମ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିସାରିଥିଲା "। (୧୭)

ପ୍ରାଚୀନ ଆସାମର ଲୋକପ୍ରିୟ ଦେବତାଙ୍କ ମଧ୍ୟରେ ଶିବ-ମହେଶ୍ୱର ଅନ୍ୟତମ । ସେ କାଳରେ ଅନ୍ୟାନ୍ୟ ମନ୍ଦିର ତୁଳନାରେ ଏଠାରେ ବହୁ ପରିମାଣରେ ଶିବମନ୍ଦିର ଥିବା ପ୍ରମାଣ ମିଳେ । ଆସାମର ଶିବସାଗର ଅନ୍ତର୍ଗତ ବିଖ୍ୟାତ 'ଶିବଦୋଳ'ମନ୍ଦିରକୁ ଖ୍ରୀ: ୧୭୬୦ରେ ଜଣେ ନୈଷ୍ଠିକ ହିନ୍ଦୁ ରାଜା ନିର୍ମାଣ କରିଥିବା ଜଣାଯାଏ । ଅନେକ ରାଜା ମହାରାଜା ଶିବ-ଭକ୍ତ ଭାବରେ ନିଜକୁ 'ପରମ- ମାହେଶ୍ୱର' ପଦବୀରେ ଭୂଷିତ କରିବାକୁ ଗୌରବ ମନେ କରିଥିଲେ । ପ୍ରାକ୍-କାଳରେ ଆସାମରେ ଆଦିବାସୀ ଓ ହିନ୍ଦୁ ଉଭୟଙ୍କ ନିକଟରେ ଶିବପୂଜା ସବୁଠାରୁ ଥିଲା ପ୍ରିୟ । ଏଠାରେ ଶିବ ମନ୍ଦିର ବ୍ୟତୀତ ଅନେକ 'ଶିବ୍ଥାନ' ନାମରେ ପବିତ୍ର-ପୀଠ ଥିବା ଜଣାଯାଏ ।

ସଂପ୍ରତି ଓଡିଶାର ପ୍ରତ୍ୟେକ ନଗର/ପଲ୍ଲୀରେ ଶିବ ମନ୍ଦିର ରହିଛି । ଶୈବ-ମନ୍ଦିର ପ୍ରତିଷ୍ଠା ବିକାଶରେ ତତ୍କାଳୀନ ଓଡିଶାର ରାଜା, ମହାରାଜାମାନେ ବହୁ ପରିମାଣରେ ଦାୟୀ । ଏହି ରାଜା, ମହାରାଜାମାନଙ୍କର ଅବଦାନ ସମ୍ପର୍କରେ କିଛି ଆଲୋଚନା କରାଯିବା ଆବଶ୍ୟକ ।

ପ୍ରାଚୀନ ଉତ୍କଳର ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ, ସେତେବେଳେ ପ୍ରଚଳିତ ସମସ୍ତ ଧର୍ମ ମଧ୍ୟରେ ଧର୍ମଗତ ସ୍ୱାଧୀନ ଚିନ୍ତା ଓ ପ୍ରସାରର କୌଣସି ବିରୋଧ ନ ଥିଲା । ତେଣୁ ବୌଦ୍ଧଧର୍ମ ସହ ସମାନ୍ତରାଳ ଭାବରେ ବ୍ରାହ୍ମଣ୍ୟ ଧର୍ମର ଗୌରବ ପୁନଃ ପ୍ରତିଷ୍ଠା ସକାଶେ ବିଭିନ୍ନ କ୍ଷେତ୍ରରେ ଆନ୍ତରିକ ପ୍ରତିକ୍ରିୟା ସୃଷ୍ଟି ହୋଇ ଶୈବ,ଶାକ୍ତ ଓ ଭାଗବତ ପ୍ରଭୃତି

ଧର୍ମ ଏହି ବୈଦିକ-ଧର୍ମର ଅଙ୍ଗୀଭୁତ ହୋଇଯାଇଥିଲେ ଏବଂ ସମ୍ରାଟ ଅଶୋକଙ୍କ ପରବର୍ତ୍ତୀ କାଳରେ ଅନେକ ଦେବଦେବୀ ବ୍ରାହ୍ମଣ ସମାଜରେ ପ୍ରମୁଖ ସ୍ଥାନ ଲାଭ କରିଥିଲେ ।

ସପ୍ତମ-ଶତାବ୍ଦୀରେ ରାଜତ୍ୱ କରୁଥିବା ଭୌମକର ରାଜବଂଶୀମାନେ ପ୍ରାରମ୍ଭିକ ଅବସ୍ଥାରେ ବୌଦ୍ଧ-ଧର୍ମାବଲମ୍ବୀ ଥିଲେ ମଧ ବ୍ରାହ୍ମଣ୍ୟ ଧର୍ମ ପ୍ରଭାବରୁ ଶୈବଧର୍ମର ଆନୁଗତ୍ୟ ଗ୍ରହଣ କଲେ; ଫଳରେ ବୌଦ୍ଧଧର୍ମ ରାଜଶକ୍ତିର ସମର୍ଥନ ଓଡିଶାରେ ହରାଇଲା । ଏହି ପରିପେକ୍ଷୀରେ ଅଷ୍ଟମ-ନବମ ଶତାବ୍ଦୀକୁ ବୌଦ୍ଧଧର୍ମ ଓ ଶୈବଧର୍ମର ସନ୍ଧିକାଳ ଭାବରେ ଗ୍ରହଣ କରାଯାଇପାରେ । ଏହି ସମୟରେ ଦଣ୍ଡ ନାଟର ଉନ୍ମେଷ ହୋଇଥିବା ମନେ ହୁଏ ।

ପରବର୍ତ୍ତୀ ସମୟରେ ସୋମବଂଶୀ ରାଜାମାନେ ଶୈବ ଧର୍ମର ଆନୁଗତ୍ୟ ସ୍ୱୀକାର କରି ଏହାର ପ୍ରଧାନ ପୃଷ୍ଠପୋଷକ ହେଲେ ଫଳରେ ବୌଦ୍ଧ ଧର୍ମର ପ୍ରସାର ସମ୍ପୂର୍ଣ୍ଣ ବାଧାପ୍ରାପ୍ତ ହେଲା । ଖ୍ରୀ ୩ୟ/୪ର୍ଥ ଶତକ ସୁଦ୍ଧା ଓଡିଶାରେ କେନ୍ଦୁଝର ଅଞ୍ଚଳରେ ଶିବପୂଜା ପ୍ରଚଳିତ ଥିବାର ପ୍ରମାଣ ଅସନ-ପାଟ୍ରେ ଆବିଷ୍କୃତ ନୃତ୍ୟରତ ଶିବ ବିଗ୍ରହରୁ ପ୍ରମାଣିତ ହୋଇଛି । ମାଠରବଂଶୀୟ ରାଜାମାନେ ଯଦିଓ ଶୈବ ଧର୍ମାବଲମ୍ବୀ ନଥିଲେ କିନ୍ତୁ ଏହାର ପ୍ରସାର ତଥା ଲୋକପ୍ରିୟତା ଦିଗରେ ବାଧକ ନଥିଲେ । ଏହି ଦୃଷ୍ଟିରୁ ଓଡିଶାରେ ଶୈବଧର୍ମର ଅଭ୍ୟୁଦୟ ୩ୟ ଶତକ ପୂର୍ବରୁ ହୋଇଥିବା ଅନୁମାନ କରାଯାଇପାରେ । ଗଙ୍ଗବଂଶୀ ରାଜାମାନେ ଶୈବ ଧର୍ମର ପୃଷ୍ଠପୋଷକତା କରିଥିବା କେତେକ ତାମ୍ର ଶାସନରୁ ସୂଚୀତ ହୁଏ । ମୁଖ ଲିଙ୍ଗେଶ୍ୱର ଏବଂ ମହେନ୍ଦ୍ରଗିରିର ଗୋକର୍ଣ୍ଣେଶ୍ୱର ସେମାନଙ୍କର କୁଳଦେବତା ଥିଲେ । ଏହା ବ୍ୟତୀତ ଶୈଳୋଭବଂଶୀ ରାଜାମାନେ (୭ମ ଶତକ) ପ୍ରାରମ୍ଭିକ ଅବସ୍ଥାରେ ବ୍ରହ୍ମାଙ୍କ ଉପାସକ ଥିଲେ ମଧ ପରିଶେଷରେ ଶୈବଧର୍ମାବଲମ୍ବୀ ହେଲେ । ଏମାନଙ୍କ ରାଜତ୍ୱ କାଳରେ ଟିକିଲିର ସୋମଶ୍ୱେର, ଭୁଙ୍ଗୀଶ୍ୱର ଓ ଅଗସ୍ତିଶ୍ୱର ମନ୍ଦିର ତଥା ଆସ୍କାର ତ୍ରିବିଧେଶ୍ୱର ମନ୍ଦିର ନିର୍ମାଣ କରାଇଥିବା ଅନୁମାନ କରାଯାଏ । ଅନ୍ୟାନ୍ୟ ମନ୍ଦିରମାନଙ୍କ ମଧ୍ୟରେ ଭୁବନେଶ୍ୱରର ଶତ୍ରୁଘ୍ନେଶ୍ୱର, ଲକ୍ଷ୍ମଣେଶ୍ୱର, ପରଶୁରାମେଶ୍ୱର ପ୍ରଭୃତି ସମ୍ପ୍ରତି ଜରାଜୀର୍ଣ୍ଣ ଅବସ୍ଥାରେ ବିଦ୍ୟମାନ ।

ଭୌମକରବଂଶୀ ରାଜାମାନଙ୍କ ମଧରେ କେତେକ 'ପରମ ମହେଶ୍ୱର' ଉପାଧିରେ ଭୂଷିତ ହୋଇ ଶୈବ ଧର୍ମର ପୃଷ୍ଠ-ପୋଷକତା କରି ଏହାର ପ୍ରସାର ଦିଗରେ ମନୋନିବେଶ କରିଥିଲେ । ଏମାନଙ୍କ ରାଜତ୍ୱ କାଳରେ ତନ୍ତ୍ରର ପ୍ରଭାବରୁ ଶୈବ ଧର୍ମରେ କେତେକ ପରିବର୍ତ୍ତନ ହୋଇଥିଲା । ସେମାନେ ଯୋଗ ତୁଳନାରେ ଶରୀର ସାଧନାକୁ ଅଧିକ ଗୁରୁତ୍ୱ ପ୍ରଦାନ କଲେ । ଏ ଦୃଷ୍ଟିରୁ ଦଣ୍ଡନାଟରେ ଯୋଗ ଓ ଶରୀର ଶିକ୍ଷାକୁ ପ୍ରଧାନ ମାର୍ଗ ଭାବରେ ଗ୍ରହଣ କରାଯାଏ ।

ଶୈବଧର୍ମର ପ୍ରକୃତ ବିକାଶ ଘଟିଥିଲା କେଶରୀବଂଶୀ ରାଜାମାନଙ୍କ ଶାସନ କାଳରେ । ଫଳରେ ଭୁବନେଶ୍ୱରରେ ସହସ୍ରାଧିକ ଶୈବ ମନ୍ଦିର ନିର୍ମାଣ ହୋଇ ନିଜର ସ୍ଥିତି ଦୃଢ଼ କରିପାରିଥିଲା । ବ୍ରାହ୍ମ ସମାଜର ପ୍ରଭାବରୁ ଅନେକ ବୌଦ୍ଧ-ମନ୍ଦିର ଓ କୀର୍ତ୍ତି ନଷ୍ଟ କରାଯାଇ ସେହି ସ୍ଥାନରେ ଶିବ-ମନ୍ଦିରମାନ ସ୍ଥାପନ କରାଗଲା । କେଶରୀବଂଶୀ ରାଜାମାନେ ଭୁବନେଶ୍ୱରର ଲିଙ୍ଗରାଜ, ମୁକ୍ତେଶ୍ୱର, ବ୍ରହ୍ମେଶ୍ୱର ମନ୍ଦିର ବ୍ୟତୀତ ବୌଦର ରାମେଶ୍ୱର, ମହାନଦୀ କୂଳବର୍ତ୍ତୀ ରାନ୍ଧିରାଡିଠାରେ ଥିବା ସିଦ୍ଧେଶ୍ୱର, ସୋନପୁରର ସୁବର୍ଣ୍ଣମେରୁ ମନ୍ଦିରମାନ ନିର୍ମାଣ କରିଥିଲେ । ଭୁବନେଶ୍ୱରର ଭାସ୍କରେଶ୍ୱର ମନ୍ଦିରର ଶିବଲିଙ୍ଗ ବୌଦ୍ଧ ସ୍ତମ୍ଭର ଏକ ଭଗ୍ନାବଶେଷ ବୋଲି ଐତିହାସିକଙ୍କ ମତ । ଅତୀତରେ ଯାଜପୁର ଥିଲା ଏକ ବୌଦ୍ଧପୀଠ । ସେହିଭଳି ଏକାମ୍ର ନଗରୀ ଭୁବନେଶ୍ୱର ମଧ୍ୟ ଏକ ଜୈନପୀଠ ଥିବା ଜଣାଯାଏ । ଶୈବଧର୍ମର ଉତ୍‌ଥାନ ହେବା ସଙ୍ଗେ ସଙ୍ଗେ ଏଗୁଡିକ ମଧ୍ୟ ଶୈବ କ୍ଷେତ୍ରରେ ପରିଣତ ହେଲା "ଯାଜପୁର୍ ଓ ଭୁବନେଶ୍ୱର ଓଡିଶାର ପ୍ରାଚୀନ ଶୈବପୀଠମାନଙ୍କ ମଧ୍ୟରୁ ସର୍ବପ୍ରଧାନ ଓ ସର୍ବପ୍ରାଚୀନ ଅବଶେଷ ବୋଲି କୁହାଯାଇପାରେ ।" (୧୮) ସାଧାରଣତଃ ଓଡିଶାର ଶୈବମନ୍ଦିରମାନ କେତେକ ପ୍ରାଚୀନ, କେତେକ ନୂତନ ଅଥଚ କେଉଁଠି ଖୋଲା ପଡିଆରେ, ବୃକ୍ଷ ମୂଳରେ, କେଉଁଠି ନଦୀ ବା ନାଳ କୂଳରେ କିମ୍ବା ସହର ମଧ୍ୟରେ ରହି ପୂଜା ପାଉଥିବା ସ୍ପଷ୍ଟ ବିଦ୍ୟମାନ ।

ପ୍ରସଙ୍ଗ କ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ବେଦରେ ରୁଦ୍ର (ଉଗ୍ର) ଓ ଶିବ(ଶାନ୍ତ) ଶବ୍ଦ ଦୁଇଟି ବ୍ୟାପକ ବ୍ୟବହୃତ । କିନ୍ତୁ ବୈଦିକ କାଳରେ ଶିବ ନାମରେ କୋଣସି ଆର୍ଯ୍ୟ ଦେବତାଙ୍କର ସ୍ଥାନ ଥିବା ଜଣାଯାଏ ନାହିଁ । 'ରୁଦ୍ର' ସଂପୂର୍ଣ୍ଣ ରୂପେ 'ଶିବ'ରେ ରୂପାନ୍ତରିତ ହେଲେ ପୌରାଣିକ ଯୁଗରେ । ଲୋକସ୍ତରକୁ ଓହ୍ଲାଇ ଆସିବା ପାଇଁ ଶିବଙ୍କ ଏଇ ପ୍ରକାର ପ୍ରତିଭା ବିଶେଷ ସହାୟକ ହୋଇଥିବା ମନେହୁଏ । ଲୋକ ଦରବାରରେ ସେ ଆଜି ବହୁ ନାମରେ ପୂଜିତ । କେବଳ ହିନ୍ଦୁ ଲୋକସମାଜରେ ନୁହେଁ, ଅଣହିନ୍ଦୁ ଆଦିବାସୀ ସମ୍ପ୍ରଦାୟର ସାଂସ୍କୃତିକ ସୀମା ମଧ୍ୟରେ 'ଶିବ' ପ୍ରତିଷ୍ଠିତ ହୋଇଥିବା ଦେଖାଯାଏ ।"(୧୯)

କେତେକ ଆଲୋଚକ ଶିବଲିଙ୍ଗକୁ ଯୌନ-ପ୍ରତୀକ ଭାବରେ ଗ୍ରହଣ କରନ୍ତି । ସାଧାରଣତଃ 'ଲିଙ୍ଗ' ଶବ୍ଦ ଅଶ୍ଳୀଳ କିନ୍ତୁ ବିଶିଷ୍ଟ ବ୍ୟାକରଣବିଦ୍ ପାଣିନୀ ଏହାକୁ ଏକ ପ୍ରତୀକ ବା ଚିହ୍ନ ଅର୍ଥରେ ଗ୍ରହଣ କରିଛନ୍ତି । ଲୌକିକ ଦୃଷ୍ଟିରୁ ଏହା ଅଶ୍ଳୀଳ ବୋଧ ହେଲେ ମଧ୍ୟ ଶାସ୍ତ୍ରୀୟ ଦୃଷ୍ଟିରୁ 'ଲିଙ୍ଗ' ଶବ୍ଦର ପ୍ରୟୋଗ ସ୍ୱତନ୍ତ୍ର । ସେଥିପାଇଁ ବ୍ୟାକରଣରେ ପୁଲିଙ୍ଗ ଓ ସ୍ତ୍ରୀ ଲିଙ୍ଗ ଶବ୍ଦ ପୁରୁଷ ଓ ସ୍ତ୍ରୀ ପ୍ରତୀକ ଭାବରେ ବ୍ୟବହୃତ । ତେଣୁ ଶିବଲିଙ୍ଗ ଶିବଙ୍କ ପ୍ରତୀକ ରୂପରେ ହିଁ ଗ୍ରହଣ କରାଯାଇଛି ।

ଶିବ୍ 'ଈଶ୍ୱର' ରୂପରେ ଓଡିଶା, ବଙ୍ଗ ଓ ଆସାମରେ ପରିଚିତ । ଓଡିଶାରେ ସେ ନୀଳକଣ୍ଠେଶ୍ୱର, ଧବଳେଶ୍ୱର, ଝାଡେଶ୍ୱର, ଲଙ୍ଗଳେଶ୍ୱର, ଲଡୁକେଶ୍ୱର, ଜଳେଶ୍ୱର, ଗୁପ୍ତେଶ୍ୱର, ଭୀମେଶ୍ୱର, ଭୁବନେଶ୍ୱର, ବଙ୍ଗଳାରେ ତାରକେଶ୍ୱର, ସିଦ୍ଧେଶ୍ୱର, ଆସାମରେ କାମେଶ୍ୱର ଆଦି ରୂପରେ ସୁପ୍ରସିଦ୍ଧ । ଜନମାନସରେ ଶିବଙ୍କ ଶାସ୍ତ୍ରୀୟ ନାମ ସହ ଏହି ଲୋକ-ନାମର ସଂଯୋଗ, ଭକ୍ତି ଓ ସମ୍ମାନର ସହ ଗୃହୀତ ।

ଦଣ୍ଡନାଟର ଧୂଳିଦଣ୍ଡ ସମୟରେ ଯେଉଁ 'କୃଷି କର୍ମ' ଅଭିନୟ କରାଯାଏ ସେଥିରେ ଶିବଙ୍କର ଅବଦାନ ରହିଥିବା ବିଶ୍ୱାସ । ଜଳେଶ୍ୱର ଅଞ୍ଚଳରେ ଥିବା ଲଙ୍ଗଳେଶ୍ୱର ମନ୍ଦିରରେ ବାସୁଆ, ପବନା ନାମକ ଦୁଇଟି ବଳଦ ଏବଂ ଏକ ପଥର ଲଙ୍ଗଳ ଖୋଦିତ ମୂର୍ତ୍ତି ଦେଖିବାକୁ ମିଳେ । ଶିବ ଭୀମଙ୍କ ସହିତ ଏହି ଲଙ୍ଗଳ ଓ ବଳଦ ସାହାଯ୍ୟରେ ସୁବର୍ଣ୍ଣରେଖା କୂଳସ୍ଥ ବିସ୍ତୀର୍ଣ୍ଣ ପ୍ରାନ୍ତର ଚାଷ କରିଥିବା ପ୍ରବାଦ ସ୍ଥାନୀୟ ଅଧିବାସୀଙ୍କ ନିକଟରୁ ଶୁଣିବାକୁ ମିଳେ । ଧନ ସମ୍ପତ୍ତିହୀନ, ନିରାଡମ୍ବର ଶିବଙ୍କର ଯେପରି କିଛି ନଥାଏ, ସେହିପରି ଗରୀବ ଚାଷୀର କୌଣସି ସମ୍ପତ୍ତି ନ ଥାଏ । ଏହି ଦୃଷ୍ଟିରୁ ଦଣ୍ଡ ନାଟର ଅଧିକାଂଶ ଭୋକ୍ତା ସାଧାରଣତଃ ଚାଷୀ, ମୂଲିଆ ଶ୍ରେଣୀର ହୋଇଥିବାରୁ ଶିବଙ୍କୁ କୃଷିର ଦେବତା ରୂପେ ଗ୍ରହଣ କରିଛନ୍ତି ।

ଧୂଳିଦଣ୍ଡ ସମୟରେ ଯେଉଁ ଯୋଗୀ-ବେଶୀ ବାହାରନ୍ତି, ତାହା ମଧ ଶିବଙ୍କର ଏକ ପ୍ରତୀକ । କାରଣ ଶିବ ମାନବ ସମାଜରେ ଯୋଗୀ, ବା 'ମହାଯୋଗେଶ୍ୱର'ରୂପେ ପରିଚିତ । ଓଡିଶାରେ ଏକ ସ୍ୱତନ୍ତ୍ର 'ଯୋଗୀ' ଭିକ୍ଷୁକ ସଂପ୍ରଦାୟ ଅଛି । ଡ: ବଂଶୀଧର ମହାନ୍ତିଙ୍କ ମତରେ ଏହିମାନେ ନାଥ ସଂପ୍ରଦାୟ । ନାଥପନ୍ଥୀମାନେ ଶିବ ମହେଶ୍ୱରଙ୍କୁ 'ଆଦିନାଥ' ରୂପେ ଗ୍ରହଣ କରିଥାନ୍ତି । ଏହି କାରଣରୁ ଭାରତର ସମସ୍ତ ଯୋଗୀ ସମ୍ପ୍ରଦାୟ ନିଜକୁ 'ଶିବଗୋତ୍ରୀ' ଭାବରେ ପରିଚିତ କରାଇଥିବା ଲକ୍ଷ୍ୟ କରାଯାଏ ।

ଶାସ୍ତ୍ରୀୟ ପରମ୍ପରାନୁଯାୟୀ ହର-ପାର୍ବତୀଙ୍କ ସମ୍ମିଳିତ ପୂଜା ବାଞ୍ଛନୀୟ ନହେଲେ ମଧ ଦଣ୍ଡ ନାଟରେ ଶିବ ଓ ଶକ୍ତିଙ୍କୁ ଏକତ୍ର ପୂଜା କରାଯାଏ ।ଶିବ ଓ ଗୌରୀ ଏଥିରେ 'ବେତ'ରୂପରେ ପୂଜିତ । ଏହା ବ୍ୟତୀତ ନୃତ୍ୟ ମାଧମରେ ବିଭିନ୍ନ ଦେବତାଙ୍କ ସ୍ତବ ଓ ପୂଜା କରାଯାଏ । ଦଣ୍ଡନାଟରେ ·ଦଣ୍ଡୁଆ/ଭୋକ୍ତାମାନେ ସମସ୍ତ ପ୍ରକାର ଦେବଦେବୀଙ୍କୁ ଜଣାଣ/ପ୍ରାର୍ଥନା/ ବନ୍ଦନା କରୁଥିଲେ ମଧ ମୂଳ ଦେବୀଙ୍କୁ କୌଣସି କ୍ଷେତ୍ରରେ ଅବହେଳା କରିନଥାନ୍ତି; ତେଣୁ ଓଡିଶାର ଶିବ ଓ ଶକ୍ତିଙ୍କ ସମ୍ମିଳିତ ଧାରା ପଲ୍ଲୀ ଜୀବନରେ ସମ ପ୍ରବାହିତ ।

ଦଣ୍ଡନାଟରେ 'କଳାରୁଦ୍ରମଣି କି ଭଜ ହେ' ଯାହା କୁହାଯାଇଛି, ତାହା ଅନୁଧ୍ୟାନ କଲେ ଶିବଙ୍କ ବର୍ଣ୍ଣ କଳା (Black) ଥିବା କଥା ଠିକ୍ ମନେ ହୁଏ ନାହିଁ । ଏଠାରେ ତ୍ରିଦେବ (ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର) ଓ ତ୍ରିଦେବୀ (ଗାୟତ୍ରୀ, ଲକ୍ଷ୍ମୀ ଓ ପାର୍ବତୀ) ଙ୍କ ଶାରୀରିକ ବର୍ଣ୍ଣ ଆଲୋଚନା

କରାଯାଇପାରେ । ବିଷ୍ଣୁ ଓ କାଳୀଙ୍କ ବର୍ଣ୍ଣ (Colour) ଏକ । ବିଷ୍ଣୁଙ୍କ ଅନ୍ୟନାମ ଶ୍ୟାମ (ଶରୀର ଶ୍ୟାମଳ ହୋଇଥିବା ଯୋଗୁଁ) ଏଣୁ କାଳୀଙ୍କୁ ମଧ୍ୟ ଶ୍ୟାମାକାଳୀ କୁହାଯାଏ । ଶିବ ଓ ଗାୟତ୍ରୀଙ୍କ ବର୍ଣ୍ଣ ଧବଳ । ତେଣୁ ଶିବଙ୍କ ଅନ୍ୟ ନାମ ହେଲା, ଧବଳେଶ୍ୱର । ଏହି ନାମଟି ଓଡିଶାରେ ବିଶେଷ ପ୍ରଚଳିତ । ସେହିପରି ବ୍ରହ୍ମା ଓ ଲକ୍ଷ୍ମୀଙ୍କ ଶରୀର ସ୍ୱର୍ଣ୍ଣାଭ । ଏ ଦୃଷ୍ଟିରୁ ସେମାନେ ପରସ୍ପର ଭ୍ରାତୃ-ଭଗିନୀ ଏବଂ କାଳୀ-ଶିବ, ଲକ୍ଷ୍ମୀ-ବିଷ୍ଣୁ ଓ ଗାୟତ୍ରୀ-ବ୍ରହ୍ମା ବୈବାହିକ ବନ୍ଧନରେ ଆବଦ୍ଧ । ତେଣୁ ଶିବଙ୍କ ବର୍ଣ୍ଣ କଳା ନ ହୋଇ ଧବଳ ବା ଗୌର ବର୍ଣ୍ଣ ହୋଇଥିବା ଶାସ୍ତ୍ର ସମ୍ମତ ।

ଏହି ପରିପ୍ରେକ୍ଷୀରେ ଶିବଙ୍କୁ 'କଳାରୁଦ୍ରମଣି' କହିବାର ତାତ୍ପର୍ଯ୍ୟ ପ୍ରତି ଦୃଷ୍ଟି ଦେଲେ ଦେଖାଯାଏ ଯେ, ପ୍ରସ୍ତର ଯୁଗରେ ଲୋକମାନେ ପ୍ରସ୍ତର ଖଣ୍ଡ ଓ ପ୍ରସ୍ତର ନିର୍ମିତ ଅସ୍ତ୍ର ବ୍ୟବହାର କରୁଥିଲେ ଏବଂ ସେମାନଙ୍କର ମୁଖ୍ୟ ଆହାର ଥିଲା ଜଙ୍ଗଲର ଫଳମୂଳ ଓ ପଶୁପକ୍ଷୀଙ୍କ ମାଂସ । ପଶୁପକ୍ଷୀମାନଙ୍କ ରକ୍ଷକ ହେଲେ ଶିବ । ତେଣୁ ଶିବଙ୍କର ଅନ୍ୟ ନାମ ପଶୁପତି । ପଶୁଙ୍କ ରକ୍ଷକ ହୋଇଥିବା ଯୋଗୁଁ ସେ ଉଗ୍ର/ଭୟଙ୍କର, ତେଣୁ ରୁଦ୍ର ନାମରେ ପରଚିତ । ଏହି ସମୟରେ ରୁଦ୍ର ପାନାହାର ନିମିତ୍ତ ନରକପାଳକୁ ବ୍ୟବହାର କରୁଥିବା ମନେ ହୁଏ । କାରଣ ସେ ଶ୍ମଶାନ ତଥା ଜଙ୍ଗଲ ଅଧ୍ୟୁଷିତ ଅଞ୍ଚଳରେ ରହିବାକୁ ଶ୍ରେୟ ମଣନ୍ତି । ବାସନୋପଯୋଗୀ ଭାବରେ 'ନରକପାଳ' ବ୍ୟବହାର କରିବା ଯୁକ୍ତିଯୁକ୍ତ । ଏହା ବ୍ୟତୀତ ପ୍ରସ୍ତର ଯୁଗର ଲୋକମାନେ ଥିଲେ ଅତ୍ୟନ୍ତ ଭୀଷଣ ପ୍ରକୃତିର । ତେଣୁ ସେମାନଙ୍କୁ ମଧ୍ୟ ରୁଦ୍ର କୁହାଯାଇପାରେ । ପରବର୍ତ୍ତୀ ସମୟରେ ଏମାନଙ୍କ ଦ୍ୱାରା ରୁଦ୍ର-ଦେବ ଶିବଙ୍କର ପୂଜା ହୋଇଥିବା ସମ୍ଭବ । ଆଦିମ ଯୁଗର ଲୋକମାନେ ମଧ୍ୟ ମୃତ ମାନବର କପାଳକୁ ଆହାର ପାତ୍ର ରୂପେ ବ୍ୟବହାର କରୁଥିଲେ । ଏହିମାନେ ଦେଖିବାକୁ ଭୟଙ୍କର (ରୁଦ୍ର) ଓ ବର୍ଣ୍ଣରେ କଳା । ପରିସ୍ଥିତି ଓ ପରିବେଶ ଏମାନଙ୍କୁ ଏପରି କରିବାକୁ ବାଧ କରିଥିଲା । ଏଣୁ ଦଣ୍ଡ ନାଟରେ ଥିବା 'କଳାରୁଦ୍ରମଣି'ର ଅର୍ଥ କଳା ଓ ଭୟଙ୍କର ପ୍ରକୃତି ବିଶିଷ୍ଟ ଲୋକଙ୍କର ମଣି (ଶ୍ରେଷ୍ଠ) ହେଲେ ଶିବ । ତେଣୁ ଶିବଙ୍କୁ 'କଳାରୁଦ୍ରମଣି' ରୂପରେ ଭଜିବାକୁ କୁହାଯାଇଛି । ଦଣ୍ଡନାଟର ପରମ୍ପରାନୁଯାୟୀ ପ୍ରତ୍ୟେକ ଭୋକ୍ତା ଏହା ଉଚ୍ଚାରଣ କରିବାକୁ ବାଧ । ଗଞ୍ଜାମ ଜିଲ୍ଲାରେ 'କଳାରୁଦ୍ରମଣି କି ଭଜ ହେ' କହିବା ବେଳେ ବାଲେଶ୍ୱରରେ 'କଳାରୁଦ୍ରମଣିହୋ ଜୟ' ଏବଂ ଢେଙ୍କାନାଳରେ 'ହେ ମହାକାଳ ରୁଦ୍ରବିଜେ' ବୋଲି ପ୍ରକାଶ କରିଥାନ୍ତି । ଏଠାରେ ଦଣ୍ଡନାଟରେ ପ୍ରଥମ ଆଲୋଚକ ୰ଲକ୍ଷ୍ମୀନାରାୟଣ ସାହୁଙ୍କ ଅନ୍ୟ ଏକ ମତ ଉଲ୍ଲେଖ କରାଯାଇପାରେ । ''ଯେଉଁ ଓଁ କାର ବା ଚିତ୍କାର ହୁଏ ସେ କଣ ? ସେ କେବଳ ମହାକାଳଙ୍କୁ ସ୍ମରଣ ଏବଂତାଙ୍କୁ ଆହ୍ୱାନ । ମହାକାଳ ପୂଜା ଚିତା ସାଧନର ଗୋଟିଏ ଅଙ୍ଗ । ଏହି ଚିତା ସାଧନ ଶ୍ମଶାନ ଭୂମିରେ ନିଃଶୂନ ରାତିରେ ମଙ୍ଗଳବାର ଦିନ କରିବାକୁ ହୁଏ ବିଶେଷତଃ ଅମାବାସ୍ୟା ରାତ୍ରିର ଅଷ୍ଟମ ବା ଚତୁର୍ଦ୍ଦଶୀ ରାତ୍ରିରେ ''। (୨୦) ତନ୍ତ୍ର ପୂଜାର ଅଂଶ ବିଶେଷ ହୋଇଥିବା ଯୋଗୁଁ ଏପରି ପରିକଳ୍ପନା ହୋଇଥିବା ସମ୍ଭବ । ଏହା କେବଳ ସାଧକ ଓ କାପାଳିକମାନେ କରିବାକୁ

ସକ୍ଷମ ହୋଇଥାନ୍ତି । ଶିବ ଶ୍ମଶାନବାସୀ ଓ ଯୋଗୀ ଶ୍ରେଷ୍ଠ । ତେଣୁ କାଳୀ ଓ ରୁଦ୍ର ଶବ୍ଦ ଏକତ୍ର ହୋଇ 'କାଳାରୁଦ୍ର' ହୋଇଅଛି ।

ଶୈବଧର୍ମର ଇତିହାସ ବହୁ ପୁରାତନ । ଯେଉଁ ଧର୍ମରେ ଶିବଙ୍କୁ କେନ୍ଦ୍ରକରି ବିଭିନ୍ନ ପ୍ରକାରର ପୂଜା କରାଯାଏ, ତାହା ହେଲା, ଶୈବଧର୍ମ । ଭାରତ ବର୍ଷରେ ପ୍ରାଚୀନ କାଳରୁ ଶିବ,ଦେବଙ୍କ ଦେବ 'ମହାଦେବ'ରୂପେ ପରିଚିତ । ପ୍ରାକ୍ -ବୈଦିକ ଯୁଗରେ ଭାରତରେ ଶିବଲିଙ୍ଗ ଓ ପଶୁପତି ଶିବଙ୍କରପୂଜା ପ୍ରଚଳନ ଥିବା ସମ୍ପର୍କରେ ସୂଚନା ମହେଞ୍ଜୋଦାରୋ ସଭ୍ୟତାର ଧ୍ୱଂସାବଶେଷରୁ ମିଳେ । ଋକ୍ ବେଦରେ ଶିବଙ୍କୁ ଜଙ୍ଗଲର ଅଧିପତି ଭାବରେ ଗ୍ରହଣ କରାଯାଇଛି । ଏହି କାରଣରୁ ପ୍ରାକ୍-ବୈଦିକ ଯୁଗରେ ଭାରତରେ ବସବାସ କରୁଥିବା ଆଦିମ ଅଧିବାସୀଙ୍କ ମଧ୍ୟରେ ଶୈବମତବାଦ ଆଦୃତ ଥିଲା । ଉତ୍କଳୀୟ ଶୈବଧର୍ମ ଭାରତରେ ପ୍ରଚଳିତ ଶୈବଧର୍ମର ଏକ ଅଂଶ । ମହେନ୍ଦ୍ରଗିରି ପ୍ରଭୃତି ପାର୍ବତ୍ୟାଞ୍ଚଳର କିରାତ ଶବର ପ୍ରଭୃତି ଆଦିବାସୀମାନେ ଶିବଭକ୍ତ । କେତେକ ଆଦିମ ଅଧିବାସୀ ଶିବଙ୍କୁ ବୃକ୍ଷ ମାଧ୍ୟମରେ ଉପାସନା କରୁଥିଲେ । ତେଣୁ ପ୍ରାଚୀନ କଳିଙ୍ଗରେ ଶୈବଧର୍ମରେ ବୃକ୍ଷ ପୂଜା, ଇତିହାସ ଯୁଗରେ ଲିଙ୍ଗ ପୂଜାର ପ୍ରଚଳନ ହୋଇଛି । ସମ୍ରାଟ ଅଶୋକ ବୌଦ୍ଧଧର୍ମ ଗ୍ରହଣ ପୂର୍ବରୁ ଓ ସମ୍ରାଟ ଖାରବେଳ ଜୈନଧର୍ମ ଗ୍ରହଣ ପୂର୍ବରୁ ଶୈବଧର୍ମୀ ଥିବା ଇତିହାସ ବିଦିତ । ଜୈନଧର୍ମାବଲମ୍ବୀ ଥିଲେ ମଧ୍ୟ ଖାରବେଳ ଅନେକ ଦେବଦେବୀଙ୍କ ମନ୍ଦିର ନିର୍ମାଣ କରି ସମସ୍ତ ଧର୍ମର ଲୋକପ୍ରିୟ ହୋଇଥିଲେ । ଏ ସମ୍ପର୍କରେ ହାତୀ ଗୁମ୍ଫାର ଶିଳାଲେଖ ଖାରବେଳଙ୍କ ଧର୍ମ ନିରପେକ୍ଷତା ସମ୍ପର୍କରେ ଅନେକ ତଥ୍ୟ ପ୍ରକାଶ କରେ ।

ପରବର୍ତ୍ତୀ କାଳରେ ଭୌମ,ଗଙ୍ଗଓ ସୂର୍ଯ୍ୟବଂଶୀ ରାଜାମାନଙ୍କ ସମୟରେ ଶୈବଧର୍ମ ବିକଶିତ ହୋଇଥିବା ପୂର୍ବରୁ କୁହାଯାଇଛି । ସଙ୍ଗୀତର ସ୍ରଷ୍ଟା ଭାବରେ ଶିବଙ୍କୁ ଗ୍ରହଣ କରାଯାଇଥିବା ସଙ୍ଗୀତଶାସ୍ତ୍ର ମାନଙ୍କରୁ ସୂଚନା ମିଳେ । ମହାଦେବ ବା ଶିବ 'ପିନାକ' ନାମକ ସଙ୍ଗୀତ ଯନ୍ତ୍ରର ଆବିଷ୍କାରକ । (୨୧) ଦଣ୍ଡନାଟର ବୀଣାକାର ଯେଉଁ ବୀଣା ବ୍ୟବହାର କରେ, ତାହା ଏହି 'ପିନାକ'ବାଦ୍ୟ -ଯନ୍ତ୍ରର ସାମଞ୍ଜସ୍ୟ । ଏଥିରେ ଜଣେ ଭୋକ୍ତା ବୀଣା ଧାରଣ କରି ନୃତ୍ୟ କରୁଥବା ଯୋଗୁଁ 'ବୀଣାକାର' ଭାବେ ନାମିତ । ସେହିପରି 'ପିନାକ' ଧାରଣ କରିଥିବା ଯୋଗୁଁ ଶିବ 'ପିନାକପାଣି' ନାମରେ ସୁପରିଚିତ । ଶିବପୁରାଣରେ ଉଲ୍ଲେଖ ଅଛି ଯେ ନାରଦ ତପସ୍ୟାରେ ଶିବଙ୍କୁ ସନ୍ତୁଷ୍ଟ କରି ସଙ୍ଗୀତ ବିଦ୍ୟାହାସଲ କରିଥିଲେ ଏବଂ ପାର୍ବତୀଙ୍କ ଶୟନ ମୁଦ୍ରାର ଅନୁକରଣରେ ଗୋଟିଏ ବୀଣା ପ୍ରସ୍ତୁତ କରିଥିଲେ । ଏହାକୁ ନାରଦୀୟ-ବୀଣା କୁହାଯାଏ । କେତେକଙ୍କ ମତରେ ଭଗବାନ ଶଙ୍କର ହିଁ ସମସ୍ତ ରାଗ-ରାଗିଣୀର ଜନ୍ମଦାତା । (୨୨) ''ଓଡିଶାର ସଙ୍ଗୀତ କ୍ଷେତ୍ରରେ ଶିବଙ୍କୁ ସଙ୍ଗୀତ ବିଦ୍ୟାର ପ୍ରବର୍ତ୍ତକ ଭାବରେ ଧାରଣା କରିବାର ଯଥେଷ୍ଟ କାରଣ ରହିଛି । ଖ୍ରୀ.୪/୫ମ ଶତାବ୍ଦୀ କାଳୀନ ଆସନପାଟ ମୂର୍ତ୍ତିରେ ଶିବ ଏକ ବୀଣା ଧାରଣ

କରିଛନ୍ତି । ବୀଣା ହିଁ ସଙ୍ଗୀତର ପ୍ରତୀକ ଓ ପ୍ରାଚୀନତମ ବାଦ୍ୟଯନ୍ତ୍ର ଭାବେ ସ୍ୱୀକୃତ''।(୨୩) ଏଣୁ ଶିବଙ୍କର ଏହି ବୀଣା ଦଣ୍ଡନାଟ ଦଳରେ ଗ୍ରହଣ ହୋଇଥିବେ ସୁସ୍ପଷ୍ଟ । ଏବଂ ଶିବଙ୍କର ନୃତ୍ୟ ହିଁ ଦଣ୍ଡନାଟରେ ପ୍ରଥମ ପଥପ୍ରଦର୍ଶକ । ଅତୀତରୁ ପ୍ରଚଳିତ ଦଣ୍ଡନାଟରେ ହର-ପାର୍ବତୀଙ୍କ ନୃତ୍ୟ-ବିଧାନ 'ତାଣ୍ଡବ' ଶୈଳୀର ଅଂଶବିଶେଷ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ତାଣ୍ଡବ ନୃତ୍ୟର ବର୍ଣ୍ଣନା 'ଭକ୍ତ ସାଲବେଗ' ସାବଲୀଳ ଭଙ୍ଗୀରେ କରିଛନ୍ତି-

ହୋଟିଏ ପର୍ବତ ଘାଗୃତି ମାଳି
ବ୍ରହ୍ମା ଆଦି ସୁର ଦେବେ ଅର୍ଦ୍ଧଳି ।
କାଳି ନାଗ କଲେ କାନ୍ଧେ ପଇତା
ଶ୍ୱେତ ନାଗ କଲେ ଶିରରେ ଛତା ।
ଡିବି ଡିବି ବାଜେ ଡମ୍ବରୁ କର
ଗଙ୍ଗା ଦେବୀ ଅଛନ୍ତି ଜଟା ଭିତର ।
ବୁଢା ଅଜଗର କଟୀ କାଛେଣୀ
ଶ୍ୱେତ ନାଗ କଲେ ଶିରେ ମଣ୍ଡଣୀ ।
ବିଭୁତି ଭୂଷଣ ତ୍ରିଶୂଳଧାରୀ
ମଧ୍ୟେ ସଦାଶିବ ନାଚନ୍ତି ଢଳି । (୨୦)

ଦଣ୍ଡନାଟରେ ଶିବଙ୍କ ବେଶ ଓ ପୋଷାକର ବର୍ଣ୍ଣନା ଏବଂ ନୃତ୍ୟ ଉପରୋକ୍ତ ପ୍ରକାରେ ହୋଇଥିବା ଉଲ୍ଲେଖଯୋଗ୍ୟ ।

ନୃତ୍ୟ ଦୁଇପ୍ରକାର-ତାଣ୍ଡବ ଓ ଲାସ୍ୟ । ଦଣ୍ଡନାଟରେ ଲାସ୍ୟ ନୃତ୍ୟର ପ୍ରଭାବ ନାହିଁ କହିଲେ ଚଳେ ଏବଂ ଏହା ତାଣ୍ଡବ ନୃତ୍ୟ ଦ୍ୱାରା ପ୍ରଭାବିତ । ଦଣ୍ଡନାଟରେ ବିଷ୍ଣୁଙ୍କ ଆରାଧନା ବିରଳ । ଯଦିଓ ଶିବ ଓ ବିଷ୍ଣୁ ନାଟ୍ୟର ମୂଳାଧାର । ଶିବ 'ନଟରାଜ' ଓ ବିଷ୍ଣୁ 'ନଟବର' । ଜଣଙ୍କର ନୃତ୍ୟ ତାଣ୍ଡବଧର୍ମୀ, ଅନ୍ୟ ଜଣଙ୍କର ଲାସ୍ୟ ଧର୍ମୀ । ଜଣେ ଲୟର ପ୍ରତୀକ ଅନ୍ୟ ଜଣକ ସ୍ଥିତିର ନିଦର୍ଶନ । ଜଣେ କ୍ରୋଧୀ, ଅନ୍ୟ ଜଣକ ଶାନ୍ତ । କିନ୍ତୁ ଶାସ୍ତ୍ରମାନଙ୍କରେ ଭଗବାନ ଶିବଙ୍କର ଚାରିପ୍ରକାର ରୂପ ଦର୍ଶାଯାଇଛି । ଯଥା- ସଂହାର ମୂର୍ତ୍ତି (ଧ୍ୱଂସାତ୍ମକ), ଦକ୍ଷିଣା ମୂର୍ତ୍ତି(ଶୁଭ), ଅନୁଗ୍ରହ ମୂର୍ତ୍ତି (ବରପ୍ରଦାୟକ) ଏବଂ ନୃତ୍ୟ ମୂର୍ତ୍ତି (ସଙ୍ଗୀତାତ୍ମକ) । (୨୪) ଏଣୁ ଦଣ୍ଡନାଟରେ ଶିବଙ୍କର ଏହି ଚାରି ରୂପର ପ୍ରଭାବ ସ୍ପଷ୍ଟ ଅନୁମେୟ । ଏହାର ପ୍ରଭା-ନୃତ୍ୟ ସଂହାର ମୂର୍ତ୍ତି, ଯଜମାନର ଅଭିଳାଷ ପୂର୍ଣ୍ଣ କରୁଥବା ଯୋଗୁଁ ଅନୁଗ୍ରହ ମୂର୍ତ୍ତି, ଦଣ୍ଡ-ପ୍ରତୀକ ଦର୍ଶନରେ ଦକ୍ଷିଣା-ମୂର୍ତ୍ତି ଏବଂ ଅନ୍ୟ ସମସ୍ତ ନୃତ୍ୟ-ମୂର୍ତ୍ତିର ଅଂଶ ବିଶେଷ କହିବା ଠିକ୍ ହେବ ।

ଶିବ ଓ ବିଷ୍ଣୁ ନୃତ୍ୟ-ପ୍ରବର୍ତ୍ତକ ଭାବରେ ସ୍ୱୀକୃତ ହେଲେ ହେଁ ଶିବଙ୍କୁ ସ୍ରଷ୍ଟା ରୂପରେ ଅଧିକନ୍ତୁ ଗ୍ରହଣ କରାଯାଇଛି । ତେଣୁ ଶିବ ନୃତ୍ୟ ପ୍ରିୟ ଓ ନୃତ୍ୟ ଶିକ୍ଷୀ । ନୃତ୍ୟ ଦ୍ୱାରା ଜଗତକୁ

ଯିଏ ଆନନ୍ଦ ପ୍ରଦାନ କରନ୍ତି ସେ ହେଲେ ନଟରାଜ । ତେଣୁ ନଟରାଜଙ୍କ ନୃତ୍ୟ ଛନ୍ଦରୁ ସୃଷ୍ଟି, ସ୍ଥିତି, ଲୟ, ତିରୋଭାବ ଓ ଅନୁଗ୍ରହର ପରିପ୍ରକାଶ ହୋଇଛି । ଏତଦ୍ୱାରା ଅହଂକାର, ରାଗ, ଈର୍ଷା, ହିଂସାଦି ପ୍ରଭୃତିର ବିନାଶ ହୁଏ । ଏଣୁ ଶିବଙ୍କର ତାଣ୍ଡବ-ନୃତ୍ୟ ସାତ ଭାଗରେ ବିଭକ୍ତ -

ଆନନ୍ଦ କାଳୀକା ଗୌରୀ ସାନ୍ଧ୍ୟ-ପାର୍ବତୀ ଏବଂ
ତ୍ରିପୁର ତାଣ୍ଡବଂ ଷଷ୍ଠଃ ସଂହାରଃ ସପ୍ତଧା ସ୍ମୃତଃ ।।

ଯଥା- ଆନନ୍ଦ, କାଳୀକା, ଗୌରୀ, ସାଂଧ, ଉମା, ତ୍ରିପୁର ଓ ସଂହାର ତାଣ୍ଡବ । କିନ୍ତୁ କେତେକ ନୃତ୍ୟବିଦ୍‌ଙ୍କ ମତରେ- ଭୈରବ, ଗୌରୀ, ଉମା ଏବଂ ସାଂଧ ଏପରି ଚାରିଭାଗରେ ବିଭକ୍ତ । ଏହି ପରିପ୍ରେକ୍ଷୀରେ ଦଣ୍ଡନାଟରେ ଏହାର ଉପଯୋଗ କିପରି ହୋଇଛି ତାହା ଆଲୋଚନା କରାଯିବା ଦରକାର । ଆନନ୍ଦ ତାଣ୍ଡବ ଆନନ୍ଦ କାଳୀନ ନୃତ୍ୟ, ଏହା ଦଣ୍ଡନାଟରେ ସକାଳ ସମୟରେ ବୀଣାକାର ଦଣ୍ଡ-ବରଣ ବେଳେ ଯଜମାନର ମଙ୍ଗଳ କାମନା କରି ସଦୟ ଚିତ୍ତରେ ନୃତ୍ୟ କରିଥାଏ । ସାଂଧ ତାଣ୍ଡବ - ଏହା ରାତ୍ରିର ମଧ ଭାଗରେ ପ୍ରଭା ଧାରଣ କରି ଜଣେ ଭୋକ୍ତା ଢୋଲ ବାଦ୍ୟର ତାଳେ ତାଳେ ନାଚିବା ଅଭିନୟ ସଙ୍ଗେ ସମାନ । ସେହିପରି ଉମା- ତାଣ୍ଡବ, ହର-ପାର୍ବତୀଙ୍କ ନୃତ୍ୟାଭିନୟ ସମୟରେ ଅନୁଷ୍ଠିତ ହୁଏ ।

'ଦଣ୍ଡ' ପ୍ରାଚୀନ କାଳରୁ ପ୍ରଚଳିତ ଥିବା ପୂର୍ବରୁ ଉଲ୍ଲେଖ କରାଯାଇଛି । ଏଥିରେ ଯେଉଁ ନୃତ୍ୟ/ନାଟରେ ପରିକଳ୍ପନା କରାଯାଇଛି ତାହା ଅଲିଖିତ ରୂପେ ଅସବର୍ଣ୍ଣ ଓ ନିମ୍ନ ସଂପ୍ରଦାୟ ମଧରେ ଶାରୀରିକ ନୃତ୍ୟ ମାଧମରେ ପ୍ରଚଳିତ ଥିଲା, ବୌଦ୍ଧ-ଯୁଗ ପର୍ଯ୍ୟନ୍ତ । କାରଣ ବୌଦ୍ଧ-ଯୁଗରେ ସ୍ୱଥାଙ୍ଗ (ସ୍ୱାଙ୍ଗ)ସଂଯୋଜନା ହୋଇଥିବାର ସଙ୍କେତ ଚର୍ଯ୍ୟାପଦରୁ ମିଳେ । ଏହି ସମୟରେ ସମାଜର ନିମ୍ନ ବର୍ଗଙ୍କ ମଧରୁ ଅଧିକାଂଶ ଥିଲେ ବୌଦ୍ଧଧର୍ମାବଲମ୍ବୀ । ଶୈବଧର୍ମୀ ମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହେବା ପରେ ପୂର୍ବ ପ୍ରଚଳିତ ଦଣ୍ଡନାଟରେ ସେମାନେ ନିଜକୁ ନିୟୋଜିତ କରି ଭିନ୍ନ ରୂପ ପ୍ରଦାନ କରିଥିବା ଜଣାପଡ଼େ । ଦଣ୍ଡନାଟର ମୁଖ୍ୟଚରିତ୍ର ଗୁଡିକ ହେଲା ଏହି ନିର୍ଯ୍ୟାତିତ ଶ୍ରେଣୀର । ଯଥା- ଚଢେୟା ଓ ଚଢେୟାଣୀ, ଶବର ଓ ଶବରୁଣୀ, ପତ୍ରଶଉରା ଓ ପତ୍ରଶଉରାଣୀ, କେଳା ଓ କେଳୁଣୀ ପ୍ରଭୃତି । ଏମାନେ ଯେତିକି ସରଳ, ସେତିକି ସତ୍ୟ, ଧର୍ମ ଓ ନ୍ୟାୟ ବିଶ୍ୱାସୀ ।

କେଶରୀବଂଶୀୟ ନୃପତିମାନଙ୍କ ସମୟରେ ଶୈବଧର୍ମ ଓ ବୌଦ୍ଧଧର୍ମ ମଧରେ ବିବାଦ ଲାଗି ରହୁଥିଲା । ଶୈବଧର୍ମାବଲମ୍ବୀମାନେ ରାଜ ପୃଷ୍ଠପୋଷକତା ଲାଭ କରୁ ଥିବାରୁ ବୌଦ୍ଧଧର୍ମୀମାନେ ଶୈବଧର୍ମକୁ ଗ୍ରହଣ କରିନପାରି ବରାବର ବିବଦମାନ ଅବସ୍ଥାରେ ରହୁଥିଲେ । ଫଳରେ ବାସନ୍ଦ ବ୍ୟବସ୍ଥା ଲାଗୁ କରାଯାଇ ସେମାନଙ୍କୁ ଅସ୍ପୃଶ୍ୟ ଜାତିରେ ପରିଗଣିତ କରାଗଲା । ଏକ ସୁଦୀର୍ଘ ବୌଦ୍ଧ ପରମ୍ପରା କ୍ରମଶଃ ହ୍ରାସ ପାଇଲା ଏବଂ ପୂର୍ଣ୍ଣ ମାତ୍ରାରେ ଶୈବ

ଧର୍ମ ବିକାଶ ଲାଭ କଲା । ସମୟ କ୍ରମେ ଶୈବ ଓ ଶାକ୍ତ ତନ୍ତ୍ରର ମିଳନ ହୋଇଛି । ବୁଦ୍ଧ ଦେବଙ୍କ ସମୟରେ ସମାଜରେ ଅନେକ ଅଲୌକିକ ଅନ୍ଧବିଶ୍ୱାସ ରହିଥିଲା । ବିଶେଷତଃ ବୌଦ୍ଧ ଧର୍ମରେ ନିର୍ବାଣ ଲାଭ କରିବାର ଗୂଢ ତତ୍ତ୍ୱକୁ ସାଧାରଣ ଲୋକ ବୁଝି ପାରିବେ ନାହିଁ ବୋଲି ଭଗବାନ ବୁଦ୍ଧ ବିଭିନ୍ନ ପ୍ରକାରର ମୁଦ୍ରା, ଯୋଗତନ୍ତ୍ରର ଉପଦେଶ ଦେଇଥିବା ଇତିହାସ କହେ । ସାଧାରଣ ଜନତା ଏହା ଗ୍ରହଣ କରିବା ଫଳରେ ବାଚ୍ଛ-ବିଚାର, ଜାତିଭେଦ ରହିଲା ନାହିଁ । ଭଦ୍ରସମାଜଠାରୁ ଦୂରରେ ରହିବା ଫଳରେ କଥାବାର୍ତ୍ତାରେ ମଧ ଶାଳୀନତାର ଅଭାବ ଦେଖାଗଲା । ଅନେକ ଅଶ୍ଳୀଳ ତଥା ଭାଣ୍ଡଗୀତ ଗାନ କରିବା ଫଳରେ କ୍ରମଶଃ ଏହା ସେମାନଙ୍କର ସାମାଜିକ ଜୀବନର ଏକ ଅଂଶ ବିଶେଷ ହେଲା, ଯାହାର ପରିସ୍ଫୁଟନ ଦଣ୍ଡନାଟରେ ସ୍ପଷ୍ଟ ପ୍ରତୀୟମାନ । କାଳକ୍ରମେ ଶୈବତତ୍ତ୍ୱ ମଧରେ ବୌଦ୍ଧତତ୍ତ୍ୱ ବିଲୀନ ହୋଇ ବିଭିନ୍ନ ତନ୍ତ୍ର ଦେବଦେବୀ ପ୍ରତିଷ୍ଠିତ ହେଲେ । ଏ ସମୟରେ ନୃତ୍ୟ, ଗୀତ, ସଙ୍ଗୀତାଦି ଶୈବଧର୍ମରେ ଯୋଗ ହୋଇଥିବା ସମ୍ଭବ । 'ଅଷ୍ଟମ ନବମ ଶତାବ୍ଦୀରେ ଯେତେବେଳେ ଓଡିଶାରେ ଶୈବଧର୍ମ ପରିବ୍ୟାପ୍ତ ହେଲା, ସେତେବେଳେ ବହୁ ବୌଦ୍ଧ ଅସ୍ପୃଶ୍ୟ ହୋଇ ରହିଲେ; ଶିବାରାଧନା ମୁକ୍ତିର ଏକମାତ୍ର ପନ୍ଥା ବୋଲି ପ୍ରଚାର କରାଗଲା । ଖୁବ୍ ସମ୍ଭବ, ସେହି ସମୟରେ ଅସ୍ପୃଶ୍ୟମାନଙ୍କ ମଧରେ ଦାଣ୍ଡନାଟ ପ୍ରବର୍ତ୍ତିତ ହୋଇଥିବ ।'' (୨୬)

ଖ୍ରୀ.୯/୧୦ ଶତକ ବେଳକୁ ସୁଆଙ୍ଗର ପ୍ରଚଳନ ଓଡିଶାରେ ଥିବା କେହି କେହି ମନେ କରନ୍ତି । ସୁଆଙ୍ଗ ଏକ ପ୍ରାଚୀନ ନାଟ୍ୟ-ପରମ୍ପରା । ଏହାର ପ୍ରମାଣ କାହ୍ନୁପାଙ୍କ ଚର୍ଯ୍ୟାଗୀତରେ ଦେଖିବାକୁ ମିଳେ -

''ଆଲୋ ଡୋମ୍ବି ତୋଏ ସମ କରିବୋ ମୋ ସାଙ୍ଗ
ନିଘିନ କାହ୍ନୁ କାପାଳି ଜୋଇ ଲାଙ୍ଗ ''। (୨୭)

'ଡମ' ନାମରେ ଏକ ଅସ୍ପୃଶ୍ୟ ଜାତି ବର୍ତ୍ତମାନ ସୁଦ୍ଧା ଓଡିଶାର ଅଧିକାଂଶ ଗ୍ରାମାଞ୍ଚଳରେ ଅଛନ୍ତି । ସେମାନଙ୍କ ସ୍ତ୍ରୀକୁ ଡମୀ/ଡୋମୀ/ଡମୁଣୀ/ଡମ୍ବୁଣୀ ବୋଲି ସ୍ଥାନୀୟ ଭାଷାରେ ସମ୍ବୋଧିତ । ଏହି ଦୃଷ୍ଟିରୁ ଓଡିଶାରେ ଏହି ଜାତିର ଅତୀତ ସୁସ୍ପଷ୍ଟ । ଏମାନଙ୍କୁ ବୌଦ୍ଧ ଧର୍ମର ବିଲୀନ କାଳର ସମ୍ପ୍ରଦାୟ ଭାବରେ ଗ୍ରହଣ କରାଯାଇପାରେ । ଏଠାରେ କାହ୍ନୁପା ସେହି ଡୋମ୍ବୀ/ଡମୁଣୀ ସହ ସୁଆଙ୍ଗ (ସାଙ୍ଗ)ରଚନା କରିବା ସମ୍ପର୍କରେ ସୂଚନା ଦେଇଥିବାରୁ ନାଟ୍ୟ ପରମ୍ପରାରେସୁଆଙ୍ଗର ପ୍ରଚଳନ ଥିବା ଆଶା' କରାଯାଏ । ସମ୍ପ୍ରତି ଅନେକ ଦଣ୍ଡନାଟ ଯାତ୍ରାର ପ୍ରଚଳନ ଥିଲେ ମଧ ସୁଆଙ୍ଗର ପରିସମାପ୍ତି ନ ହୋଇଥିବା ଉଲ୍ଲେଖଯୋଗ୍ୟ ।

ଦଣ୍ଡନାଟର ଇତିହାସ ସମ୍ପର୍କରେ ଅନ୍ୟ ଏକ ମତ ପ୍ରଣିଧାନ ଯୋଗ୍ୟ । ଭଗବାନ ବୁଦ୍ଧଙ୍କ ପରେ ବୌଦ୍ଧଧର୍ମ ଦୁଇଭାଗରେ ବିଭକ୍ତ ହୋଇଛି ଯଥା- ମହାଯାନ ଓ ହୀନଯାନ । ବୌଦ୍ଧ ଧର୍ମର

ତନ୍ତ 'ମହାଯାନ'ର ଅଂଶ ବିଶେଷ । ସେହିପରି ବଜ୍ରଯାନ ହେଉଛି ମହାଯାନର ଅନ୍ୟତମ ଶାଖା । ଦଣ୍ଡନାଟରେ ଭୋକ୍ତାଗଣ ଧର୍ମକୁ ବିଶେଷ ପ୍ରାଧାନ୍ୟ ଦେଇଥିବା ଯୋଗୁଁ ଏହାକୁ ବୁଦ୍ଧଯାନ ସହ ସମ୍ପୃକ୍ତ କରାଯାଇପାରେ । ଏଥି ସହ ସମସ୍ତ ଭୋକ୍ତା ୧୩/୨୧ ଦିନ ସଂଘବଦ୍ଧ ଭାବରେ ରହି ଧର୍ମ-ମାର୍ଗକୁ ଅନୁସରଣ କରନ୍ତି । ଏଣୁ ଏଠାରେ ବୌଦ୍ଧ ଧର୍ମର ପ୍ରଭାବ ଲକ୍ଷ୍ୟ କରାଯାଏ । ବୌଦ୍ଧ ଧର୍ମର ମୂଳ ମନ୍ତ୍ର ହେଲା-'ବୁଦ୍ଧଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି' । ଏଠାରେ ଥିବା ଧର୍ମ ଓ ସଂଘ ଦଣ୍ଡନାଟର ସମସ୍ତ ଭୋକ୍ତାଙ୍କର ଅନ୍ୟତମ ବୀଜମନ୍ତ୍ର ।

'ଅଭିନୟ ଚନ୍ଦ୍ରିକା' (ଖ୍ରୀ.୧୫୬୮)ରୁ ଜଣାଯାଏ ଯେ, ଷୋଡଶ ଶତାବ୍ଦୀ ପୂର୍ବରୁ ସଙ୍ଗୀତ, ନୃତ୍ୟାଦି ସହ ଓଡିଶାରେ ଝାମୁଯାତ୍ରା ବା ଦଣ୍ଡନାଟ ବିଷୁବ ସଂକ୍ରାନ୍ତି ଦିନ ପାଳିତ ହେଉଥିଲା-

ମେଷେ ଚଡକ ସଂକ୍ରାନ୍ତ୍ୟାଂ ଚଟକା ପାଟ ବାଦାୟଃ ।
ବିବିଧ ରୂପ ଯୁକ୍ତେନ କୁତ୍ସିତଂ ରୂପଧାରଣଂ ॥
ପୁନଃ ପ୍ରମାନ୍ତରେ କୃତ୍ର ବା ଉଦରଜ୍ଞ ବାଦିଭିଃ ।
ଆଚରେତ୍ ବିବିଧ ନୃତ୍ୟଂ ସୁରମ୍ୟ ଭିଲ୍ଲ ନାରୀବତ୍ ॥
କ୍ୱଚିଦ୍ ଗ୍ରାମାନ୍ତରେ ରମ୍ୟେ ଘୋଟକା,ଦାନିବା କ୍ୱଚିଃ ।
ରୂପାଶ୍ରୟଂ ଭବେଦ୍ ନୃତ୍ୟାଂ ବିକଟଂ କୌତୁକାବହମ୍ ॥ (୨୮)

ଅର୍ଥାତ୍, ମେଷ ବା ମହାବିଷୁବ ସଂକ୍ରାନ୍ତି ଦିନ ଚଡକ ଓ ପାଟୁଆମାନେ ବିଭିନ୍ନ ପ୍ରକାର କୁତ୍ସିତ, କିମ୍ଭୂତକିମାକାର ରୂପ ଧାରଣ କରି ବିଭିନ୍ନ ପ୍ରକାର ନୃତ୍ୟ ଦର୍ଶକମାନଙ୍କ ସକାଶେ ପ୍ରଦର୍ଶନ କରିଥାନ୍ତି । କେଉଁଠି କେଉଁଠି ଘୋଟକ ଓ ଦାନବ ରୂପ ଧାରଣ ପୂର୍ବକ ବିକଟ ଏବଂ କୌତୁକାବହ ନୃତ୍ୟ ମଧ୍ୟ କରାଯାଏ ।

ସେତେବେଳେ ଦଣ୍ଡନାଟରେ ଉନ୍ନତ ଧରଣର ମୁଖାଧାରଣ କରି ନୃତ୍ୟ କରିଥିବାର ସୂଚନା ମିଳେ । ନାରୀମାନଙ୍କର ଦଣ୍ଡନୃତ୍ୟରେ ଅଂଶଗ୍ରହଣ ନିଷିଦ୍ଧ ଥିଲା । ପୁରୁଷ ମାନେ ନାରୀବେଶୀ ଅଭିନୟ କରୁଥିବାର ସୂଚନା ମଧ୍ୟ 'ଅଭିନୟ ଚନ୍ଦ୍ରିକା'ରୁ ଦେଖିବାକୁ ମିଳେ -

''ଦଣ୍ଡନୃତ୍ୟେ ତଥା ପୁଂସଃ ଦଣ୍ଡାଦାର ବିଚକ୍ଷଣ ।'' (୨୯)

ସମସ୍ତ ବିଷୟ ଅବଲୋକନ କଲେ ସ୍ପଷ୍ଟ ଅନୁଭବ କରିହୁଏ ଯେ ଏହା ସମ୍ପୂର୍ଣ୍ଣ ତନ୍ତ୍ର-ସାଧନା ପରିସରଭୁକ୍ତ । ଏଥିରେ ପତ୍ରଶବରା,ପତ୍ରଶବରାଣୀ ସମେତ ଯୋଗୀ,ଯୋଗୀଆଣୀ ପ୍ରଭୃତି ବିଶେଷ ଚରିତ୍ରମାନ ସମ୍ପ୍ରତି ଅଧିକାଂଶ ଦଣ୍ଡନାଟରେ ଦେଖିବାକୁ ମିଳେ ନାହିଁ । କିନ୍ତୁ ଏହି

ଯୋଗିଆଣୀ ବା ଯୋଗିନୀ, ''ବଜ୍ର ଯୋଗିନୀ ବୋଲି ଅନୁମିତ ହୁଏ । ଏହି ବଜ୍ରଯୋଗିନୀ ପୂଜା ଓଡିଆନ୍ ବା ଓଡିଶା, ପୂର୍ଣ୍ଣଗିରି, କାମାକ୍ଷା, ଶ୍ରୀହଟ୍ଟରେ ପ୍ରଚଳିତ ଥିଲା ।''(୩୦) ଏହି ଦୃଷ୍ଟିରୁ ଉଡ୍ର ଦେଶ ସେହି ସମୟରେ ପ୍ରଧାନ ତନ୍ତ୍ରପୀଠ ଥିବା ଜଣାଯାଏ । ଏହି ଦଣ୍ଡନୃତ୍ୟ ଉଡ୍ର ଦେଶର ମୌଳିକ ନୃତ୍ୟ ଥିବା ଗ୍ରହଣ ଯୋଗ୍ୟ ।(୩୧)

ମହାଦେବଙ୍କ ଲିଙ୍ଗ ପୂଜା ସହ ଦଣ୍ଡନାଟକୁ ସମ୍ପୃକ୍ତ କରୁଥିବା ଆଲୋଚକମାନଙ୍କ ମତରେ ଏହା ପ୍ରାଚୀନ ଯୁଗରୁ ପ୍ରଚଳିତ । ଏ ପ୍ରକାରର ଲିଙ୍ଗ ପୂଜା ପୃଥିବୀର ବିଭିନ୍ନ ଦେଶରେ ହେଉଥିବା ଜଣାଯାଏ । ମିଶରର ଆସିରିସ୍ ଦେବତାଙ୍କ ଉତ୍ସବ, ଗ୍ରୀସ୍‌ର ବେକସ୍ ଦେବତାଙ୍କ ଫେଲିଫୋରିଆ ଉତ୍ସବର ଦୀର୍ଘ କାଷ୍ଠ ଦଣ୍ଡରେ ଚର୍ମଲିଙ୍ଗ ବାନ୍ଧି ଯାତ୍ରା ଓ ପଟୁଆର, ବେବିଲୋନ୍‌ର ଲିଙ୍ଗପୂଜା, ଇଂଲଣ୍ଡର ମେ'ପୋଲ ଦଣ୍ଡ ପ୍ରମୁଖ ସହ ଭାରତୀୟ ଦଣ୍ଡନୃତ୍ୟର ସାମଞ୍ଜସ୍ୟ ଓ ସଂଯୋଗ ରହିଅଛି । ସମ୍ପ୍ରତି ଇଂଲଣ୍ଡର ମେ'ପୋଲ ଦଣ୍ଡ ଉତ୍ସବ କେବଳ ଆୟାରଲାଣ୍ଡ ଓ ସ୍କଟଲାଣ୍ଡରେ ସୀମାବଦ୍ଧ ।

ରୂପ ବର୍ଣ୍ଣନାରେ ଭାରତୀୟ ମହାଦେବ ଶ୍ୱେତବର୍ଣ୍ଣ ଓ ଆସିରିସ୍ ହେଉଛନ୍ତି କୃଷ୍ଣବର୍ଣ୍ଣ । ଦଣ୍ଡ ନାଟରେ କଳାରୁଦ୍ରମଣି ଏବଂ ମିଶରିୟ ଆସିରିସ୍, ଭାରତୀୟ ମହାକାଳଙ୍କର ଏକ ନାମାନ୍ତର । କୃଷ୍ଣ ବର୍ଣ୍ଣର ଶିବ ମୂର୍ତ୍ତି ବା ପ୍ରତିମା ଦକ୍ଷିଣ ଭାରତରେ ଦେଖାଯାଏ । ଉତ୍ତର ଭାରତରେ ଶିବ ଶ୍ୱେତବର୍ଣ୍ଣ ଧାରଣ କରି ଆର୍ଯ୍ୟ ସମାଜକୁ ପ୍ରତିନିଧିତ୍ୱ କଲାବେଳେ ଦକ୍ଷିଣ-ଭାରତୀୟ କୃଷ୍ଣ-ଶିବ ଦ୍ରାବିଡମାନଙ୍କର ପ୍ରତିନିଧିତ୍ୱ କରୁଥିବା ମନେ କରାଯାଇପାରେ । ଏହି ଦୃଷ୍ଟିରୁ ଓଡିଶାରେ ଉଭୟ ସଂସ୍କୃତିର ମିଳନ ଘଟିଛି ।

ଐତିହାସିକଙ୍କ ମତରେ ବୌଦରେ ଥିଲା ଅନେକ ବୌଦ୍ଧ-ବିହାର । ବୌଦ୍ଧ ଧର୍ମର ମାର୍ଗ ସରଳ ହୋଇଥିବାରୁ ସାଧାରଣ ଜନତାଙ୍କ ଦ୍ୱାରା ଆଦୃତ ହୋଇ କ୍ରମଶଃ ପ୍ରସାରିତ ହୋଇଥିବା ଜଣାଯାଏ । ଏହାପରେ ପଡୋଶୀ ସୋନପୁର ସମେତ ଅନ୍ୟାନ୍ୟ ଅଞ୍ଚଳକୁ ସଂପ୍ରସାରିତ ହେଲା । ''ସେତେବେଳେ ସୋନପୁର ବା ସୁବର୍ଣ୍ଣପୁର ରାଜ୍ୟରେ ସୋମଗୁପ୍ତ ବଂଶୀୟ ରାଜାମାନେ ରାଜ୍ୟ ଶାସନ କରୁଥିଲେ । ଏମାନେ ଶୈବ ଧର୍ମାବଲମ୍ବୀ ଥିଲେ ଏବଂ ନିଷ୍ଠାପର ଭାବରେ ଶିବ ଓ ଶକ୍ତି ପୂଜା କରୁଥିଲେ । ସେମାନେ ବୌଦରାଜ୍ୟର ବୌଦ୍ଧଧର୍ମ ପ୍ରଭାବକୁ ପ୍ରତିହତ କରିବା ତଥା ଶିବ ପୂଜାର ପ୍ରଚାର ଓ ପ୍ରସାର କରିବା ଲକ୍ଷ୍ୟରେ ଥିଲେ । ତେଣୁ ସେମାନଙ୍କ ରାଜୁତି କାଳରେ ଦଣ୍ଡନାଟର ଆରମ୍ଭ କରାଯାଇଥିଲା'' ।(୩୨) ''ଏହା ହିଁ ହେଉଛି ଦଣ୍ଡନାଟ ଉତ୍ପତ୍ତିର ଇତିହାସ ଏବଂ ସୋନପୁର ହେଉଛି ଦଣ୍ଡନାଟର ଜନ୍ମସ୍ଥାନ ''(୩୩)

ଫୁଲବାଣୀ ଜିଲ୍ଲା ଟିକାବାଲି ଅନ୍ତର୍ଗତ ଚକାପଦା ଗ୍ରାମ ଏକ ପ୍ରସିଦ୍ଧ ଶୈବ କ୍ଷେତ୍ର । ଏଠାରେ ଶିବ 'ବିରୂପାକ୍ଷ' ନାମରେ ପୂଜିତ ଏବଂ ଉଭୟ ଫୁଲବାଣୀ ଓ ଗଞ୍ଜାମ

ଜିଲ୍ଲାରେ ବିଖ୍ୟାତ । ଏଠାରେ ଦଣ୍ଡନାଚ ସୃଷ୍ଟି ହୋଇ ଗଞ୍ଜାମ ଜିଲ୍ଲାକୁ ପରିବ୍ୟାପ୍ତ ହୋଇଥିବା ପ୍ରମୁଖ ବ୍ୟକ୍ତିମାନେ ମତପ୍ରଦାନ କରନ୍ତି । ଏହି ଦୃଷ୍ଟିରୁ ଗଞ୍ଜାମର ଗାଳେରୀ ଦଣ୍ଡନାଟ ସର୍ବପ୍ରାଚୀନ ଭାବରେ ସମସ୍ତ ଦଣ୍ଡ ଦଳ ସ୍ୱୀକାର କରନ୍ତି ।(୩୪) ଲୋକବିଶ୍ୱାସ ରେ ''ଚଢେୟା ଓ ତେରଭୋକ୍ତା କଳି ଯୁଗରେ ଚକାପଦା ଗ୍ରାମରେ ଜନ୍ମଗ୍ରହଣ କରି ଚକାପାଦ ବିରୁପାକ୍ଷ ଓ କୁଲାଡ ବ୍ୟାଘ୍ର-ବାହିନୀଙ୍କଠାରୁ ବରପ୍ରାପ୍ତ ହୋଇ ଗାଳେରୀ ଗ୍ରାମରେ ଓଷାଯାତ୍ରା କରି ସ୍ୱର୍ଗପ୍ରାପ୍ତ ହେଲେ ।'' (୩୫) ଏଠାରେ ବିରୁପାକ୍ଷ ଓ ବ୍ୟାଘ୍ରଦେବୀ ଶିବ ଓ ଶକ୍ତି ରୂପେ ପ୍ରଖ୍ୟାତ ।

ଦଣ୍ଡନାଟ ସଂକ୍ରାନ୍ତି ଦିନ ଉଦ୍‌ଯାପିତ ହେବାର ଉଦ୍ଦେଶ୍ୟ ମଧ୍ୟ ଏ ସମ୍ପର୍କରେ ବିଚାର୍ଯ୍ୟ । ବିଷୁବ ସଂକ୍ରାନ୍ତି ଦିନ ବୌଦ୍ଧଧର୍ମାବଲମ୍ବୀମାନଙ୍କର ମହାମୁନିମେଳା (Annual Conference ) ଆୟୋଜିତ ହେଉଥିଲା ଏବଂ ଧର୍ମ ସଂକ୍ରାନ୍ତୀୟ ବିଭିନ୍ନ ବିଷୟରେ ଆଲୋଚନା ଓ ପ୍ରତ୍ୟାଲୋଚନା କରାଯାଇ ନୀତି ନିର୍ଦ୍ଧାରଣ କରାଯାଉଥିଲା; ଏହି ଦୃଷ୍ଟିରୁ ଦଣ୍ଡଭୋକ୍ତା ମାନେ ଉକ୍ତ ଦିନଟିକୁ ଅନ୍ତିମ ଦିବସ ରୂପେ ଗ୍ରହଣ କରିଥିବା ମନେ ହୁଏ । ଏହି ପରିପ୍ରେକ୍ଷୀରେ ସଂକ୍ରାନ୍ତି ଦିନର ଉଦ୍‌ଯାପନ ମେଳାକୁ ଲକ୍ଷ୍ୟ କରାଯାଇପାରେ । ସେଥିପାଇଁ ଏହାର ପ୍ରଭାବ ପଶ୍ଚିମବଙ୍ଗର ଶିବେର ଗାଜନ ଓ ଗମ୍ଭୀରା, ଓଡିଶାର ଚଡକ ପୂଜା, ଝାମୁ ଓ ଦଣ୍ଡ ନାଟରେ ପ୍ରତିଫଳିତ ହୋଇଛି । କାରଣ ଏହି ଦିନରେ ଶିବଙ୍କୁ ଆରାଧନା କଲେ ମନସ୍କାମନା ପୂରଣ ସହ ଧନଧାନ୍ୟ, ସନ୍ତାନ ପ୍ରାପ୍ତି ପ୍ରଭୃତି ଅଭୀଷ୍ଟସିଦ୍ଧ ହେବାର ବିଶ୍ୱାସ ରହିଅଛି -

''ଯଃ କ୍ଷିପଦେଦ୍ଧ ଭକ୍ତେନ ଚୈତ୍ରମାସଂ ନରୋତ୍ତମଃ
ଧନଧାନ୍ୟ ସମୃଦ୍ଧିଶ୍ଚ କୁଳେ ଜାୟତି ରୂପବାନ୍ ।
ବୈଶାଖଂ ଯ କ୍ଷିପେନ୍ନାସମେଦ୍ଧ ଭକ୍ତେନ ମାନବଃ
ଜାତି ସଂଶ୍ରେଷ୍ଠତାଂ ପ୍ରାପ୍ୟ ପୂଜିତା ଧନବାନପି ।।'' (୩୬)

ଚୈତ୍ର ମାସରେ ଶିବ ଆରାଧନା କରିବାର ପ୍ରଧାନ କାରଣ ଏହି ଶ୍ଳୋକରୁ ସ୍ପଷ୍ଟ ଜଣାଯାଏ ।

ଏହିପରି ଭାବରେ ବିଚାର କଲେ ଆଦିମ ନୃତ୍ୟ, ବୌଦ୍ଧଧର୍ମ, ଶିବ ଓ ଶକ୍ତି ଉପାସନା, ତାନ୍ତ୍ରିକତା ପ୍ରଭୃତି ସହିତ ଦଣ୍ଡନାଟର ସମ୍ପର୍କ ଅବଧାରିତ ହୋଇପାରେ । ଏ ସମ୍ପର୍କରେ ଯେଉଁମାନେ ଆଲୋଚନା କରିଛନ୍ତି ସେମାନେ ସମସ୍ତେ ଅନୁମାନ ଉପରେ ନିଜ ନିଜର ମତକୁ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟିତ । କିନ୍ତୁ ସମସ୍ତେ ଏହାକୁ ଏକ ପ୍ରାଚୀନ ପାରମ୍ପରିକ ନୃତ୍ୟ ଭାବରେ ଗ୍ରହଣ କରିଛନ୍ତି । ସେମାନଙ୍କ ମତର ସତ୍ୟତା ବିଚାର କରିବା ମୋର ଲକ୍ଷ୍ୟ ନୁହେଁ । ତଥାପି ବାଚିକ ଅଭିନୟ ରହିତ ଏହି ଧାର୍ମିକ ଉପାସନା ପରମ୍ପରାକୁ ଭିତ୍ତି କରି ଏହାର ପ୍ରାଥମିକ ରୂପ ଖ୍ରୀ.ପୂ

ଶତାବ୍ଦୀ ସହିତ ସମ୍ପୃକ୍ତ କରାଯାଇପାରେ । ଦଣ୍ଡ ନାଟର ଉତ୍ପତ୍ତି ସମ୍ପର୍କରେ ଯେଉଁ କେତେକ ମୌଖିକ ତଥା ପୌରାଣିକ କଳ୍ପନାଜଳ୍ପନା ଦେଖିବାକୁ ମିଳେ ସେସବୁ ମଧ୍ୟ ଏ ପରିପ୍ରେକ୍ଷୀରେ ଉଲ୍ଲେଖ ଯୋଗ୍ୟ ।

୨

## ଦଣ୍ଡନାଟର ଉତ୍ପତ୍ତି

ଦଣ୍ଡନାଟର ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ପୌରାଣିକ ଓ ଲୋକକଥା ଦେଖିବାକୁ ମିଳେ । ଅଞ୍ଚଳ ଭେଦରେ ପୁଣି ବିଭିନ୍ନ ନାଟଦଳ ନିଜ ନିଜ ଅଞ୍ଚଳର ଲୋକବିଶ୍ୱାସ ଉପରେ ଗୁରୁତ୍ୱ ଆରୋପ କରିଥାନ୍ତି । ଏଥିରୁ କେତେକ ନିମ୍ନରେ ପ୍ରଦାନ କରାଯାଉଛି ।

ଦଣ୍ଡ ଯାତ୍ରାର ପରମ୍ପରା ମହାଭାରତ ସମୟରୁ ଆସିଥିବା ଗୋଟିଏ ମତ । ମହାଭାରତର ଶିବଯାତ୍ରା ସମ୍ପର୍କୀୟ ସ୍ୱରୂପ କଣ ଥିଲା ବର୍ତ୍ତମାନ ସେ ସମ୍ପର୍କରେ ଧାରଣା କରିବା ସମ୍ଭବପର ନୁହେଁ । କେହି କେହି ସମାଲୋଚକ ଦଣ୍ଡଯାତ୍ରା ସହ ଭଗବାନ ଶିବଙ୍କ ଅବିଚ୍ଛେଦ୍ୟ ସମ୍ପର୍କକୁ ଲକ୍ଷ୍ୟ କରି ଏହି ଶିବଯାତ୍ରାକୁ ଦଣ୍ଡନାଟର ପ୍ରାଥମିକ ରୂପ ବୋଲି ଅନୁମାନ କରନ୍ତି ।

ଦଣ୍ଡ ନାଟର ଉତ୍ପତ୍ତି ସମ୍ପର୍କରେ କବି ଭିକାରୀଚରଣ ଦାସ ଲେଖିଛନ୍ତି - ''ସତ୍ୟ ଯୁଗରେ ନୈମିଷାରଣ୍ୟର ଜଣେ ତପସ୍ୱୀଙ୍କ ନିକଟରେ ମାଧୁରୀ ନାମକ ଏକ ବାଳକ ବ୍ରହ୍ମଜ୍ଞାନ ଯୋଗସାଧନା କରୁଥିଲା । ସମସ୍ତ ବିଦ୍ୟା ସମାପନ କରି ସେ ସେଥିରେ ଦିନେ ଏପରି ଭାବରେ ନିମଗ୍ନ ରହିଲାଯେ ଗୁରୁଙ୍କର ଭୋଜନ ପ୍ରସ୍ତୁତ କରିବାକୁ ଭୁଲିଗଲା । କ୍ଷୁଧାର୍ତ୍ତ ଗୁରୁ ଉପଯୁକ୍ତ ସମୟରେ ପହଞ୍ଚି ଏହା ଦେଖି ଯଷ୍ଟି ଦ୍ୱାରା ପ୍ରହାର କରନ୍ତେ ସେ ପ୍ରତିବାଦ ସ୍ୱରୂପ ଅଘୋରୀ ତପସ୍ୟାରେ ବସି ଦଗ୍ଧ ମନ୍ତ୍ର ଜପ କରିବା ଯୋଗୁଁ ଗୁରୁଙ୍କ ଶରୀର ଜ୍ୱଳନ ହେବାକୁ ଲାଗିଲା । ଗୁରୁଦେବଙ୍କ ବିକଳ ଚିତ୍କାର ଶୁଣି ଅନ୍ୟ ମୁନିଋଷି ଗଣ ଯଥାଶୀଘ୍ର ଉପସ୍ଥିତ ହୋଇ ମନ୍ତ୍ରପୂତ ଜଳ ସିଞ୍ଚନ ପୂର୍ବକ ଗୁରୁଙ୍କୁ ଜ୍ୱାଳାମୁକ୍ତ କଲେ ଏବଂ ମାଧୁରୀଠାରୁ ସମସ୍ତ ପ୍ରକାର ସିଦ୍ଧି ହରଣ କରି କୈଳାସ ପର୍ବତସ୍ଥ ଏକ ଗୁମ୍ଫାରେ ଲୁଚାଇ ଦେଲେ କଳିଯୁଗରେ ଯେତେବେଳେ ପାପର ମାତ୍ରା ବୃଦ୍ଧି ହେଲା ସେଥିରୁ ମର୍ତ୍ତ୍ୟବାସୀଙ୍କୁ ମୁକ୍ତ କରିବା ପାଇଁ ମହେଶ୍ୱର ପ୍ରିୟ ଶିଷ୍ୟ ନନ୍ଦୀ ଓ ଭୃକୁଟୀଙ୍କୁ ଡାକି ସେହି ସିଦ୍ଧି ପ୍ରଦାନ କରି କହିଲେ -

" ବୋଇଲେ କହିରେ ତାଣବ କର
ପାପ ଭରା ସବୁ ହୋଇବ ଦୂର
ଦଣ୍ଡର ଉତ୍ପତ୍ତି ଏହି
ବିଛ ଛନେ ମୋର ଦୋଷ କ୍ଷମା କର
ଭିକାରୀ ଦାସ କହଇ ।" (୩୭)

ସେହିପରି ଭଞ୍ଜନଗର ଉପଖଣ୍ଡ ଅଞ୍ଚଳର ଗାଲେରୀ ନିକଟବର୍ତ୍ତୀ ଦୋମୁହାଣୀ ଗ୍ରାମର ୰ଚୈତନ୍ୟ ସାହୁଙ୍କ ତାଳପତ୍ର ପୋଥିରେ ଦଣ୍ଡନାଟ ଉତ୍ପତ୍ତି ସମ୍ପର୍କରେ ଏକ କୌତୁହଳୋଦ୍ଦୀପକ କାହାଣୀ ଅଛି । ସତ୍ୟଯୁଗରେ ବଜ୍ରାସୁର ନାମକ ଏକ ଦୈତ୍ୟ ସ୍ଵର୍ଗ ଆକ୍ରମଣ କରି ବିଭବ ଲୁଣ୍ଠନ ପୂର୍ବକ ସ୍ଵର୍ଗବାସୀଙ୍କ ଉପରେ ଅକଥନୀୟ ଅତ୍ୟାଚାର କଲା । ଏଥିରେ ବ୍ୟସ୍ତ, ବିବ୍ରତ ହୋଇ ବ୍ରହ୍ମା ବୈକୁଣ୍ଠପୁରକୁ ଯାଇ ବିଷ୍ଣୁଙ୍କୁ ବଜ୍ରାସୁରର ମୃତ୍ୟୁ ଭେଦ ସମ୍ପର୍କରେ ଜିଜ୍ଞାସା କଲେ । ଏହାପରେ ବିଷ୍ଣୁ କହିଛନ୍ତି , "ଏ ସମସ୍ତ ହେଉଛି ଶିବଙ୍କ ଲୀଳା । ବଜ୍ରାସୁର ମରିବା ପାଇଁ ୧୩ ଦିନ ଲାଗିବ"। ବଜ୍ରସୁରର ୧୩ ମୁଣ୍ଡ, ୨୬ ହାତ ଏବଂ ୨୬ ଆଖି । ତାର ମନ୍ତ୍ରୀର ନାମ ଜ୍ଞାନସେନ । ଜ୍ଞାନସେନ ପଣ୍ଡିତ ଏବଂ ତ୍ରିକାଳଜ୍ଞ । ବିଷୁବ ସଂକ୍ରାନ୍ତି ଦିନ ବଜ୍ରାସୁର ମନ୍ତ୍ରୀଙ୍କ ସହ ଅରଣ୍ୟକୁ ଶିକାର କରିବାକୁ ଯିବା ପଥରେ ସୁନନ୍ଦା ନଦୀ ତଟରେ ତପସ୍ୟା କରୁଥିବା ରୁଦ୍ରବ୍ରହ୍ମା ନାମକ ଜଣେ ଋଷିଙ୍କୁ ମୃଗଙ୍କ ଗତି ସମ୍ପର୍କରେ ଜିଜ୍ଞାସା କଲେ । ରାଜା ବଜ୍ରାସୁରର ମନ୍ଦ ଉଦ୍ଦେଶ୍ୟ ଉପଲବ୍ଧି କରି ଋଷି ମୌନବ୍ରତ ଅବଲମ୍ବନ କରିବାକୁ ଶ୍ରେୟସ୍କର ମନେ କଲେ । ଋଷିଙ୍କଠାରୁ କୌଣସି ଉତ୍ତର ନପାଇ ସେ ଉତ୍ତ୍ୟକ୍ତ ଭାବରେ ତାଙ୍କୁ ହତ୍ୟା କରିବା ନିମନ୍ତେ ଉଦ୍ୟତ ହୁଅନ୍ତେ, ମନ୍ତ୍ରୀ ଜ୍ଞାନସେନ ସେଥିରୁ ନିବୃତ୍ତ କରାଇ ଋଷିଙ୍କ ଶରଣାପନ୍ନ ହେଲେ । ବଜ୍ରାସୁର ତିନିପୁରର କୌଣସି ଜୀବଦ୍ୱାରା ନିହତ ହୋଇପାରିବ ନାହିଁ ବୋଲି ଶିବଙ୍କ ଠାରୁ ବରପ୍ରାପ୍ତ ହୋଇଥିଲା । ବଜ୍ରାସୁରର ଔଦ୍ଧତ୍ୟରେ କ୍ଷୁବ୍ଧ ହୋଇ ଶିବଭକ୍ତ ରୁଦ୍ରବ୍ରହ୍ମା ଶିବଙ୍କୁ ଧ୍ୟାନ କରନ୍ତେ, ଶିବ ତାଙ୍କୁ ବଜ୍ରାସୁରର ମୃତ୍ୟୁ ରହସ୍ୟ ସମ୍ପର୍କରେ ଧାରଣା ଦେଇ ଅସୁର ନିଧନ ପାଇଁ ୧୩ ଦିନ ବ୍ରତୋପବାସ କରିବାକୁ କହିଲେ । ଏଥିରୁ ପ୍ରାପ୍ତ ଶକ୍ତିରେ ଅସୁରକୁ ବଧ କରିବା ସମ୍ଭବ ହେବ । ଶିବଙ୍କ ଉପଦେଶ ଅନୁସାରେ ରୁଦ୍ରବ୍ରହ୍ମା କପିଳାସରେ ତେର ଦିନ ତପସ୍ୟା କଲେ । ପ୍ରତ୍ୟେକ ଦିନ ବଜ୍ରାସୁରର ଗୋଟାଏ ଗୋଟାଏ ମୁଣ୍ଡ ଭୂପତିତ ହେଉଥାଏ । ଏହିପରି ୧୩ ଦିନରେ ସମସ୍ତ ମସ୍ତକ ବିଚ୍ଛିନ୍ନ ହୋଇ ବଜ୍ରାସୁର ସ୍ଵର୍ଗପ୍ରାପ୍ତ ହେଲା । ଶିବଙ୍କ ନିର୍ଦ୍ଦେଶାନୁଯାୟୀ ଭକ୍ତଗଣ ୧୩ଦିନ ଧରି ଏହି ବ୍ରତ ପାଳନ କଲେ । ଏହି ତେର ଭକ୍ତ ହେଲେ ବିନାୟକ, ଚଣ୍ଡ, ପ୍ରଚଣ୍ଡ, ମୁଣ୍ଡ, ଭୃକୁ, ଭୃକୁଟି, ନନ୍ଦୀ,ଅଗ୍ନିଖଣ୍ଡ, ମଣିଭଦ୍ର, ମୁକୁଣ୍ଡ,ଭୀମକ, ମହାକାଳ ଓ ମନ୍ତ୍ରୀ ଜ୍ଞାନସେନ । ସୁପଣ୍ଡିତ, ତ୍ରିକାଳଜ୍ଞ ଜ୍ଞାନସେନ ହେଉଛନ୍ତି ଦଣ୍ଡନାଟର ପ୍ରଥମ ପାଟଭୋକ୍ତା ।

ଦଣ୍ଡ ନାଟରେ ଏହିମାନେ ବିଭିନ୍ନ କାର୍ଯ୍ୟ ସମ୍ପାଦନା କରନ୍ତି । ବିନାୟକ ଓ ଚଣ୍ଡ ଅଗ୍ନିଦଣ୍ଡ ଧାରଣ କଲେ । ପ୍ରଚଣ୍ଡ ଓ ମୁଣ୍ଡ ଧାରଣ କଲେ କାଳୀଙ୍କ ପ୍ରଭା । ନନ୍ଦୀ, ଭୃକୁଟି ଓ ଅଗ୍ନିଖଣ୍ଡ ହେଲେ

ଶବର ଓ ଦୁଇ ଶବରୁଣୀ । ମଣିଭଦ୍ର ହେଲେ ବୀଣାକାର । ଭଣ୍ଡାର ଘରର ଦ୍ୱାରପାଳ ହେଲେ ଭୀମକ । ମହାକାଳ ଡଗରା କାର୍ଯ୍ୟ କଲେ । ମୃକୁଣ୍ଡ ହେଲେ ଅଧିକାରୀ । ଭୃଙ୍ଗୁ ପାଟଢୋଲିଆ କାର୍ଯ୍ୟ ସମ୍ପାଦନା କଲେ । ଏହିମାନେ ହେଉଛନ୍ତି ଶକ୍ତିଯୁକ୍ତ ତ୍ରିଶକ୍ତି । ଏହି ଭକ୍ତଗଣ ଶିବ-ମାହାତ୍ମ୍ୟ ପ୍ରଖ୍ୟାପନ ପାଇଁ ଏହି ବ୍ରତ ପାଳନ ବିଷୟ ମର୍ତ୍ତ୍ୟରେ ପ୍ରଚାର କଲେ ।

ଅନ୍ୟ ଏକ କାହାଣୀ କାର୍ତ୍ତିକ ଦାସଙ୍କ 'ଦଣ୍ଡନାଟ'ରେ ଦେଖିବାକୁ ମିଳେ । ତାହାହେଲା- 'ଦଣ୍ଡ' ସତ୍ୟ ଯୁଗରେ କୈଳାଶ କନ୍ଦର ମଧ୍ୟରେ ଲୁକ୍କାୟିତ ଥିଲା । ତ୍ରେତୟା ଯୁଗରେ ତାହା ସେତୁବନ୍ଧ ରୂପରେ ପରିଦୃଷ୍ଟ ହେଲା । କଳିଯୁଗରେ ଏହି ଦଣ୍ଡ କପିଳାସରେ ଥିଲା । ସେହି ଦଣ୍ଡକୁ ଶିବଙ୍କ ସର୍ପ ଓ ହିଙ୍ଗୁଳାଦେବୀ ଅଗ୍ନିରୂପ ଧାରଣ କରି ଜଗି ରହିଥାନ୍ତି । ପରେ ଭକ୍ତମାନେ ଏହିମାନଙ୍କୁ ସନ୍ତୁଷ୍ଟ କରି ଉକ୍ତ ଦଣ୍ଡ ପ୍ରାପ୍ତ ହୋଇଥିଲେ ଏବଂ ସେହିଦିନଠାରୁ ଦଣ୍ଡ ନାଟର ପ୍ରଚଳନ ହେଲା । (୩୮)

ଏ ସମ୍ପର୍କରେ ଅନ୍ୟ ଏକ କାହାଣୀ ହେଲା-ଦକ୍ଷ ଏକ ଯଜ୍ଞର ଆୟୋଜନ କରିଥିଲେ । କନ୍ୟା ସତୀ ଓ ଜାମାତା ଶିବଙ୍କ ବ୍ୟତୀତ ଅନ୍ୟ ସମସ୍ତ ଦେବତା ଓ ମୁନିଋଷିଙ୍କୁ ଏଥିପାଇଁ ନିମନ୍ତ୍ରଣ କରାଗଲା । କିନ୍ତୁ ପିତାଙ୍କ ଯଜ୍ଞ ଦର୍ଶନାର୍ଥେ ସ୍ୱାମୀଙ୍କ ଅନୁମତି ନେଇ ସତୀ ଆସି ପିତ୍ରାଳୟରେ ଉପସ୍ଥିତ ହୁଅନ୍ତେ ପିତା ଦକ୍ଷ ସ୍ୱାମୀ ନିନ୍ଦା କଲେ । ଏହି ଅପମାନରେ ଜର୍ଜରିତ ହୋଇ ସତୀ ଯଜ୍ଞ କୁଣ୍ଡରେ ଆତ୍ମାହୁତି ଦେଲେ । ଅଗ୍ନିଦେବ ନିଜର ପତ୍ନୀ ସ୍ୱାହା ଓ ସ୍ୱଧାଙ୍କୁ ଡାକି ସତୀଙ୍କ ଦଗ୍ଧ ଶରୀରକୁ ଅନ୍ତଃପୁରରେ ରଖି ସେବା କରିବାକୁ କହିଲେ । ଏ ସମସ୍ତ ବ୍ୟାପାର ଯୋଗବଳରେ ଜାଣି ଯୋଗୀରାଜ ଶିବ ମହାରୁଦ୍ରରୂପ ଧାରଣ କରି ରୁଦ୍ରଗଣଙ୍କ ସହ ଦକ୍ଷଙ୍କ ଯଜ୍ଞଶାଳାରେ ଉପସ୍ଥିତ ହେଲେ । ଏହି ପରି ଉଗ୍ରରୂପ ସନ୍ଦର୍ଶନ କରି ସମସ୍ତ ଦେବଦେବୀ ଓ ମୁନିଋଷି ଭୀତତ୍ରସ୍ତ ଅବସ୍ଥାରେ ଶିବଙ୍କର ଶରଣାପନ୍ନ ହୋଇ ସ୍ତୁତିପାଠ କଲେ । ତଥାପି ଶାନ୍ତ ନହୋଇ ମହାକ୍ରୋଧୀ ଶିବ ଦକ୍ଷଙ୍କ ଶିର ଛେଦନ କରି ଯଜ୍ଞ କୁଣ୍ଡରେ ନିକ୍ଷେପ କରିଥିଲେ ।

ଶିବଙ୍କ କ୍ରୋଧ ଶାନ୍ତ କରିବା ପାଇଁ ଦକ୍ଷପତ୍ନୀ ତାଙ୍କର ପୂଜାର୍ଚ୍ଚନା କଲେ । କ୍ରୋଧିତ ଶିବ ଦକ୍ଷ ପତ୍ନୀଙ୍କୁ ଲିଙ୍ଗ ପ୍ରଦର୍ଶନ କରାନ୍ତେ, ଏହା ଛିନ୍ନ ହେଉ ବୋଲି ତାଙ୍କୁ ଅଭିଶାପ ଦେଲେ । ଶାପ ଦେବା ମାତ୍ରେ ଶିବଙ୍କ ଲିଙ୍ଗ ପାଷାଣ ହୋଇ ଅଙ୍ଗରୁ ବିଚ୍ଛିନ୍ନ ହେଲା ଏବଂ ପୃଥିବୀ ପୃଷ୍ଠରେ ନିପତିତ ହେବାକୁ ଲାଗିଲା । ଭୂ-ମାତା ଏହାକୁ ସହ୍ୟ କରି ନପାରି କ୍ରନ୍ଦନ କରନ୍ତେ, ଅଗ୍ନିଙ୍କ ଅନ୍ତଃପୁରସ୍ଥ ଦେବୀ ସତୀ ଶକ୍ତି ରୂପରେ ଆସି ଲିଙ୍ଗ ତଳେ ଆସନ ପାରି ରହିଲେ । ସେହିଦିନଠାରୁ ଶିବପାର୍ବତୀ ଲିଙ୍ଗ ଶକ୍ତି ରୂପେ ଚାରିଯୁଗରେ ତ୍ରିପୁରରେ ପୂଜା ପାଇ ଆସୁଛନ୍ତି । ସତ୍ୟ, ତ୍ରେତୟା ଓ ଦ୍ୱାପରରେ ରୁଦ୍ରକାଳୀଦଣ୍ଡ ଭକ୍ତମାନେ ଲିଙ୍ଗଶକ୍ତି ନେଇ ଓଷା ଓ ବ୍ରତ ପାଳନ କଲେ । କଳିକାଳରେ ଏହି ବ୍ରତ ଓ ଓଷା କରିବା ପାଇଁ ଚଢେୟାକୁ ଲିଙ୍ଗଶକ୍ତି ନ ଦେଇ ୨ଟି ଦଣ୍ଡଘଡି

ପ୍ରଦାନ କରି ତାକୁ ଲିଙ୍ଗଶକ୍ତିରୂପେ ରୁଦ୍ରକାଳୀ ପୂଜା କରିବା ନିମିତ୍ତ ନିର୍ଦ୍ଦେଶ ଦେଲେ । କାମନା ଦଣ୍ଡର ଦଣ୍ଡ ଦୁଇଗୋଟି ଏହି ଇଶ୍ୱର ପାର୍ବତୀଙ୍କ ଲିଙ୍ଗଶକ୍ତି ମାତ୍ର । ସେହିଦିନ ଠାରୁ ପୁରୁଷାନୁକ୍ରମେ ଏହା ପ୍ରଚଳିତ । ଲିଙ୍ଗ ଦଣ୍ଡ ଗୋଟି ହର ଓ ଅନ୍ୟଟି ଗୌରୀ । ଏଣୁ କାମନା ଦଣ୍ଡର ଦୁଇଗୋଟି ଦଣ୍ଡ ଦକ୍ଷ ପ୍ରଜାପତିଙ୍କ ଯାଗରୁ ଉତ୍ପନ୍ନ । (୩୯)

ଅନ୍ୟ ଏକ ଲୌକିକ ମତ ହେଲା- ଦକ୍ଷ ପ୍ରଜାପତିଙ୍କ ଯଜ୍ଞ କୁଣ୍ଡରୁ ଦଣ୍ଡ ଉତ୍ପନ୍ନ ହୋଇ ଚାରି ଯୁଗରେ ତ୍ରିପୁରରେ ଦେବତା, ରାକ୍ଷସ, ଅସୁର ଓ ମାନବ ଦ୍ୱାରା ପୂଜା ପାଇ ଆସୁଅଛି । ଇଶ୍ୱର ମାତୃ ହରଣ ଦୋଷରୁ ମୁକ୍ତି ପାଇବା ସକାଶେ ପ୍ରଥମେ ଏହି ଦଣ୍ଡବ୍ରତ ପାଳନ କରିଥିଲେ । ଏହି ଦଣ୍ଡ ସତ୍ୟ ଯୁଗରେ ସ୍ୱର୍ଗରେ ଅବସ୍ଥାପିତ ଥିଲା, ପରେ ସୁଧର୍ମ ନନ୍ଦନ ଏହାକୁ ପୂଜା କରିବା ନିମନ୍ତେ ମର୍ତ୍ତ୍ୟକୁ ଆଣିଥିଲେ । ତ୍ରେତୟା ଯୁଗରେ ଶ୍ରୀୟା ଦେବୀଙ୍କ ଦ୍ୱାରା ଏହି ଦଣ୍ଡ କାମନା ବ୍ରତ ନିର୍ବିଘ୍ନରେ ପାଳିତ ହୋଇଥିଲା । ମଧୁପୁରର ରାଜା ମାଧବ ନିଜେ ପିଠି ଫୋଡି ଏହି ଦ ଣ୍ଡ ବ୍ରତ ପାଳନ କରିଥିଲେ । ଦ୍ୱାପର ଯୁଗରେ କୃଷ୍ଣ ଓ ସତ୍ୟଭାମା ହରଗୌରୀଙ୍କ ଏହି ବ୍ରତ ନିଷ୍ଠାରେ ପାଳନ କରି ଭାରତଯୁଦ୍ଧରେ କୋଟି କୋଟି ବୀରଙ୍କର ମସ୍ତକ ବଳି ସ୍ୱରୂପ ଦେଇଥିଲେ । ସମ୍ପ୍ରତି କଳିଯୁଗରେ ଏହି ଦଣ୍ଡ ଗ୍ରାମେ ଗ୍ରାମେ ଶାନ୍ତି ପ୍ରତିଷ୍ଠା ଓ ମୋକ୍ଷ ସକାଶେ ପୂଜା ପାଉଅଛି । ଇଶ୍ୱର ଓ ପାର୍ବତୀଙ୍କ ପ୍ରତୀକ ଲିଙ୍ଗ ଓ ଶକ୍ତି ଏହି ଦଣ୍ଡରୂପେ ଉପାସିତ । (୪୦)

ପ୍ରତ୍ୟେକ ଅଞ୍ଚଳରେ ଦଣ୍ଡନାଟ ପାଇଁ ସ୍ୱତନ୍ତ୍ର ଲୌକିକ ତଥ୍ୟ ରହିଅଛି । ସେହି ଲୋକ ବିଶ୍ୱାସ ଗୁଡିକ ଏତେ ଦୃଢ ଯେ ସେମାନଙ୍କ ବିଶ୍ୱାସକୁ ଏଡାଇ ଦେବା ସହଜ ନୁହେଁ । କିନ୍ତୁ ସର୍ବତ୍ର ଦଣ୍ଡପୂଜା କିମ୍ବା ଦଣ୍ଡନାଟରେ ପ୍ରାଚୀନତା ପ୍ରମାଣ କରିବା ପାଇଁ ନାଟ୍ୟଗୋଷ୍ଠୀ ଗୁଡିକର ପ୍ରୟାସ ଉଲ୍ଲେଖଯୋଗ୍ୟ । ସେହିପରି ଏହାର ତାତ୍ପର୍ଯ୍ୟ ସମ୍ପର୍କରେ ମଧ ବିଭିନ୍ନ ମତ ଦେଖାଯାଏ । ତେଣୁ ଦଣ୍ଡ ନାଟକୁ ପ୍ରାଚୀନତା ପରିପ୍ରେକ୍ଷୀରେ ତିନି ଭାଗରେ ବିଭକ୍ତ କରାଯାଇପାରେ । ଯଥା- ଦଣ୍ଡ, ଦଣ୍ଡପୂଜା ଓ ଦଣ୍ଡନାଟ । ସେଥିରେ କାଳକ୍ରମେ ପୂଜା ଓ ନୃତ୍ୟ (ଆଙ୍ଗିକ ନୃତ୍ୟ) ଯୋଗ କରାଯାଇ ଶେଷରେ ଦର୍ଶକଙ୍କର ମନୋରଞ୍ଜନ ନିମିତ୍ତ ସୁଆଙ୍ଗ ବା ନୃତ୍ୟର ସଂଯୋଜନା ହୋଇଥିବା ଅଯୌକ୍ତିକ ମନେ ହୁଏ ନାହିଁ ।

*

# ଦଣ୍ଡନାଟର ତାତ୍ପର୍ଯ୍ୟ

କେତେକ ସ୍ଥାନରେ ମୂଳ ଏବଂ କଛି ପରିବର୍ତ୍ତିତ ରୂପରେ ଦଣ୍ଡନାଟ ଓଡିଶାର ପ୍ରାୟ ପ୍ରତ୍ୟେକ ଜିଲ୍ଲାରେ ଦେଖାଯାଏ । ଏ ଗୁଡିକ ଅନୁଧ୍ୟାନ କଲେ ପଲ୍ଲୀ ସମାଜରେ ଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାର ନିରାକରଣ, ବିଶ୍ୱାସ, ଭକ୍ତି, ନିଷ୍ଠା, ଆତ୍ମନିର୍ଭରଶୀଳତା ଓ ବିଶ୍ୱମୈତ୍ରୀ ପ୍ରତିଷ୍ଠା, ଜାତିଭେଦ ଦୂରୀକରଣ ଇତ୍ୟାଦି ଉଦ୍ଦେଶ୍ୟ ଥିବା ମନେହୁଏ । ଏହି ଲୋକପ୍ରିୟ ଧାର୍ମିକ ନୃତ୍ୟ ଝାମୁ, ଚଡକ, ପାଟୁଆ, ଦଣ୍ଡନୃତ୍ୟ, ଦଣ୍ଡନାଟ ଓ ଦଣ୍ଡବ୍ରତ ନାମରେ ବିଭିନ୍ନ ଅଞ୍ଚଳରେ ଅନୁଷ୍ଠିତ ହେଉଥିଲେ ମଧ ସମସ୍ତଙ୍କର ଉଦ୍ଦେଶ୍ୟ ପୁଣ୍ୟାର୍ଜନ ଓ ପୁଣ୍ୟ ପ୍ରଦାନ ସହ ମହତ୍ କାର୍ଯ୍ୟ ସମ୍ପର୍ଣ୍ଣ କରିବା । ଏଠାରେ ଏହାର କେତୋଟି ବିଭାଗ ଉପରେ ଆଲୋଚନା କରାଯାଇପାରେ ।

ଭାରତରେ ପ୍ରତ୍ୟେକ ଯାତ୍ରା ଓ ନୃତ୍ୟ କୌଣସି ଏକ ଧର୍ମ-ଧାରଣାକୁ ଭିତ୍ତିକରି ଗଢି ଉଠିଥାଏ । ସେହି ଯାତ୍ରା ତଥା ଉତ୍ସବରେ ନିର୍ଦ୍ଦିଷ୍ଟ ଆରାଧ ଦେବାଦେବୀଙ୍କର ପ୍ରଶସ୍ତି ଗାନ କରାଯାଏ । ସମାଜସ୍ଥିତ ନରନାରୀଙ୍କୁ ଆରାଧ ଦେବତାଙ୍କ ପ୍ରତି ଆକୃଷ୍ଟ କରିବା ଏ ସବୁର ଲକ୍ଷ୍ୟ । ତେଣୁ ଶିବଶକ୍ତିଙ୍କ ପ୍ରତି ଲୋକଙ୍କ ବିଶ୍ୱାସକୁ ଦୃଢୀଭୂତ କରିବା ଦଣ୍ଡନାଟର ପ୍ରାଥମିକ ଲକ୍ଷ୍ୟ ।

ଦ୍ୱିତୀୟତଃ, ଦଣ୍ଡନାଟରେ ଜାତିବର୍ଣ୍ଣ ନିର୍ବିଶେଷରେ ଲୋକ ଅଂଶ ଗ୍ରହଣ କରୁଥିବା ସମ୍ପ୍ରତି ସ୍ପଷ୍ଟ ପରିଦୃଷ୍ଟ । ସେମାନଙ୍କ ମଧରେ କୌଣସି ଭେଦାଭେଦ ଭାବ ନଥାଏ । ସମସ୍ତ ପ୍ରକାର କୁପ୍ରବୃତ୍ତି ପରିତ୍ୟାଗ କରି ନିବିଷ୍ଟ ଚିତ୍ତରେ ଏମାନେ ଈଶ୍ୱର/ଭଗବାନଙ୍କ ଗୁଣ ଗାନ କରି ଏକାନ୍ନବର୍ତ୍ତୀ ପରିବାର ସଦୃଶ ସଂକ୍ରାନ୍ତି ଯାଏଁ ଜୀବନ ଯାପନ କରିଥାନ୍ତି । ଏହି ଭାବ ମଧ ଅନ୍ୟ ସମୟରେ ପ୍ରାୟ ରଖିଥାନ୍ତି । ଈଶ୍ୱରଙ୍କ ସୃଷ୍ଟିରେ ସମସ୍ତେ ସମାନ ଏହି ମର୍ମ ସୃଷ୍ଟି କରିବା ଦଣ୍ଡନାଟର ଅନ୍ୟତମ ଉଦ୍ଦେଶ୍ୟ । ଏହି ପରିପ୍ରେକ୍ଷୀରେ ଗୋଟାଏ ଗାଉଁଲି ପ୍ରବାଦକୁ ଗ୍ରହଣ କରାଯାଇପାରେ ତାହାହେଲା ''ବାରଜାତି ତେରଗୋଲା,ବୈଷ୍ଣବ ହେଲେ ସବୁ ଗଲା '' ଏହି ପ୍ରବାଦ ମଧରେ ଏକ ବିରାଟ ମାନବୀୟ ଦର୍ଶନ ନିହିତ, ଯାହାକୁ ଦଣ୍ଡନାଟ ମାଧମରେ ଆଲୋଚନା କରାଯାଇପାରେ ।

ମଣିଷ ଯେଉଁ ଜାତି, ଗୋଷ୍ଠୀ ବା ସମ୍ପ୍ରଦାୟର ହେଉନା କାହିଁକି ସେ ବୈଷ୍ଣବ ଧର୍ମ ଗ୍ରହଣ କଲେ ତାର କୌଣସି ଅନ୍ୟ ପରିଚୟ ରହିବ ନାହିଁ କାରଣ-ସେ ବୈଷ୍ଣବ, ବିଷ୍ଣୁଭକ୍ତ ବା ଈଶ୍ୱରଙ୍କ ସନ୍ତାନ । ଏହାଠାରୁ ବଡ ଦର୍ଶନ ଆଉ କଣ ଥାଇପାରେ । ସମଗ୍ର ଭାରତରେ ଏହାର

ପ୍ରଥମ ଦିଗ୍‌ଦର୍ଶକ ଥିଲେ ଶ୍ରୀ ଚୈତନ୍ୟ । ପ୍ରାଚୀନ କାଳରୁ ପ୍ରଚଳିତ ଥିବା ଅସ୍ପୃଶ୍ୟ ସମାଜର ଦଣ୍ଡନାଟରେ ଅଂଶଗ୍ରହଣ ଏହି ସମୟରେ ପରିବର୍ତ୍ତିତ ହୋଇଥିବା ମନେ ହୁଏ । ସମ୍ପ୍ରତି ଦଣ୍ଡନାଟ ଦଳରେ ଯେଉଁ ବୈଷ୍ଣବୀୟ ଚଳଣୀ ଦେଖାଯାଏ ତାହାର ପ୍ରଥମ-ପଥ ପ୍ରଦର୍ଶକ ଭାବରେ ଶ୍ରୀଚୈତନ୍ୟଙ୍କୁ ଗ୍ରହଣ ଗରାଯାଇପାରେ । କାରଣ ସେହି ସମୟରେ ସମାଜକୁ ଜଡତା ଗ୍ରାସ କରିଥିଲା, ମଣିଷ ତମସାଚ୍ଛନ୍ନ ହୋଇ ବାଟବଣା ହେଉଥିଲା, ବିଭିନ୍ନ ପ୍ରକାରର ଅତ୍ୟାଚାର, ପୀଡନ ଏବଂ ଶୋଷଣର ଶୀକାର ହେଉଥିଲା, ଏହି ସମୟରେ ମଣିଷକୁ ବୈଷ୍ଣବ ଧର୍ମ ମାଧ୍ୟମରେ ଏକତା ମନ୍ତ୍ରରେ ଦୀକ୍ଷିତ କରାଇ ଏକ ନୂତନ ଯୁଗର ପ୍ରବର୍ତ୍ତନ ସକାଶେ ଶ୍ରୀ ଚୈତନ୍ୟ ଐତିହାସିକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଏହି ପ୍ରବାଦଟି କେବଳ ଜାତିପ୍ରଥା ଓ ଉଚ୍ଚ ନୀଚର ବିଲୋପ ସାଧନ ପାଇଁ ଉଦ୍ଦିଷ୍ଟ ନଥିଲା । ସମସ୍ତ ଧର୍ମୀୟ ସମ୍ପ୍ରଦାୟକୁ ଏକତା ସୂତ୍ରରେ ବାନ୍ଧି ରଖିବାର ଥିଲା ଅନ୍ୟତମ ଉଦ୍ଦେଶ୍ୟ । ତେଣୁ ତତ୍‌କାଳୀନ ବୌଦ୍ଧ, ଜୈନ, ଶୈବ, ଶାକ୍ତ ବା ଗାଣପତ୍ୟ ପ୍ରଭୃତି ଧର୍ମୀୟ ସମ୍ପ୍ରଦାୟମାନ ଯେ କେବଳ ନିଷ୍ପ୍ରଭ ହୋଇପଡିନଥିଲେ, ସେମାନେ ବୈଷ୍ଣବ ଧର୍ମର ସ୍ରୋତରେ ଲୀନ ହୋଇଯାଇଥିଲେ । ଏହାର ପ୍ରତିଫଳନ ଦଣ୍ଡନାଟରେ ସ୍ପଷ୍ଟ ଅନୁମେୟ । ପ୍ରତ୍ୟେକ ଦଣ୍ଡଭୋକ୍ତା ସହଜ, ସରଳ ଭାଷାରେ ଈଶ୍ୱରଙ୍କ ଗୁଣଗାନ କରି ସବୁ ଶ୍ରେଣୀ, ସବୁ ଜାତି ଏବଂ ସବୁ ଧର୍ମୀୟ ଗୋଷ୍ଠୀକୁ ଏକତ୍ର ରଖିବାରେ ପ୍ରୟାସ କରିଛନ୍ତି ମାତ୍ର ।

ତୃତୀୟତଃ, ଖାଦ୍ୟପେୟ ଦୃଷ୍ଟିରୁ ବିଚାର କଲେ ଦଣ୍ଡନାଟରୁ ଅନେକ ଶିକ୍ଷା ମିଳିଥାଏ । ଭୋକ୍ତାମାନେ କେବଳ ସାତ୍ତ୍ୱିକ ଆହାର କରନ୍ତି । ଏହି ଖାଦ୍ୟ ବନ୍ୟ ଫଳମୂଳ, କଞ୍ଚା, ସିଝା, ପରିବା, ପଇଡ, ଖୀର, ଠାକୁରଙ୍କ ପାଦୋଦକ ଇତ୍ୟାଦି । ସାମ୍ପ୍ରତିକ କାଳରେ ଏଥିରେ କିଛି ପରିବର୍ତ୍ତନ ହୋଇ ହବିଷାନ୍ନ, ପଣା, ଖଇ, ଫଳ ଇତ୍ୟାଦି ଆହାର ଯୋଗ ହୋଇଛି । ଏ ସମସ୍ତ ଖାଦ୍ୟ ଦ୍ୱାରା ଶରୀରର ପୁଷ୍ଟି ସାଧିତ ହୋଇ ଚିତ୍ତର ଏକାଗ୍ରତା ବୃଦ୍ଧି କରେ । ଯେ କୌଣସି ପ୍ରକାରର ତାମସିକ ଖାଦ୍ୟ ଦଣ୍ଡ ଭୋକ୍ତାଙ୍କ ପାଇଁ ସର୍ବଦା ବର୍ଜନୀୟ । ସମାଜରୁ ହିଂସା, ଦ୍ୱେଷ ଦୂର କରିବା ପାଇଁ ଏହା ଏକ ବିଶେଷ ଉପାୟ ।

ଚତୁର୍ଥତଃ, ଉତ୍ତପ୍ତ ମଧ୍ୟାହ୍ନର ଧୂଳିଦଣ୍ଡ ସମୟରେ ଖଇ-ଫୁଟା ଧୂଳିରେ ଗଡିବା ଦ୍ୱାରା ଶରୀରର ରୋଗ ଜୀବାଣୁ କ୍ଷୟ ହୋଇ ବିଭିନ୍ନ ପ୍ରକାରର ଚର୍ମ ରୋଗ ଦୂର ହୁଏ । ଏତଦ୍ୱାରା କ୍ଷୁଧା ଶକ୍ତି କେତେକ ପରିମାଣରେ ବୃଦ୍ଧିପାଏ । ବହୁ କାଳରୁ ଥିବା କୁଷ୍ଠ-ରୋଗକୁ ଦୁରାରୋଗ୍ୟ ବ୍ୟାଧି ଭାବରେ ସାଧାରଣ ଜନତା ଗ୍ରହଣ କରିଥିଲେ । ଚିକିତ୍ସା ଶାସ୍ତ୍ର ଦୃଷ୍ଟିରୁ ହେଉ ବା ଲୌକିକ ବିଶ୍ୱାସରୁ ହେଉ ସୂର୍ଯ୍ୟ କିରଣ ଏହାର ପ୍ରତିଷେଧକ ଓ ଔଷଧ ରୂପେ ପରିଗଣିତ ହେଉଥିଲା । ଧୂଳିଦଣ୍ଡକାଳୀନ ଶାରୀରିକ ସାଧନା ଏହି ରୋଗର ପ୍ରାଦୁର୍ଭାବରୁ ଦଣ୍ଡଭୋକ୍ତାମାନଙ୍କୁ ମୁକ୍ତ ରଖୁଥିଲା ।

ପଞ୍ଚମତଃ, ସନ୍ଧ୍ୟାରେ ନିଆଁ ଝୁଣାର ଖେଳ ଦ୍ୱାରା ଉତ୍ତପ୍ତ ବାୟୁ ମଣ୍ଡଳ କେତେକ ପରିମାଣରେ ଶୀତଳ ହୁଏ ଏବଂ ମଶା ଉପଦ୍ରବରୁ ଗ୍ରାମବାସୀଙ୍କୁ ରକ୍ଷାକରେ । ଏହି ସମୟରେ ବସନ୍ତ ରୋଗର ପ୍ରକୋପ ଯୋଗୁଁ ନିଆଁ ଝୁଣାର ଖେଳ ଏକ ଆବଶ୍ୟକୀୟ ନିବାରକ । ଏହା ବ୍ୟତୀତ ମୟୂର ଚନ୍ଦ୍ରିକାରେ ଶରୀରକୁ ଝାଡିବା ବସନ୍ତ ରୋଗର ଅନ୍ୟତମ ପ୍ରତିଷେଧକ । ଏଥିପାଇଁ ପ୍ରତ୍ୟେକ ଭୋକ୍ତା ମୟୂର ଚନ୍ଦ୍ରିକାର ଏକଏକ ଗୁଚ୍ଛ ହାତରେ ଧରିଥାନ୍ତି । ମୟୂର ଚୂଳରେ ଅଲୌକିକ ଶକ୍ତି ଥିବା ସେମାନେ ବିଶ୍ୱାସ କରନ୍ତି । ଏହା ହାତରେ ଥାଉ ବା ଗୃହ ମଧ୍ୟରେ ଥାଉ, କୌଣସି ଅଶୁଭ ଦେବତା ଗ୍ରାମରେ ବା ଗୃହରେ ପ୍ରବେଶ କରିପାରନ୍ତିନାହିଁ ଏବଂ ଗ୍ରାମରୁ ମରୁଡି, ହଇଜା, ବସନ୍ତ ପ୍ରଭୃତି ସଂକ୍ରାମକ ରୋଗ ଦୂରୀଭୂତ ହୁଏ । ଅଞ୍ଚଳାବଶ୍ୟର ଶ୍ରୀବୃଦ୍ଧି ହୁଏ । ତେଣୁ ଏହା ଶୁଭପ୍ରଦ ଏବଂ ସମ୍ମାନ ସୂଚକ ବସ୍ତୁ ବିଶେଷ । ପ୍ରତ୍ୟେକ ଦଣ୍ଡନାଟ ଦଳର ଏହା ବୌଳିକ ବିଧିବିଧାନ ଏବଂ ଦେବାରାଧନା ସହ ଘନିଷ୍ଠ ସମ୍ପର୍କ ରଖିଥାନ୍ତି । ଏହି ବିଶ୍ୱାସକୁ ଦୃଢୀଭୂତ କରିବାକୁ ଯାଇ ଗ୍ରାମର ଶେଷ ପ୍ରାନ୍ତରେ ଥିବା ବୃକ୍ଷ, ପ୍ରସ୍ତର କିମ୍ବା ଗୃହର କାନ୍ଥରେ ମୟୂରଚିତ୍ର ଅଙ୍କନ କରନ୍ତି । ଛୋଟ ଶିଶୁର କଟୀରେ ଅନେକ ଗ୍ରାମ୍ୟ ଲଳନା ମୟୂରପୁଚ୍ଛ ବାନ୍ଧନ୍ତି । ଏହାଦ୍ୱାରା ଭୂତ, ପ୍ରେତ ବା ଡାହାଣୀ ଚିରୁଗୁଣୀଙ୍କ କୋପ ଦୃଷ୍ଟି ପଡେ ନାହିଁ । ପଢା ବହିରେ ମୟୂର ପୁଚ୍ଛର ଏକ ଅଂଶ ରଖିଲେ ପାଠ ସହଜରେ ମନେ ରହେ । ମୟୂର ପୁଚ୍ଛର ଏକ ଗୁଚ୍ଛ ଗୃହ ମଧ୍ୟରେ ବା ଛାତତଳେ ରଖିଲେ କୌଣସି ଅପଦେବତା ପଶିବାକୁ ସାହାସ କରନ୍ତି ନାହିଁ । ଯେ କୌଣସି ପ୍ରକାର ଶୁଭ କାର୍ଯ୍ୟ ବା ଉତ୍ସବମାନଙ୍କରେ ମାଟିହାଣ୍ଡି ଦେହରେ ମୟୂର, ସାପ, ହାତୀ, ସୂର୍ଯ୍ୟ ଚିତ୍ରମାନ ଅଙ୍କନ କରି ଗୃହ ଚାଳରେ ଲଟକେଇଥାନ୍ତି । ମୟୂର ଏକ ଶୁଭପ୍ରଦ ଏବଂ ଅତ୍ୟାବଶ୍ୟକ ପକ୍ଷୀ ହୋଇଥିବାରୁ ଏହା ଜାତୀୟ ପକ୍ଷୀ ଭାବରେ ଭାରତରେ ସ୍ୱୀକୃତ । ତେଣୁ ଦଣ୍ଡନାଟର ଅବଦାନ ଏଥିପାଇଁ କିଛି କମ୍ ନୁହେଁ । ଆଧାତ୍ମିକତା ମଧ୍ୟରେ ରୋଗ ପ୍ରତିଷେଧକ ଏବଂ ଲୋକବିଶ୍ୱାସ ବ୍ୟବସ୍ଥା ଏହାର ଅନ୍ୟତମ ଉଦ୍ଦେଶ୍ୟ ।

ଷଷ୍ଠତଃ, ତନ୍ତ୍ର ପୂଜାରେ ପଶୁବଳୀ ପ୍ରଦାନ ଏକ ସାଧାରଣ କଥା । କାଳୀ ପୂଜା ନାମରେ ତାନ୍ତ୍ରିକମାନେ ପଶୁବଳୀ ଦେଇଥାନ୍ତି । ପ୍ରଥମେ ଦଣ୍ଡନାଟ ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି । ଯାହାର ଜୀବନ ଦାନ କ୍ଷମତା ନାହିଁ, ସେ କାହିଁକି ପଶୁର ଜୀବନ ନେବ ? ବଞ୍ଚିବାର ଅଧିକାର ସମସ୍ତଙ୍କର ଅଛି ଏବଂ ସଭିଙ୍କ ହୃଦୟରେ ଭଗବାନଙ୍କ ସତ୍ତା ନିହିତ । ଏହାକୁ ପରିବର୍ତ୍ତନ କିମ୍ବା ବିନିଷ୍ଟ କରିବା ଅଧିକାର କାହାରି ନାହିଁ । ଏହା ସତ୍ତ୍ୱେ ଭକ୍ତମାନେ ଯଦି ବଳୀ ପ୍ରତି ମନ ବଳାଇବେ ତେବେ ବିରିଚୂର୍ଣ୍ଣରେ ଗୋଟିଏ ଇପ୍‌ସିତ ଜୀବ ବା ମେଷାକୃତି ପିଠା ଏଥିପାଇଁ ବ୍ୟବହାର କରିପାରନ୍ତି ।

ଏହା 'ଜୀବେ ଦୟା' ଏବଂ 'ଅହିଂସା ପରମୋଧର୍ମ' ବାଣୀ ପ୍ରଚାର କରେ । ଜଣେ ଦଣ୍ଡକବିଙ୍କ ଭାଷାରେ-

ଢାଳୀ ଆଦ୍ୟାଶକ୍ତି ପରମ ବୈଷ୍ଣବୀ
ହିଂସା ସର୍ବଦା ନିନ୍ଦନ୍ତି ସର୍ବ ଦେବାଦେବୀ ।।
ଢାଳୀ ଯିଏ ଦୁଷ୍ଟ ସିଏ ଅଟେ ଚଢ଼ାଢୋଳା
ଡାବଛନ୍ତୁ ବଳୀ କିମ୍ବା ଖାଉବ ଢାଳୀଆ ।। (୪୧)

ସପ୍ତମତଃ ବହୁ ପୁରାତନ କାଳରୁ ନାରୀ ପୁରୁଷ ମାନଙ୍କ ଦ୍ୱାରା ଅବହେଳିତ ଏବଂ ଉତ୍ପୀଡିତ । ଏହାର ପ୍ରଧାନ କାରଣ ହେଉଛି, ପୁରୁଷ ପ୍ରଧାନ ସମାଜରେ ସ୍ୱାର୍ଥପର ଭାବରେ ଗଢାଯାଇଥିବା ବହୁ ପ୍ରକାର ନୀତିନିୟମ ଓ ନିଷେଧାଜ୍ଞା । ଏହାର କୁପରିଣତି-ଗୁଡ଼ିକ ମଧ୍ୟରୁ ବାଲ୍ୟ ବିବାହ ଓ ବାଲ୍ୟ ବୈଧ୍ୟବ୍ୟତାର ଦୁଃଖାବହ ପରିଣତି । କୌଣସି ପରିବାରରେ ସ୍ତ୍ରୀ ମୃତ ହେଲେ ସ୍ୱାମୀ ପାଇଁ ଦ୍ୱିତୀୟ ସ୍ତ୍ରୀ ଗ୍ରହଣରେ ବାଧା ନଥିଲା । କିନ୍ତୁ ବିଧବାର ସ୍ୱାମୀ ଗ୍ରହଣ ଥିଲା ଗର୍ହିତ । କିମ୍ବା ସ୍ୱାମୀସୁଖ ରହିତ ବାଲ୍ୟ ବିଧବାର ବିବାହ ମଧ୍ୟ ନିଷିଦ୍ଧ ଥିଲା । ଏପ୍ରକାର ଅନ୍ୟାୟ ବିରୁଦ୍ଧରେ ସ୍ୱର ଉଠିଥିଲା ଦଣ୍ଡନାଟ ମାଧ୍ୟମରେ । ଚଢେୟାର ଚରିତ୍ର ପ୍ରତି ଦୃକ୍‌ପାତ କଲେ ଏହା ସ୍ପଷ୍ଟ ହୁଏ । ଚଢେୟାର ମୃତ୍ୟୁ ପରେ ତାହାର ସ୍ତ୍ରୀକୁ ଚଢେୟାର ଭାଇ ଗ୍ରହଣ କରିବା ଠିକ୍ ବୋଲି ଏଥିରେ ଦର୍ଶାଯାଇଛି । କିନ୍ତୁ ବିବାହ କ୍ରିୟା ଅନୁଷ୍ଠିତ ହେବା ପୂର୍ବରୁ ଚଢେୟା ଜୀବନ ଲାଭକରେ ଏବଂ ଭ୍ରାତୃବଧୂ ବିବାହର ଆବଶ୍ୟକତା ଆଉ ଦେଖାଦିଏ ନାହିଁ । ତଥାପି ଏପରି ପୁନଃବିବାହ ପ୍ରକ୍ରିୟା ଇଂରେଜୀ ଶାସନ ପୂର୍ବରୁ ଦଣ୍ଡନାଟ ମାଧ୍ୟମରେ ଦେଖାଯାଇ ସମାଜକୁ ଦିଗ୍‌ଦର୍ଶନ ଦେଇଥିବା ଉଲ୍ଲେଖଯୋଗ୍ୟ ।

ଅଷ୍ଟମତଃ, ଜଣେ ବ୍ୟକ୍ତି ଭଲ ହେବାକୁ ଚେଷ୍ଟା କଲେ ନିଶ୍ଚିତ ଭାବେ ତାର ସୁଫଳ ଲାଭ କରିବ । ବହୁ କୁଖ୍ୟାତ ଡକାୟତ ସନ୍ଥ ହୋଇଥିବା ପୁରାଣ ଓ ଇତିହାସରୁ ସୂଚିତ । ମଣିଷ ଆପଦ ବିପଦ ବେଳେ ଆନ୍ତରିକତାର ସହ ଭଗବାନଙ୍କୁ ପ୍ରାର୍ଥନା କଲେ ସେ ନିଶ୍ଚୟ ଭକ୍ତକୁ ସାହାଯ୍ୟ କରନ୍ତି । ନ୍ୟାୟ ଓ ସତ୍‌ପଥରେ ପରିଚାଳିତ ହେଲେ ଭଗବତ୍ କୃପା ଲାଭ ନିଶ୍ଚିତ । ଏ ସମ୍ପର୍କରେ ସମାଜକୁ ସଚେତନ କରାଇବା ଦଣ୍ଡନାଟର ଏକ ମହତ୍ତ୍ୱପୂର୍ଣ୍ଣ ଉଦ୍ଦେଶ୍ୟ ।

ନବମତଃ,ପୃଥିବୀର ପ୍ରାୟ ପ୍ରତ୍ୟେକ ଦେଶରେ ବିଭିନ୍ନ ଅନ୍ଧବିଶ୍ୱାସ ମଧ୍ୟରୁ ବିରାଡିକୁ ଏକ ଅଶୁଭ ଜୀବ ଭାବରେ ଗ୍ରହଣ କରାଯାଇଛି । କିନ୍ତୁ ଦଣ୍ଡନାଟ ଏହି ଅନ୍ଧବିଶ୍ୱାସ ବିରୁଦ୍ଧରେ ପ୍ରଚାର କରେ । କାରଣ ବିରାଡି ଭଗବାନଙ୍କର ଅନ୍ୟତମ ସୃଷ୍ଟି । ଏହି ଜୀବ ଅନ୍ୟମାନଙ୍କ ପାଇଁ ଅଶୁଭ ହେବା ଯୁକ୍ତି ସଙ୍ଗତ ହେଉନାହିଁ । ଦଣ୍ଡନାଟରେ 'ପତ୍ରଶଉରା କାହିଁକି ବିରାଡିଟାଏ ଧରିଥାଏ ବୋଲି ପାଟଭୋକ୍ତା ପ୍ରଶ୍ନର ଉତ୍ତର ଦେବାକୁ ଯାଇ କବି ଯୋଗୀ ମଳିକ 'ଅନାର୍ଯ୍ୟ ସଂହିତା'ରୁ ଉଦ୍ଧୃତ କରି ଲେଖିଛନ୍ତି-

ବିରାଜି ମହିମା, କି ଦେବି ଉପମା
ଅନୁକୂଳ କଲାବେଳେ
ଘଟେ ସର୍ବ ଶୁଭ ନ ହୁଏ ଅଶୁଭ
ତେଣୁ ବିରାଜେ ତା କରେ । '' (୪୨)

ଏହିପରି ଅନ୍ୟ ଏକ ଅନ୍ଧ ବିଶ୍ୱାସ ମଧ୍ୟରେ '୧୩' ସଂଖ୍ୟାର ଅଶୁଭ ଅନ୍ୟତମ । ସାଧାରଣତଃ ୧୩ ତାରିଖରେ ଶୁଭ/ମାଙ୍ଗଳିକ କାର୍ଯ୍ୟ ଆରମ୍ଭ କରନ୍ତି ନାହିଁ । କିମ୍ବା ୧୩ ସଂଖ୍ୟା ଥିବା କୌଣସି ପଦାର୍ଥକୁ ସ୍ପର୍ଶ କରନ୍ତି ନାହିଁ । ଏ ଦୃଷ୍ଟିରୁ ଦଣ୍ଡନାଟରେ ଅନ୍ୟପ୍ରକାରେ ୧୩ ସଂଖ୍ୟାକୁ ଅର୍ଥମୂଳକ ଭାବରେ ଗ୍ରହଣ କରାଯାଇଛି । ଏଥିରେ ମୁଖ୍ୟତଃ ୧୩ଜଣ ଭୋକ୍ତା ରହିବା ନିୟମ ରହିଛି । ୧୩ ଦିନ ଧରି ଦଣ୍ଡନାଟ ଅନୁଷ୍ଠିତ ହୁଏ । ଯେଉଁ ଦଣ୍ଡ/ଯଷ୍ଟିକୁ ପୂଜା କରାଯାଏ ସେଥିରେ ୧୩ ଗୋଟି ଗଣ୍ଠି (ପବ) ଥାଏ । ''ପୁଣି ଆମ ଓଡିଶାରେ ଅଚ୍ୟୁତାନନ୍ଦ ଦାସଙ୍କର ତରକିଥିବ୍ର ୧୩କୁ ପଦରେ ସେହି ୧୩ ଶବ୍ଦ ପାଉ '' (୪୩) ଶରୀରର ଯେଉଁ ୧୩ଗୋଟି ଅଂଶ ଅଛି ତାହାହେଲା ଶରୀରର ସପ୍ତ ଭୁବନ ବା ଅଂଶ + ପଞ୍ଚେନ୍ଦ୍ରିୟ ଏବଂ ମନ ବା ପ୍ରାଣ । ଏଥିରେ ମଧ ୧୩ର ବିଶେଷତ୍ୱ ରହିଅଛି । ଏଣୁ ଦଣ୍ଡନାଟରେ ନିୟମାନୁସାରେ ୧୩ ହେଉଛି ଶୁଭ ।

ପୁଣି ''ଦଣ୍ଡପୂଜା ବାସ୍ତବିକ ଗଣତାନ୍ତ୍ରିକ ପୂଜା । ଏପରି ଗଣତନ୍ତ୍ରର ନମୁନା ଏବଂ ଏପରି ସଙ୍ଗଠନର ନମୁନା ଏହି ଦଣ୍ଡପୂଜା ଭିତରେ ମିଳେ ଯେ ତାହା ଭାବିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । + + + ବ୍ରାହ୍ମଣର ଶ୍ରାବଣୀ, କ୍ଷତ୍ରିୟର ଦଶହରା, ବୈଶ୍ୟର ଦୀପାବଳୀ, ଆଉ ଶୁଦ୍ରର ହୋଲି ପର୍ବରେ ହିଁ ଅନ୍ୟାନ୍ୟ ତିନି ସମାଜର ଲୋକେ ମଧ ମିଶନ୍ତି । ସୁତରାଂ ହୋଲି ଓ ଦଣ୍ଡନାଟ ପ୍ରକୃତରେ ପୂର୍ଣ୍ଣ ଗଣତାନ୍ତ୍ରିକ । ଏଥିରେ କାହାକୁ ବାଦ୍ ଦିଆଯାଏ ନାହିଁ ।''(୪୪) ଶିବପୂଜା ଉଭୟ ସବର୍ଣ୍ଣ ଓ ଅସବର୍ଣ୍ଣ ସମ୍ପ୍ରଦାୟ ଦ୍ୱାରା ଅନୁଷ୍ଠିତ ହୁଏ । କିନ୍ତୁ ସମ୍ପୂର୍ଣ୍ଣ ଅଧିକାର ଥାଏ 'ମାଳି' ନାମକ ଏକ ଜାତିର । ତେଣୁ ଶିବ ମନ୍ଦିରରେ ମାଳୀମାନେ ପୂଜକ ନିଯୁକ୍ତି ପାଇଥାନ୍ତି । ଜାତି ପ୍ରଥାର ବିଲୋପ ସାଧନ କରି ଗଣତାନ୍ତ୍ରିକ ସମାଜ ପ୍ରତିଷ୍ଠା ପାଇଁ ଆନ୍ତରିକ ପ୍ରୟାସ ଏଥିରେ ଦେଖିବାକୁ ମିଳେ । ଏକ ସୁସ୍ଥ ସମାଜ ପ୍ରତିଷ୍ଠା ଦଣ୍ଡନାଟର ଅନ୍ୟତମ ଉଦ୍ଦେଶ୍ୟ ।

ସେହିପରି ଦଣ୍ଡନାଟ ଦଳ ବାଦ୍ୟ ବାଦନ କରି ଆଗମନ ସମୟରେ ଦୂରରୁ ଦେଖିଲେ ମନେ ହୁଏ ପାଇକମାନେ ଯେପରି ଯୁଦ୍ଧ ଯାତ୍ରା କରୁଛନ୍ତି । ଦଣ୍ଡବାଦ୍ୟ ଅନେକାଂଶରେ ଯୁଦ୍ଧ ବାଦ୍ୟ ସଙ୍ଗେ ସମାନ । ଯୁଦ୍ଧ ଯାତ୍ରା ସମୟରେ ଢୋଲ, ମହୁରୀ ପ୍ରଭୃତି ବାଦ୍ୟର ଆବଶ୍ୟକତା ଅନୁଭୂତ ହୁଏ । ଏହାର ତାଳ ହୃଦୟରେ ଶିହରଣ ଓ ବୀରଭାବ ଜାଗ୍ରତ କରାଏ । ଏଣୁ ଦଣ୍ଡନାଟ ପ୍ରାଚୀନ କଳିଙ୍ଗର ସାମରିକ ବିଭବର ଅନ୍ୟତମ ପ୍ରତୀକ । ଏହି ବୀର ଜାତିର ପରମ୍ପରାକୁ ଜାଗ୍ରତ ରଖିବା ପାଇଁ ଏହାର ଅବଦାନ ଅବଶ୍ୟ ସ୍ୱୀକାର୍ଯ୍ୟ ।

ମନୁଷ୍ୟ ସାଧାରଣତଃ ତିନିପ୍ରକାର ଦଣ୍ଡରେ ଦଣ୍ଡିତ, ଯଥା- ଆଧିଦୈବିକ, ଆଧ୍ୟାତ୍ମିକ ଓ ଆଧିଭୌତିକ । ଏହି ତିନି ଦଣ୍ଡରେ ଦଣ୍ଡିତ ବୋଲି ମନୁଷ୍ୟ ଯେତେବେଳେ ଅନୁଭବ କରେ, ସେତେବେଳେ ସେ ପରିତ୍ରାଣ ସକାଶେ ଚେଷ୍ଟା କରେ । ଏଥିପାଇଁ ଚୈତିକ ଏକାଗ୍ରତା ଆବଶ୍ୟକ । ''ଏହି ଏକାଗ୍ରତାକୁ ଦଣ୍ଡନାଟରେ 'ଏକବାର' ବୋଲି ଅଭିହିତ କରାଯାଇଛି । ତାପରେ ତେର ଦିନ ପର୍ଯ୍ୟନ୍ତ ଋଷିକୁମାର ବ୍ରତ ଅବଲମ୍ବନ ପୂର୍ବକ ଜଗତର ବିଚିତ୍ରତାକୁ ଚିହ୍ନେଇବା ପାଇଁ ମୟୂର ଚନ୍ଦ୍ରିକାକୁ ହସ୍ତରେ ଧାରଣ କରି ସେ ଭ୍ରମଣ କରେ । 'ଏକବାର' ଠାରୁ ଆରମ୍ଭ କରି ତେରଦିନ ଯୁକ୍ତ କଲେ ହେଲା ଚଉଦ ଦିନ । ଏହାର ଅର୍ଥ ହେଲା ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ମଧ୍ୟରେ 'ମୋର' ଓ 'ମୁଁ'ର ଅବସ୍ଥାନ କେଉଁଠି ଅନୁସନ୍ଧାନ କରିବା ।'' (୪୫)

ଦଣ୍ଡନାଟରେ କର୍ତ୍ତା ନିୟମ ଶୃଙ୍ଖଳାର ପ୍ରତୀକ । ଏହି ଏକତା ଓ ଶୃଙ୍ଖଳା ବ୍ୟକ୍ତି ଓ ଜାତିକୁ ଅଗ୍ରସର କରାଇବାରେ ସାହାଯ୍ୟ କରେ ।

ଯେଉଁ ସବୁ ଲକ୍ଷ୍ୟ ବା ଉଦ୍ଦେଶ୍ୟ ସିଦ୍ଧି ପାଇଁ ଦଣ୍ଡନାଟର ପରିକଳ୍ପନା କରାଯାଇଛି, ତାହାର ଅନୁରୂପ ଉପାଦାନ ଦ୍ୱାରା ହିଁ ଏହି ନାଟ ସମ୍ପାଦିତ । ଏହି ଉପାଦାନ ଗୁଡିକୁ ଏଠାରେ ଉପସ୍ଥାପନା କରିବା ଅସଙ୍ଗତ ହେବ ନାହିଁ ।

***

## ଦଣ୍ଡନାଟ : ପୂର୍ବପ୍ରସ୍ତୁତି

ନିୟମାନୁଯାୟୀ ଦଣ୍ଡପୂଜା ୨୧ଦିନ ହେବା କଥା । କେତେକ ସ୍ଥାନରେ ଏହା ୧୩ଦିନ ମଧ୍ୟରେ ସୀମିତ ରହେ । ପରମ୍ପରାରେ ୧୩ର ବିଶେଷତ୍ୱ ଥିବା ଯୋଗୁଁ ୧୩ଦିନ ଧରି ଅନୁଷ୍ଠିତ ହୁଏ । ଅସୁବିଧାଜନକ ପରିସ୍ଥିତିରେ ୭/୫/୩/୨ ଦିନରେ ଏହାକୁ ସମାପନ କରାଯାଏ । ଚୈତ୍ର ପୂର୍ଣ୍ଣମୀଠାରୁ ବିଷୁବ ସଂକ୍ରାନ୍ତି ଯାଏଁ ଦଣ୍ଡ ଉତ୍ସବ କରାଯିବା ବିଧି । ବର୍ତ୍ତମାନ ଏହାର ବହୁ ସଙ୍କୋଚନ ଘଟିଛି । ଚୈତ୍ର ଓ ବୈଶାଖ ମାସ ଶିବ ଉପାସନା ପାଇଁ ପ୍ରକୃଷ୍ଟ ସମୟ । ମୀନମାସ (March-April)ର ଷଷ୍ଠ ଦିବସଠାରୁ ଶିବଙ୍କ ଉତ୍ସବ ଆରମ୍ଭ ହୋଇଥାଏ । ଏହି ଦିନଠାରୁ ୪ଦିନ ପର୍ଯ୍ୟନ୍ତ ସଙ୍କଳ୍ପ କରାଯାଏ । ଏହାପରେ ଆଠଦିନ ପର୍ଯ୍ୟନ୍ତ ଝାମୁଯାତ୍ରା ଓ ଅବଶିଷ୍ଟ ୧୩ଦିନ ଦଣ୍ଡନାଟ ପାଇଁ ଉଦ୍ଦିଷ୍ଟ ।

ଯେଉଁ ଦଳ ଆର୍ଥିକ ଓ ଜନପ୍ରିୟତା ଦୃଷ୍ଟିରୁ ଉନ୍ନତ ସେଠାରେ ଏହା ୨୧ଦିନ ହୁଏ । ଢେଙ୍କାନାଳ ଜିଲାର ଅନେକ ସ୍ଥାନରେ ୨୧ଦିନ ଦଣ୍ଡୋତ୍ସବ ହେଉଥିବା ବେଳେ ଗଞ୍ଜାମ ଜିଲ୍ଲାରେ

ସମସ୍ତ ଦଣ୍ଡନାଟ ସଂକ୍ରାନ୍ତିର ୧୩ଦିନ ପୂର୍ବରୁ ହିଁ ଆରମ୍ଭ କରିଥାନ୍ତି । ପାରମ୍ଭ ଦିନ ଯଦି ମଙ୍ଗଳବାର/ ଗୁରୁବାର/ ଶନିବାର ପଡେ, ତେବେ ଦଣ୍ଡ ପୂଜା ପୂର୍ବଦିନ ଅନୁଷ୍ଠିତ ହୁଏ । ଅହିଂସା ଉପରେ ଗୁରୁତ୍ୱ ଦିଆ ଯାଉଥିବାରୁ ଉପରୋକ୍ତ ଦିବସମାନଙ୍କରେ ପୂଜାରମ୍ଭ ହୁଏ ନାହିଁ । ପରମ୍ପରାନୁସାରେ ଭୋକ୍ତାମାନେ ଚୈତ୍ରମାସ ଶୁକ୍ଳ ଅଷ୍ଟମୀ/ନବମୀ ଦିନରେ ଅର୍ଦ୍ଧ ରାତ୍ରରେ ଗ୍ରାମର ପୋଖରୀ ବା ନଦୀ କୂଳରେ ଏକତ୍ରିତ ହୋଇ ସ୍ନାନକରି ଉପବୀତ ଧାରଣ କରନ୍ତି । ୧୩ଜଣ ମୁଖ୍ୟ ଭୋକ୍ତାଙ୍କ ବ୍ୟତୀତ ଯେଉଁମାନଙ୍କର ମାନସିକ ଥାଏ ସେମାନେ ଏଥିରେ ଅଂଶ ଗ୍ରହଣ କରି ଉପବୀତ ଧାରଣ କରିଥାନ୍ତି । ଏମାନଙ୍କୁ ଉପ-ଭୋକ୍ତା କୁହାଯାଏ । ମୁଖ୍ୟ ୧୩ ଭୋକ୍ତା ପୂର୍ବ ଜନ୍ମରେ ଋଷି କୁମାର ଥିଲେ ଏବଂ ଅଭିଶାପ ପାଇ ନୀଚ କୁଳରେ ଜନ୍ମ ହେବା ଯୋଗୁଁ ସେଥିରୁ ଉଦ୍ଧାର ଲାଭ ସକାଶେ ଉପବୀତ ଧାରଣ କରି ଦଣ୍ଡ ବ୍ରତ ପାଳନ କରନ୍ତି ବୋଲି ବିଶ୍ୱାସ ରହି ଆସିଛି । ଆଉ କେତେଜଣ ସମୟ ଅଭାବରୁ ହେଉ ବା ବ୍ୟସ୍ତତା ଯୋଗୁଁ ହେଉ ଇଚ୍ଛାନୁଯାୟୀ ୧।୨।୩।୫ ଦିନ ପାଇଁ ଦଣ୍ଡବ୍ରତ ଆଚରଣ କରନ୍ତି । ଏଥିରେ ଅଂଶ ଗ୍ରହଣ କରିବା ମାତ୍ରେ ସମସ୍ତ ପ୍ରକାର ସାଂସାରିକ ଜଞ୍ଜାଳ ଏବଂ କାମନା ବାସନା ୧୩ଦିନ ପାଇଁ ପରିତ୍ୟାଗ କରିବାକୁ ବାଧ୍ୟ । ପ୍ରତ୍ୟେକ ଦଣ୍ଡ ଦଳର କାମନା ଘର ଶିବ ମନ୍ଦିର ନିକଟରେ ବା ଗ୍ରାମର ଶେଷ ଭାଗରେ ଅବସ୍ଥିତ । ଏହି କାମନା ଗୃହର ଦୈର୍ଘ୍ୟ ଓ ପ୍ରସ୍ଥ ୧୨ ହାତ । କେତେକ ସ୍ଥାନରେ ୧୩ ହାତ ବିଶିଷ୍ଟ । ଗୃହଟି ସାଧାରଣତଃ ଚତୁଃକୋଣ । ଏହି ଗୃହରେ ସମସ୍ତ ପ୍ରକାର ଦଣ୍ଡପୂଜା ସାମଗ୍ରୀ ରହିଥାଏ । ପୂଜା ଏହିଠାରୁ ଆରମ୍ଭ ହୁଏ । ଶିବାରାଧନା ପାଇଁ ଦଣ୍ଡ ଗ୍ରହଣ କରିବା ହେଉଛି ଏହାର ପ୍ରଧାନ ଉଦ୍ଦେଶ୍ୟ । ଏହି ଦଣ୍ଡ ପୂଜା ଷୋଡଶ ଉପଚାର ମଧ୍ୟରେ ହୁଏ । ଯଥା- ଆସନ, ପାଦ୍ୟ, ଅର୍ଘ୍ୟ, ଜଳ, ମଧୁପର୍କ, ଆଚମନ, ସ୍ନାନ, ବସ୍ତ୍ର, ଅଳଙ୍କାର, ଗନ୍ଧ, ପୁଷ୍ପ, ଧୂପ, ଦୀପ, ଅଞ୍ଜନ, ନୈବେଦ୍ୟ ଓ ତାମ୍ବୁଳ ।

ଏହା ହେଉଛି ନିଷ୍ଠା, ଭକ୍ତି, ଉପବାସ, ସାଧନା, ଗୀତ, ବାଦ୍ୟ, ନୃତ୍ୟ ପ୍ରଭୃତିର ଏକ ବିଚିତ୍ର ସମନ୍ୱୟ । ଯେଉଁ ବ୍ୟକ୍ତି ଏହି ଦଣ୍ଡବ୍ରତ ଆଚରଣ କରିବେ ତାଙ୍କୁ ଜାତିଭେଦ ମାନିବାକୁ ପଡିବ ନାହିଁ । ବିଶ୍ୱର ସମସ୍ତ ପ୍ରାଣୀଙ୍କୁ ସମ ଦୃଷ୍ଟିରେ ଦେଖିବାକୁ ପଡିବ ।

## ଦଣ୍ଡ

ଦଣ୍ଡ ଗଢିବାରେ କେତେକ ନିର୍ଦ୍ଦିଷ୍ଟ ନିୟମ ଅଛି । ପ୍ରଥମେ ଗଙ୍ଗାମାଟି, ସମୁଦ୍ରକୂଳ, ତୁଳସୀମୂଳ, ଶିବପାଦୁକ କୁଣ୍ଡ ଓ କୁମ୍ଭାର ମାଟି ମିଶ୍ରଣ କରି ଶିବ ମନ୍ଦିରସ୍ଥ ପାଦୁକ କୁଣ୍ଡର ଡାହାଣ ପାର୍ଶ୍ୱରେ ରଖାଯାଏ । ତାପରେ ଗଙ୍ଗା ଓ ସମୁଦ୍ରଜଳ, ଈଶ୍ୱରଙ୍କ ପାଦୋଦକ ଏବଂ ଅକାତ ବନ୍ଧର ଜଳରେ ପଞ୍ଚାମୃତ ମିଶ୍ରଣ କରି ଶିବପାଦୁକ କୁଣ୍ଡର ବାମ ପାର୍ଶ୍ୱରେ ସ୍ଥାପିତ ହୁଏ । ମଧ୍ୟ ରାତ୍ରରେ ଉଲଗ୍ନ କୁମ୍ଭାର ନବଦମ୍ପତି ସେଠାକୁ ଯାଇ ସେହି ମାଟି ଓ ଜଳ ଆଣନ୍ତି । ଶଶ୍ମାନ ପଥରେ ଥିବା ତୁଳସୀ ବୃକ୍ଷର କାଠ, ବେଲ, ଖଇର, ନିମ ଓ ପଣସ କାଠ (ପଞ୍ଚକାଠ) ସେହି ଦମ୍ପତି ପୂର୍ବରୁ

ଯୋଗାଡ କରିଥାନ୍ତି । ସମସ୍ତ ସାମଗ୍ରୀ ଯୋଗାଡ ହେଲାପରେ ଶୁଭ ଦିନ, ବାର ଓ ମୁହୂର୍ତ୍ତ ଦେଖି କୁମ୍ଭାର ପରିବାର ଉଲଗ୍ନ ଅବସ୍ଥାରେ ଦଣ୍ଡ ଘଡିକୁ ପଞ୍ଚ କାଷ୍ଠ ସାହାଯ୍ୟରେ ପୋଡି ଦିଅନ୍ତି ।

ଆଜିକାଲି ଅବଶ୍ୟ ପରିବେଶ ଓ ପରିସ୍ଥିତି ଦୃଷ୍ଟିରୁ ଏପରି କରିବା ଅନେକ କ୍ଷେତ୍ରରେ ସମ୍ଭବ ହେଉନାହିଁ । ଜନ ଏବଂ ଗୃହ ସଂଖ୍ୟା ବୃଦ୍ଧି ହେବା ଯୋଗୁଁ ନିର୍ଜ୍ଜନ ସ୍ଥାନ ହ୍ରାସ ପାଉଛି । ତେଣୁ ପୂର୍ବ ପ୍ରଚଳିତ ଏହି ପରମ୍ପରାରେ କିଛି ପରିବର୍ତ୍ତନ କରାଯାଇ କୌଣସି ବୃକ୍ଷ ବଲ୍କଳ ବା ଖଜୁରୀ ପତ୍ରର ପଟି ପରିଧାନ କରି ପାରମ୍ପରିକ ଦଣ୍ଡ ଗଠନ କରାଯାଉଛି । ଏପରି ଅବସ୍ଥାକୁ ପଞ୍ଚ ଲଙ୍ଗଳା ଦଣ୍ଡ କୁହାଯାଏ । ଯଥା- (୧ ) ନବ ବିବାହିତ କୁମ୍ଭାରଦମ୍ପତି ମଧ ରାତ୍ରରେ ଉଲଗ୍ନ ଅବସ୍ଥାରେ ମାଟି ଆଣିବା,(୨) ଜଳ ଆଣିବା, (୩) ଦାରୁ ଆଣିବା, (୪) ଦଣ୍ଡ ଗଠନ ଓ (୫) ଦଣ୍ଡ ପୋଡିବା । କେତେକସ୍ଥାନରେ ଏହାକୁ ତିନିପ୍ରକାର ଲଙ୍ଗଳା ଦଣ୍ଡ ନାମରେ ଅଭିହିତ କରିଥାନ୍ତି । ତାହାହେଲା- ଉଲଗ୍ନ ଅବସ୍ଥାରେ(୧) ମୃତ୍ତିକା, ଜଳ ଓ ଦାରୁ ସଂଗ୍ରହ (୨) ଦଣ୍ଡ ଗଠନ ଏବଂ (୩) ଦଣ୍ଡ ପୋଡିବା ।

ଏହାପରେ ଶୁଭ ମୁହୂର୍ତ୍ତ ଦେଖି ଦଣ୍ଡୁଆମାନେ ଢୋଲ, ମହୁରୀ, କାହାଳୀ ଓ ଝାଞ୍ଜ ବଜାଇ ଶିବସ୍ତୁତି ଗାନ କରି କରି କୁମ୍ଭାର ଦ୍ୱାରରେ ଉପସ୍ଥିତ ହୁଅନ୍ତି । ଏମାନେ ପହଞ୍ଚିବା ପୂର୍ବରୁ କୁମ୍ଭାର ଦମ୍ପତି ଘର ଦ୍ୱାର ଲିପାପୋଛା କରି ଚୂତ ପତ୍ର ତଥା ବିଭିନ୍ନ ପୁଷ୍ପ,ଫଳରେ ଗୃହକୁ ସଜାଇ, ଦାଣ୍ଡରେ ତେର ଆଞ୍ଜୁଳି ଧାନ ରଖି ତାହା ଉପରେ ଗୋଟାଏ ଧଳା ଲୁଗା ସ୍ଥାପନ କରିଥାଏ । ଏହା ଉପରେ ନୂତନ ଦଣ୍ଡ, ହାଣ୍ଡି, ଚୁଖା, କଳସୀ, ସରା ପ୍ରଭୃତି ମାଟିର ବସ୍ତୁ ଅବସ୍ଥାପିତ ହୁଏ । ସେଠାରେ ଯଥାବିଧି ପୂଜା ସମାପନ କରି କୁମ୍ଭାର ଦମ୍ପତିଙ୍କୁ ନୂତନ ବସ୍ତ୍ର ଓ ମେଲାଣି ପ୍ରଦାନ କରି ସନ୍ତୁଷ୍ଟ କରାଇ ଉକ୍ତ ସାମଗ୍ରୀ ସମୂହକୁ ପାଟ ଭୋକ୍ତା ଗୋଟାଏ ନୂତନବାଉଁଶ ଝୁଡିରେ କାମନା ଗୃହକୁ ଆଣି ମେରୁ ମଣ୍ଡପରେ ରଖନ୍ତି । କାମନା ଦଣ୍ଡ ହେଉଛି ତେର ଗଣ୍ଠି ବିଶିଷ୍ଟ ସାଢେ ଛଅହାତ ଲମ୍ବର ଗୋଟିଏ ବାଉଁଶ ଯଷ୍ଟି । ଏହାର ଅଗ୍ରଭାଗରେ ଦ୍ୱାଦଶ ଅଙ୍ଗୁଳ ବିଶିଷ୍ଟ ଏକ ନୂତନ ବସ୍ତ୍ର ବନ୍ଧନ କରାଯାଏ । ଏହା ଶିବଙ୍କ ଅନ୍ୟତମ ପ୍ରତୀକ ରୂପେ ଗୃହୀତ ।

ସେହିପରି ଗୌରୀଦଣ୍ଡ ବା ଗୌରୀବେତ ଗୌରୀଙ୍କ ଶରୀରରୁ ଉତ୍ପତ୍ତି ହୋଇଥିବା ଭୋକ୍ତାମାନେ ବିଶ୍ୱାସ କରନ୍ତି । ଦଣ୍ଡଯାତ୍ରା ସମୟରେ ଏହି ଦଣ୍ଡ ବ୍ୟବହୃତ ହୁଏ । ବିଶ୍ୱାସ କରାଯାଏ, ବୀଣାଦଣ୍ଡ ବ୍ରହ୍ମାଙ୍କ ଗାୟତ୍ରୀ ଯଜ୍ଞରୁ ଉତ୍ପନ୍ନ ବାଉଁଶ ନିର୍ମିତ ୩୮ ଅଙ୍ଗୁଳି ବିଶିଷ୍ଟ । ସେଥିରେ ୪ଗୋଟି ଘଣ୍ଟି ଏବଂ ୩୨ଗୋଟି ପାଗୁଡି (ଛୋଟ ଘୁଙ୍ଗୁର ) ସଂଲଗ୍ନ ଥାଏ । ଦଣ୍ଡ ଗୁଆ ଶିବ ଓ ପାର୍ବତୀଙ୍କ ନିଦର୍ଶନ । ରୁଦ୍ରକାଳୀଦଣ୍ଡ ଓଷା କରିବା ପାଇଁ ଏହା ପ୍ରତ୍ୟେକ ଦଣ୍ଡ ଭକ୍ତକୁ ମିଳେ ।

କାମନା ଦଣ୍ଡର ଦେବଦେବୀ ହେଲେ ଗଣେଶ, ନାରାୟଣ, ରୁଦ୍ର, କାଳୀ ଓ ସୂର୍ଯ୍ୟ । କିନ୍ତୁ ଇଷ୍ଟ ହେଲେ ରୁଦ୍ରକାଳୀ ।

ସମସ୍ତ ଦଣ୍ଡନାଟ ସଂକ୍ରାନ୍ତିର ୧୩ଦିନ ପୂର୍ବରୁ ହିଁ ଆରମ୍ଭ କରିଥାନ୍ତି । ପାରମ୍ଭ ଦିନ ଯଦି ମଙ୍ଗଳବାର/ ଗୁରୁବାର/ ଶନିବାର ପଡେ, ତେବେ ଦଣ୍ଡ ପୂଜା ପୂର୍ବଦିନ ଅନୁଷ୍ଠିତ ହୁଏ । ଅହିଂସା ଉପରେ ଗୁରୁତ୍ୱ ଦିଆ ଯାଉଥିବାରୁ ଉପରୋକ୍ତ ଦିବସମାନଙ୍କରେ ପୂଜାରମ୍ଭ ହୁଏ ନାହିଁ । ପରମ୍ପରାନୁସାରେ ଭୋକ୍ତାମାନେ ଚୈତ୍ରମାସ ଶୁକ୍ଳ ଅଷ୍ଟମୀ/ନବମୀ ଦିନରେ ଅର୍ଦ୍ଧ ରାତ୍ରରେ ଗ୍ରାମର ପୋଖରୀ ବା ନଦୀ କୂଳରେ ଏକତ୍ରିତ ହୋଇ ସ୍ନାନକରି ଉପବୀତ ଧାରଣ କରନ୍ତି । ୧୩ଜଣ ମୁଖ୍ୟ ଭୋକ୍ତାଙ୍କ ବ୍ୟତୀତ ଯେଉଁମାନଙ୍କର ମାନସିକ ଥାଏ ସେମାନେ ଏଥିରେ ଅଂଶ ଗ୍ରହଣ କରି ଉପବୀତ ଧାରଣ କରିଥାନ୍ତି । ଏମାନଙ୍କୁ ଉପ-ଭୋକ୍ତା କୁହାଯାଏ । ମୁଖ୍ୟ ୧୩ ଭୋକ୍ତା ପୂର୍ବ ଜନ୍ମରେ ଋଷି କୁମାର ଥିଲେ ଏବଂ ଅଭିଶାପ ପାଇ ନୀଚ କୁଳରେ ଜନ୍ମ ହେବା ଯୋଗୁଁ ସେଥିରୁ ଉଦ୍ଧାର ଲାଭ ସକାଶେ ଉପବୀତ ଧାରଣ କରି ଦଣ୍ଡ ବ୍ରତ ପାଳନ କରନ୍ତି ବୋଲି ବିଶ୍ୱାସ ରହି ଆସିଛି । ଆଉ କେତେଜଣ ସମୟ ଅଭାବରୁ ହେଉ ବା ବ୍ୟସ୍ତତା ଯୋଗୁଁ ହେଉ ଇଚ୍ଛାନୁଯାୟୀ ୧।୨।୩।୫ ଦିନ ପାଇଁ ଦଣ୍ଡବ୍ରତ ଆଚରଣ କରନ୍ତି । ଏଥିରେ ଅଂଶ ଗ୍ରହଣ କରିବା ମାତ୍ରେ ସମସ୍ତ ପ୍ରକାର ସାଂସାରିକ ଜଞ୍ଜାଳ ଏବଂ କାମନା ବାସନା ୧୩ଦିନ ପାଇଁ ପରିତ୍ୟାଗ କରିବାକୁ ବାଧ୍ୟ । ପ୍ରତ୍ୟେକ ଦଣ୍ଡ ଦଳର କାମନା ଘର ଶିବ ମନ୍ଦିର ନିକଟରେ ବା ଗ୍ରାମର ଶେଷ ଭାଗରେ ଅବସ୍ଥିତ । ଏହି କାମନା ଗୃହର ଦୈର୍ଘ୍ୟ ଓ ପ୍ରସ୍ଥ ୧୨ ହାତ । କେତେକ ସ୍ଥାନରେ ୧୩ ହାତ ବିଶିଷ୍ଟ । ଗୃହଟି ସାଧାରଣତଃ ଚତୁଃକୋଣ । ଏହି ଗୃହରେ ସମସ୍ତ ପ୍ରକାର ଦଣ୍ଡପୂଜା ସାମଗ୍ରୀ ରହିଥାଏ । ପୂଜା ଏହିଠାରୁ ଆରମ୍ଭ ହୁଏ । ଶିବାରାଧନା ପାଇଁ ଦଣ୍ଡ ଗ୍ରହଣ କରିବା ହେଉଛି ଏହାର ପ୍ରଧାନ ଉଦ୍ଦେଶ୍ୟ । ଏହି ଦଣ୍ଡ ପୂଜା ଷୋଡଶ ଉପଚାର ମଧ୍ୟରେ ହୁଏ । ଯଥା- ଆସନ, ପାଦ୍ୟ, ଅର୍ଘ୍ୟ, ଜଳ, ମଧୁପର୍କ, ଆଚମନ, ସ୍ନାନ, ବସ୍ତ୍ର, ଅଳଙ୍କାର, ଗନ୍ଧ, ପୁଷ୍ପ, ଧୂପ, ଦୀପ, ଅଞ୍ଜନ, ନୈବେଦ୍ୟ ଓ ତାମ୍ବୁଳ ।

ଏହା ହେଉଛି ନିଷ୍ଠା,ଭକ୍ତି, ଉପବାସ, ସାଧନା,ଗୀତ, ବାଦ୍ୟ, ନୃତ୍ୟ ପ୍ରଭୃତିର ଏକ ବିଚିତ୍ର ସମନ୍ୱୟ । ଯେଉଁ ବ୍ୟକ୍ତି ଏହି ଦଣ୍ଡବ୍ରତ ଆଚରଣ କରିବେ ତାକୁ ଜାତିଭେଦ ମାନିବାକୁ ପଡିବ ନାହିଁ । ବିଶ୍ୱର ସମସ୍ତ ପ୍ରାଣୀଙ୍କୁ ସମ ଦୃଷ୍ଟିରେ ଦେଖିବାକୁ ପଡିବ ।

## ଦଣ୍ଡ

ଦଣ୍ଡ ଗଢିବାରେ କେତେକ ନିର୍ଦ୍ଦିଷ୍ଟ ନିୟମ ଅଛି । ପ୍ରଥମେ ଗଙ୍ଗାମାଟି, ସମୁଦ୍ରକୂଳ, ତୁଳସୀମୂଳ, ଶିବପାଦୁକ କୁଣ୍ଡ ଓ କୁମ୍ଭାର ମାଟି ମିଶ୍ରଣ କରି ଶିବ ମନ୍ଦିରସ୍ଥ ପାଦୁକ କୁଣ୍ଡର ଡାହାଣ ପାର୍ଶ୍ୱରେ ରଖାଯାଏ । ତାପରେ ଗଙ୍ଗା ଓ ସମୁଦ୍ରଜଳ, ଈଶ୍ୱରଙ୍କ ପାଦୋଦକ ଏବଂ ଅକାତ ବନ୍ଧର ଜଳରେ ପଞ୍ଚାମୃତ ମିଶ୍ରଣ କରି ଶିବପାଦୁକ କୁଣ୍ଡର ବାମ ପାର୍ଶ୍ୱରେ ସ୍ଥାପିତ ହୁଏ । ମଧ୍ୟ ରାତ୍ରରେ ଉଲଗ୍ନ କୁମ୍ଭାର ନବଦମ୍ପତି ସେଠାକୁ ଯାଇ ସେହି ମାଟି ଓ ଜଳ ଆଣନ୍ତି । ଶଶ୍ମାନ ପଥରେ ଥିବା ତୁଳସୀ ବୃକ୍ଷର କାଠ, ବେଲ, ଖଇର, ନିମ ଓ ପଣସ କାଠ (ପଞ୍ଚକାଠ) ସେହି ଦମ୍ପତି ପୂର୍ବରୁ

ଯୋଗାଡ କରିଥାନ୍ତି । ସମସ୍ତ ସାମଗ୍ରୀ ଯୋଗାଡ ହେଲାପରେ ଶୁଭ ଦିନ, ବାର ଓ ମୁହୂର୍ତ୍ତ ଦେଖି କୁମ୍ଭାର ପରିବାର ଉଲଗ୍ନ ଅବସ୍ଥାରେ ଦଣ୍ଡ ଘଡିକୁ ପଞ୍ଚ କାଷ୍ଠ ସାହାଯ୍ୟରେ ପୋଡି ଦିଅନ୍ତି ।

ଆଜିକାଲି ଅବଶ୍ୟ ପରିବେଶ ଓ ପରିସ୍ଥିତି ଦୃଷ୍ଟିରୁ ଏପରି କରିବା ଅନେକ କ୍ଷେତ୍ରରେ ସମ୍ଭବ ହେଉନାହିଁ । ଜନ ଏବଂ ଗୃହ ସଂଖ୍ୟା ବୃଦ୍ଧି ହେବା ଯୋଗୁଁ ନିକାଞ୍ଚନ ସ୍ଥାନ ହ୍ରାସ ପାଉଛି । ତେଣୁ ପୂର୍ବ ପ୍ରଚଳିତ ଏହି ପରମ୍ପରାରେ କିଛି ପରିବର୍ତ୍ତନ କରାଯାଇ କୌଣସି ବୃକ୍ଷ ବକ୍‌କଳ ବା ଖଜୁରୀ ପତ୍ରର ପଟି ପରିଧାନ କରି ପାରମ୍ପରିକ ଦଣ୍ଡ ଗଠନ କରାଯାଉଛି । ଏପରି ଅବସ୍ଥାକୁ ପଞ୍ଚ ଲଙ୍ଗଳା ଦଣ୍ଡ କୁହାଯାଏ । ଯଥା- (୧) ନବ ବିବାହିତ କୁମ୍ଭାରଦମ୍ପତି ମଧ୍ୟ ରାତ୍ରରେ ଉଲଗ୍ନ ଅବସ୍ଥାରେ ମାଟି ଆଣିବା,(୨) ଜଳ ଆଣିବା, (୩) ଦାରୁ ଆଣିବା, (୪) ଦଣ୍ଡ ଗଠନ ଓ (୫) ଦଣ୍ଡ ପୋଡିବା । କେତେକସ୍ଥାନରେ ଏହାକୁ ତିନିପ୍ରକାର ଲଙ୍ଗଳା ଦଣ୍ଡ ନାମରେ ଅଭିହିତ କରିଥାନ୍ତି । ତାହାହେଲା- ଉଲଗ୍ନ ଅବସ୍ଥାରେ (୧) ମୃତ୍ତିକା, ଜଳ ଓ ଦାରୁ ସଂଗ୍ରହ (୨) ଦଣ୍ଡ ଗଠନ ଏବଂ (୩) ଦଣ୍ଡ ପୋଡିବା ।

ଏହାପରେ ଶୁଭ ମୁହୂର୍ତ୍ତ ଦେଖି ଦଣ୍ଡୁଆମାନେ ଢୋଲ, ମହୁରୀ, କାହାଳୀ ଓ ଝାଞ୍ଜ ବଜାଇ ଶିବସ୍ତୁତି ଗାନ କରି କରି କୁମ୍ଭାର ଦ୍ୱାରରେ ଉପସ୍ଥିତ ହୁଅନ୍ତି । ଏମାନେ ପହଞ୍ଚିବା ପୂର୍ବରୁ କୁମ୍ଭାର ଦମ୍ପତି ଘର ଦ୍ୱାର ଲିପାପୋଛା କରି ଚୂତ ପତ୍ର ତଥା ବିଭିନ୍ନ ପୁଷ୍ପ,ଫଳରେ ଗୃହକୁ ସଜାଇ, ଦାଣ୍ଡରେ ତେର ଅାଞ୍ଜୁଳି ଧାନ ରଖି ତାହା ଉପରେ ଗୋଟାଏ ଧଳା ଲୁଗା ସ୍ଥାପନ କରିଥାଏ । ଏହା ଉପରେ ନୂତନ ଦଣ୍ଡ, ହାଣ୍ଡି, ଲୁଖା, କଳସୀ, ସରା ପ୍ରଭୃତି ମାଟିର ବସ୍ତୁ ଅବସ୍ଥାପିତ ହୁଏ । ସେଠାରେ ଯଥାବିଧି ପୂଜା ସମାପନ କରି କୁମ୍ଭାର ଦମ୍ପତିଙ୍କୁ ନୂତନ ବସ୍ତ୍ର ଓ ମେଲାଣି ପ୍ରଦାନ କରି ସନ୍ତୁଷ୍ଟ କରାଇ ଉକ୍ତ ସାମଗ୍ରୀ ସମୂହକୁ ପାଟ ଭୋକ୍ତା ଗୋଟାଏ ନୂତନ ବାଉଁଶ ଝୁଡିରେ କାମନା ଗୃହକୁ ଆଣି ମେରୁ ମଣ୍ଡପରେ ରଖନ୍ତି । କାମନା ଦଣ୍ଡ ହେଉଛି ତେର ଗଣ୍ଠି ବିଶିଷ୍ଟ ସାଢେ ଛଅହାତ ଲମ୍ବର ଗୋଟିଏ ବାଉଁଶ ଯଷ୍ଟି । ଏହାର ଅଗ୍ରଭାଗରେ ଦ୍ୱାଦଶ ଅଙ୍ଗୁଳ ବିଶିଷ୍ଟ ଏକ ନୂତନ ବସ୍ତ୍ର ବନ୍ଧନ କରାଯାଏ । ଏହା ଶିବଙ୍କ ଅନ୍ୟତମ ପ୍ରତୀକ ରୂପେ ଗୃହୀତ ।

ସେହିପରି ଗୌରୀଦଣ୍ଡ ବା ଗୌରୀବେତ ଗୌରୀଙ୍କ ଶରୀରରୁ ଉତ୍ପତ୍ତି ହୋଇଥିବା ଭୋକ୍ତାମାନେ ବିଶ୍ୱାସ କରନ୍ତି । ଦଣ୍ଡଯାତ୍ରା ସମୟରେ ଏହି ଦଣ୍ଡ ବ୍ୟବହୃତ ହୁଏ । ବିଶ୍ୱାସ କରାଯାଏ, ବୀଣାଦଣ୍ଡ ବ୍ରହ୍ମାଙ୍କ ଗାୟତ୍ରୀ ଯଜ୍ଞରୁ ଉତ୍ପନ୍ନ ବାଉଁଶ ନିର୍ମିତ ୩୮ ଅଙ୍ଗୁଳି ବିଶିଷ୍ଟ । ସେଥିରେ ୪ଗୋଟି ଘଣ୍ଟି ଏବଂ ୩୨ଗୋଟି ପାଗୁଡି (ଛୋଟ ଘୁଙ୍ଗୁର ) ସଂଲଗ୍ନ ଥାଏ । ଦଣ୍ଡ ଗୁଆ ଶିବ ଓ ପାର୍ବତୀଙ୍କ ନିଦର୍ଶନ । ରୁଦ୍ରକାଳୀଦଣ୍ଡ ଓଷା କରିବା ପାଇଁ ଏହା ପ୍ରତ୍ୟେକ ଦଣ୍ଡ ଭକ୍ତକୁ ମିଳେ ।

କାମନା ଦଣ୍ଡର ଦେବଦେବୀ ହେଲେ ଗଣେଶ, ନାରାୟଣ, ରୁଦ୍ର, କାଳୀ ଓ ସୂର୍ଯ୍ୟ । କିନ୍ତୁ ଇଷ୍ଟ ହେଲେ ରୁଦ୍ରକାଳୀ ।

## କାମନାଗୃହ

କାମନାଗୃହର ସୀମା ୧୨' x ୧୨'ହାତ ଏବଂ କେତେକ ସ୍ଥାନରେ ୧୩' x ୧୩ ହେବା କଥା ପୂର୍ବରୁ କୁହାଯାଇଛି । ଏପରି ଗୃହ ପ୍ରତ୍ୟେକ ଦଳର ସ୍ୱତନ୍ତ୍ର ଭାବରେ ଥାଏ । ଏହି ଗୃହ ସମ୍ପର୍କୀୟ ପାରମ୍ପରିକ ପ୍ରଥା ସମ୍ପ୍ରତି ଲୁପ୍ତ । ପ୍ରକୃତରେ ଏହା ତିନି କୋଣିଆ ବିଶିଷ୍ଟ (୧୩ x ୧୬ ହାତ) ହେବା ଉଚିତ । ଶିବ ମନ୍ଦିର ନିକଟରେ ସ୍ଥାନାଭାବ ହେଲେ ଗ୍ରାମର ଶେଷ ଭାଗରେ ଏହାର ନିର୍ମାଣ କରାଯାଇପାରେ । କାମନାଗୃହ ୧୩ ଗୋଟି ବାଉଁଶ, ୧୩ ଗୋଟି ଖୁଣ୍ଟ/ ଖୁଣ୍ଟ ସାହାଯ୍ୟରେ ନିର୍ମିତ ହୋଇ ୧୩ ହାତ ଉଚ୍ଚ ହେବ । ଏହି ଗୃହକୁ ୧୩ ଜଣ ସଧବା ନାରୀ ଲିପାପୋଛା କରିବେ । କାମନା ଗୃହ ଅଭ୍ୟନ୍ତରସ୍ଥ ପଶ୍ଚିମରେ ଶକ୍ତିଦଣ୍ଡ ଏବଂ ପୂର୍ବରେ ଶିବଦଣ୍ଡ ସ୍ଥାପିତ ହୁଏ ।

ଦଣ୍ଡବ୍ରତର ପ୍ରାରମ୍ଭ ଓ ଅନ୍ତିମ ଦିନରେ ହୋମ କାର୍ଯ୍ୟ ହୁଏ । ପ୍ରଥମ ଦିନ ଦଣ୍ଡ ପ୍ରଭା, ଗୌରୀବେତ, ନାଗ, ପାଶ, ଗୁଆ ଓ ଢୋଲକୁ ହୋମ ସାହାଯ୍ୟରେ ଶୁଦ୍ଧ କରାଯାଏ । ଭୋକ୍ତାଙ୍କର ଉପବୀତ/ପଇତା ଏତେବେଳେ ପୁନଃ ଅଭିମନ୍ତ୍ରିତ ହୁଏ । ଦଣ୍ଡଭୋକ୍ତାମାନେ ନାନାଗ୍ରାମ ଓ ସହର ଭ୍ରମଣ କରି ଆସିଥିବା ଯୋଗୁଁ ବ୍ରତ ଶେଷରେ ହରଗୌରୀଙ୍କ ସମସ୍ତ ଦଣ୍ଡ ନିଶାଣୀ ପୁନର୍ବାର ହୋମ ଦ୍ୱାରା ଶୁଦ୍ଧ କରାଇ ମନ୍ଦିରରେ ସ୍ଥାପିତ କରନ୍ତି ।

ଦଣ୍ଡବ୍ରତ ପାଇଁ ପ୍ରଭା, ନାଗ, ପାଶ, ଦଣ୍ଡ, ଗୌରୀବେତ, ମୟୁର ଚନ୍ଦ୍ରିକା ଗୁଚ୍ଛ/ ମୁଠି, ଚମାବର,ଗୁଆ,କଷାୟ ବସ୍ତ୍ର, ଢୋଲ, ଝାଞ୍ଜ,ମହୁରୀ,କାହାଳୀ,ତ୍ରିକୋଣୀ ପତାକା ଓ ବେତ ପ୍ରଭୃତି ଏକାନ୍ତ ଆବଶ୍ୟକ ।

## କାମନାଘଟ

ଦଣ୍ଡନାଟରେ ପ୍ରଥମେ ଯେଉଁ ଜଳପୂର୍ଣ୍ଣ ମାଠିଆକୁ ପୂଜା କରାଯାଏ, ତାହା ହେଉଛି କାମନା ଘଟ । ଦଣ୍ଡବ୍ରତ ଅନୁଷ୍ଠିତ ହେବା ପୂର୍ବରୁ ଜଣେ ନିମ୍ନ ଶ୍ରେଣୀ ବ୍ରାହ୍ମଣ ଦ୍ୱାରା ପାଣି ତୋଳାଯାଏ । ଶେଷଦିନ ଏହି ଘଟକୁ ପୂର୍ବୋକ୍ତ ଜଳାଶୟରେ ବିସର୍ଜିତ ହୁଏ । ହିନ୍ଦୁ ପରମ୍ପରାରେ ପୂଜା ଓ ଶୁଭ ଅବସରରେ ଜଳପୂର୍ଣ୍ଣ ମାଠିଆ ଶୁଭ ସଙ୍କେତ ବହନ କରେ ଏବଂ ଜଳପୂର୍ଣ୍ଣ ଘଟକୁ ଆମନ୍ତ୍ରିତ କରି ପୂଜା କରାଯିବା ହିନ୍ଦୁ ସଂସ୍କୃତିର ଏକ ବିଶେଷତ୍ୱ । ଏହା ବ୍ୟତୀତ ମାଟି ହାଣ୍ଡି ଦେହରେ ମୟୂର,ସର୍ପ, ହାତୀ,ସୂର୍ଯ୍ୟ ପ୍ରଭୃତି ଚିତ୍ରମାନ ଅଙ୍କନ କରି ଗୃହ ମଧ୍ୟସ୍ଥ ଚାଳରେ ଝୁଲେଇଥାନ୍ତି । କୃଷି କର୍ମ ସହ ଦଣ୍ଡନାଟର ଘନିଷ୍ଠ ସମ୍ପର୍କ ରହିଥିବା ଦୃଷ୍ଟିରୁ ଗ୍ରାମବାସୀମାନେ ଉତ୍ପାଦିତ ଫସଲକୁ ବୃହତ୍ ଘଟ/ ହାଣ୍ଡି ମଧ୍ୟରେ ପୁରାଇ ସାଇତି ରଖନ୍ତି । ଏହି ଫସଲ ପର୍ବ ପର୍ବାଣୀ ଦିନମାନଙ୍କରେ ବିନିଯୋଗ ହୁଏ ଏବଂ ବିଭିନ୍ନ ପିଠାପଣା ପ୍ରସ୍ତୁତ କରାଯାଇ ଦେବଦେବୀଙ୍କୁ ଉତ୍ସର୍ଗ କରାଯାଏ । ତେଣୁ ଘଟର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ ।

ଏହାର ଅନ୍ୟ ଏକ ତାତ୍ତ୍ୱିକ ଅର୍ଥ ହେଲା- ଘଟ ହେଉଛି ଶରୀର ଏବଂ ଜଳ ହେଉଛି ପ୍ରାଣ । ଦଣ୍ଡବ୍ରତାନୁଯାୟୀ କାଳୀଙ୍କ ଏହି ପ୍ରତୀକାତ୍ମକ ଘଟକୁ ପୂଜାକଲେ ସମସ୍ତ ବାଧାବିଘ୍ନକୁ ଅନାୟାସରେ ଅତିକ୍ରମ କରିହୁଏ ।

ମଣିଷର କାମନା ବା ମନୋବାଞ୍ଛା ପୂରଣ ପାଇଁ ଯେଉଁ ଦଣ୍ଡବ୍ରତ ଆଚରଣ କରାଯାଏ ତାହା ହିଁ କାମନା ଦଣ୍ଡ । ପ୍ରାୟ ପ୍ରତ୍ୟେକ ପୂଜାରେ ଘଟକୁ ପ୍ରାଧାନ୍ୟ ଦିଆଯାଉଥିବାରୁ ଦଣ୍ଡନାଟରେ ଏହା କାମନାଘଟ ନାମରେ ସ୍ୱୀକୃତ ।

ପାଣିତୋଳା ଦିନ ଢୋଲ,ମହୁରୀ,ଶଙ୍ଖ,ଘଣ୍ଟ ଇତ୍ୟାଦି ବାଦ୍ୟ ବାଦନ କରି କୁମ୍ଭାର ଘରୁ ଆସିଥିବା ନୂତନ ଘଟରେ ଜଳାଶୟରୁ ପାଣି ତୋଳା ଯାଏ । ପୂର୍ବୋକ୍ତ ବ୍ରାହ୍ମଣ ଘଟକୁ ଧରି ପାଣି ମଧ୍ୟରେ ବୁଡ ପକାଇ ଉଠିଆସେ । ଏହି ଘଟ ପୂର୍ଣ୍ଣଜଳ ଉପରେ କଦଳୀ ଭଣ୍ଡା ଫୁଲ ନୁଆଁଇ ଅର୍କ ପତ୍ର ଏବଂ ଅନ୍ୟାନ୍ୟ କିସମର ଫୁଲ ଦିଆଯାଏ । କେତେକ ସ୍ଥଳରେ କାମନା ଘଟ ଉଠିବା ସଙ୍ଗେ ସଙ୍ଗେ ଦଣ୍ଡୁଆମାନେ ଅମନ୍ତ ଉପବିତ ଧାରଣ କରନ୍ତି । ଏହି ଉପବିତ ଗଣ୍ଠି ବିହୀନ ତିନି ଖିଅ ବିଶିଷ୍ଟ । ଓଦା ଲୁଗା ପିନ୍ଧି ପ୍ରଥମେ ଘଟକୁ କୌଣସି ଏକ ବରଗଛ ମୂଳରେ କିଛି ସମୟ ରଖି ପୂଜା କରାଯାଏ । ପରେ ଶୋଭା-ଯାତ୍ରାରେ ଗ୍ରାମ ପରିକ୍ରମା କରି ଶିବ ମନ୍ଦିର ସମ୍ମୁଖରେ ବା କାମନାଗୃହରେ ଅବସ୍ଥାପିତ ହୁଏ । ହରପାର୍ବତୀ ପ୍ରତୀକ ଦୁଇଟି ବେତ ଘଟ ସମୀପରେ ରଖାଯାଏ । ଗୃହ ମଧ୍ୟସ୍ଥ ଗୋଟିଏ କୁଣ୍ଡରେ ହୋମାଗ୍ନି ଜଳି ଉଠେ । ଏଥିରୁ ପାଟଭୋକ୍ତା ଦୀପ ଜଳାନ୍ତି । ଏହା କଲାବେଳେ ଅନ୍ୟ ଭୋକ୍ତାମାନେ ସମବେତ କଣ୍ଠରେ 'ଋଷିପୁତ୍ରେ' ଧ୍ୱନି ଦେଇଥାନ୍ତି ।

ଗୌରୀ ବେତକୁ ଅନ୍ୟ ଏକ ଶୁଷ୍କ ବେତ ସହ ଘର୍ଷଣ କରି ଅଗ୍ନି ଉତ୍ପନ୍ନ କରାଯାଏ । କେତେକ ସ୍ଥଳରେ କାନ୍ଦୁଲ, ଗଣ୍ଡଣା, ବାଉଁଶ ଇତ୍ୟାଦି କାଠକୁ ଘଷି ଅଗ୍ନି ଉତ୍ପନ୍ନ କରନ୍ତି । ସେହି ଘର୍ଷଣ ଜାତ ଅଗ୍ନିକୁ କୁଶ ଓ ପାଳ ମିଶ୍ରିତ ଗୋବରରେ ସଂଯୋଗ କରାଯାଏ । ଏହି ଗୋବରକୁ ଆଞ୍ଚଳିକ ଭେଦରେ 'ଶଙ୍ଖବର'କହିଥାନ୍ତି । କେତେକ ସ୍ଥଳରେ ଅଗ୍ନି ଉତ୍ପନ୍ନ ସକାଶେ ଯବକାଚ ମଧ୍ୟ ବ୍ୟବହାର କରାଯାଏ । ଗୋବରର ଅଗ୍ନିକୁ ଚାରିଗୋଟି ଦଣ୍ଡ ଘଡିରେ ସଂଯୋଗ କରନ୍ତି । ଏପରି ଏକ ଗୁରୁତ୍ୱପୂର୍ଣ୍ଣ ସମୟରେ ଭୋକ୍ତାମାନେ 'କଳାରୁଦ୍ର ମଣିକି ଭଜ ହେ' 'ପାର୍ବତୀପତିକି ଭଜ ହେ', ଏବଂ 'କପିଳାସ କନ୍ଦରୁ ଯୋଗନିଦ୍ରା ଭାଙ୍ଗିବାକୁ ଆଜ୍ଞା ହେଉ ମଣିମା' ଇତ୍ୟାଦି ଧ୍ୱନିରେ ଚତୁର୍ଦ୍ଦିଗ ପ୍ରକମ୍ପିତ କରନ୍ତି । ଏହି ଅଗ୍ନିକୁ ହିଙ୍ଗୁଳା ଦେବୀଙ୍କ ପ୍ରତୀକ ଭାବରେ ଦଣ୍ଡନାଟ ଗ୍ରହଣ କରିଥିବା ଦେଖାଯାଏ -

ହିଙ୍ଗୁଳା ଦେବୀ ଅଗ୍ନି ରୂପ ଧରି
ଦଣ୍ଡେ ରହନ୍ତି ଦଣ୍ଡ ଛରି ଧରି ।

ଶାଳ ଝୁଣାରେ ଧୂପ ଯେ ଦିଅଛି
ବିଶ୍ୱାମିତ୍ର ଠାରୁ ଏହି ଉତ୍‌ପତ୍ତି ।(୪୬)

ଏହାପରେ ଓଦା ବସ୍ତ୍ର ପରିଧାନ କରି ଭୋକ୍ତାମାନଙ୍କର ପୂଜାରମ୍ଭ ହୁଏ । ପୂଜା ସାମଗ୍ରୀ ମଧ୍ୟରେ ୧୩ ଗୋଟି ଗୁଆ, ପଞ୍ଚାମୃତ, ବିଭିନ୍ନଫୁଲ, ବେଲପତ୍ର, କଳା ଓ ନାଲି ରଙ୍ଗର ଲୁଗା, କଳାମାଳି ଓ ଚୁଡ଼ୀ, ପଞ୍ଚରତ୍ନ, ଫରୁଆ, ଗୁଆଘିଅ, କଜ୍ଜଳ, ସର୍ବୌଷଧି, ଚନ୍ଦନ, ସିନ୍ଦୁର, ଦର୍ପଣ, ପାନିଆ, ଅରୁଆ ଚାଉଳ, ମୁଆଁ, ନବାତପଣା, ଗଞ୍ଜେଇ, ସଳିତା, ଧୂପ, ଦୀପ, ହୋମକାଠ, ଦୂବ ଓ ବରକୋଳି ପତ୍ର ପ୍ରଭୃତି ବ୍ୟବହୃତ । ପୂଜା ଶେଷରେ ପ୍ରତ୍ୟେକ ଭୋକ୍ତା ଛିଆପଣା ସେବନ କରନ୍ତି । ଜ୍ୱଳନ୍ତ ଦଣ୍ଡରେ ଶାଳରସ ଉତ୍ପନ୍ନ ଝୁଣା ଦିଆଯାଇ ପ୍ରାତଃ ହେବା ଯାଏଁ ପ୍ରଜ୍ଜ୍ୱଳିତ ରଖନ୍ତି । ଏହାକୁ ଜାଗର - ଦଣ୍ଡ କୁହାଯାଏ । ଅନ୍ୟ ଦୁଇଟି ନୂଆ ମାଟିକଳସୀରେ ଉଷୁନା ଓ ଅରୁଆ ଧାନ ରଖନ୍ତି । ଶୁଖିଲା କାଠ ନିକଟରେ ଥାଏ । ୧୩ ଦିନର ଦଣ୍ଡ ଯାତ୍ରା ଯେତେବେଳେ ସମାପ୍ତ ହୁଏ, ସେତେବେଳେ ଏହି ଉଷୁନା ଧାନ ଗଜା ହେବା ଏବଂ ଶୁଖିଲା କାଠ କଷ୍ଠା ହେବା ଅସମ୍ଭବ ହେଲେ ମଧ ବିଶ୍ୱାସ ଯୋଗ୍ୟ । ଏହାପରେ କାମନା ଗୃହର କାର୍ଯ୍ୟ ଶେଷ ହୁଏ । ଏହି ଗୃହକୁ ଦୁଇଜଣ ଦଣ୍ଡଭୋକ୍ତା ୧୩/୧୪ ଦିନ ଧରି ଜଗିଥାନ୍ତି ।

ପରଦିନ ସକାଳୁ (ଦଣ୍ଡନାଟରେ ପ୍ରଥମ ଦିନ) ବାଜା ବଜାଇ ଦଣ୍ଡୁଆମାନେ ଯଜମାନ ଗୃହ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ଏପରି କିଛି ବରାଦ ନଥିଲେ ଭୋକ୍ତାମାନେ ନିଜ ଗ୍ରାମ ତୋଟାରେ ଉପବାସ ବା ସାମାନ୍ୟ ପଣା ପାନ କରି ଅବସ୍ଥାନ କରନ୍ତି । ଇତି ମଧ୍ୟରେ କାହାର ସହାନୁଭୂତି ଲାଭ କିମ୍ବା କେହି ଯାବତୀୟ ଖର୍ଚ୍ଚ ବହନ କଲେ ଭୋକ୍ତାମାନେ ସେମାନଙ୍କ ଗୃହରେ ଉପସ୍ଥିତ ହୁଅନ୍ତି । ପ୍ରାରମ୍ଭରୁ ଶେଷ ଯାଏଁ ଭୋକ୍ତାମାନେ କେବଳ ପଦବ୍ରଜରେ ପରିଭ୍ରମଣ କରିଥାନ୍ତି । ସେମାନେ ଗୋଟିଏ ଦିନର କାର୍ଯ୍ୟ ସମ୍ପାଦନା ପାଇଁ କୌଣସି ଏକ ନିକାଞ୍ଚନ ସ୍ଥାନ ବା ତୋଟାକୁ ଥରେ ମାତ୍ର ବ୍ୟବହାର କରନ୍ତି । ସେହିପରି ପାଣିଦଣ୍ଡ ସକାଶେ କୌଣସି ଜଳାଶୟ ବା ନଦୀ ତୁଠକୁ ଥରେ ମାତ୍ର ଯାଆନ୍ତି । ଯଦି କୌଣସି ଗ୍ରାମରେ ବା ସହରରେ ୨/୩ ଦିନ ଧରି ଦଣ୍ଡନାଟ ହୁଏ, ତେବେ ସେମାନେ ଭିନ୍ନ ଭିନ୍ନ ସ୍ଥାନରେ ଅବସ୍ଥାନ କରନ୍ତି । ଏହା ସେମାନଙ୍କ ପରମ୍ପରା । ଏହି ତେର ଦିନରେ କେବଳ ତେର ଗୋଟି ଗୃହର ଆତିଥ୍ୟ ସ୍ୱୀକାର କରନ୍ତି । ସେହିପରି ଯେଉଁଠି ୨୧ ଦିନର ଦଣ୍ଡନାଟ୍ୟ ପରମ୍ପରା ରହିଛି, ସେଠାରେ ସେମାନେ ୨୧ ଗୋଟି ଗୃହ ବା ଅନୁଷ୍ଠାନର ଆତିଥ୍ୟ ଗ୍ରହଣ କରିନିଅନ୍ତି ।

ପୁରୀ,ଢେଙ୍କାନାଳ ପ୍ରଭୃତି ଜିଲ୍ଲାମାନଙ୍କରେ ଯଜମାନର ଦଣ୍ଡ ବରଣ ପରମ୍ପରା ପ୍ରାୟ ଦେଖିବାକୁ ମିଳେ ନାହିଁ । କିମ୍ବା କିଏ ଏହି ଦଣ୍ଡନାଟ କରିବ ତାହା ଆଗରୁ ନିର୍ଦ୍ଧାରିତ ହୋଇ ନଥାଏ । ସମସ୍ତ ଭୋକ୍ତା ବାଦ୍ୟ ବଜାଇ, ଶିବଙ୍କ ସ୍ତୁତି କରି ସମଗ୍ର ଗ୍ରାମ ପ୍ରଦକ୍ଷିଣ କରୁଥିବା

ଅବସରରେ ମାନସିକ କରିଥିବା ବ୍ୟକ୍ତି ସେମାନଙ୍କୁ ବରଣ କରିବାର ସମସ୍ତ ବ୍ୟବସ୍ଥା କରେ ।

କିନ୍ତୁ ଗଞ୍ଜାମ ଜିଲ୍ଲାର ଦଣ୍ଡନାଟ କେତେକ ଦୃଷ୍ଟିରୁ ସ୍ୱତନ୍ତ୍ର । କର୍ତ୍ତା ସାଧାରଣତଃ ୨/୩ ମାସ ପୂର୍ବରୁ ବରାଦ କରେ । ପ୍ରତ୍ୟେକ ଯଜମାନ ନିଜର ରୁଚି ଅନୁଯାୟୀ ଉପ୍ସିତ ଦଣ୍ଡ ଦଳକୁ ନିମନ୍ତ୍ରଣ କରୁଥିବା ଦେଖାଯାଏ । ଅନ୍ୟଥା ଦୋଷୀ ହେବାର ଭୟ ଥାଏ । ଗଞ୍ଜାମର ଅତି ଲୋକପ୍ରିୟ ଗାଳେରୀ ଓ କୁଲାଗଡ ଦଣ୍ଡନାଟକୁ ନିମନ୍ତ୍ରଣ କରିବାକୁ ହେଲେ ବର୍ଷ ବର୍ଷ ଧରି ଅପେକ୍ଷା କରିବାକୁ ପଡେ । କୌଣସି ଯଜମାନ ଦୂରତା ଦୃଷ୍ଟିରୁ ନିଜ ଗ୍ରାମ ମଧରେ ଦଣ୍ଡନାଟ କରାଇ ନ ପାରିଲେ ସେ ଦଣ୍ଡଦଳଙ୍କ ଗ୍ରାମରେ ଏହି ନାଟ କରାଇ ଅଭୀଷ୍ଟ ପୂରଣ କରିଥାନ୍ତି ।

ଯଜମାନ ,ଗୃହ ଦ୍ୱାରକୁ ପରିଷ୍କାର କରାଇ ଗୋମୟ ଲେପନ କରି, ତାହାଉପରେ ନାଲି ମାଟିର ଏକ ପ୍ରଲେପ ଦେଇ, ପଞ୍ଚ ମୁରୁଜରେ ଏକ ପଦ୍ମ ଚିତ୍ର ଅଙ୍କନ କରି, ଏକ ଅଞ୍ଜଳି ଧାନ ରଖି, ପିତଳର ଏକ ଜଳ କୁମ୍ଭ ସ୍ଥାପନ କରେ । ସେଥିରେ ଗୋଟିଏ ଆମ୍ବଡାଳ ଦେଇ ସରାକର୍ଣ୍ଣି ଅରୁଆ ଚାଉଳ ରଖି, ତାହା ଉପରେ ନଡିଆ/ ପଇଡ ରଖେ । ଘିଅ ଦୀପ ଓ ଧୂପ କୁମ୍ଭ ନିକଟରେ ସ୍ଥାପିତ ହୁଏ । ବରକୋଳି ପତ୍ର, ଫୁଲ, ହଳଦି ମିଶା ଚାଉଳ ଓ ହରିଡା ଥାଳିରେ ରଖି ଯଜମାନ, ସାହିପଡିଶାର ସ୍ତ୍ରୀ ଲୋକମାନଙ୍କ ହୁଳହୁଳି ଧ୍ୱନି ମଧରେ ଦଣ୍ଡ ଦଳକୁ ସାଦର ନିମନ୍ତ୍ରଣ କରେ । ଏହା ହିଁ ଦଣ୍ଡ ବରଣ । ବନ୍ଦାପନା ଆରମ୍ଭ ହୁଏ ବାଣାକାରର ଗୀତ ମାଧମରେ । ଏହି ଗୀତରେ ଦଣ୍ଡ ନାଟର ନିୟମ ଓ ମଙ୍ଗଳ କାମନା ନିହିତ -

କର୍ଣ୍ଣ ମନ ଦେଇ ଶୁଣ
କହିବି ଆଦ୍ୟର ଦଣ୍ଡ ବିଧାନ ହେ
ଶୁଣ ଆହେ ସୁଜ୍ଞ ଜନ ।।
ଗ୍ରାମକୁ ଯେ କହିଥିବ
କିମିତେ ବାଟକୁ ଯାଇ କରିବ
ତାର ବାଟ ମୁହିଁ ଲିପିଥିବ ।।
କିଶାପ କହୁଛି ଘେନ
ନାରିକେଳ ଚୂତପତ୍ର ତମ୍ବୁଳ
ପୂର୍ଣ୍ଣ କୁମ୍ଭ ଦୀପକୁ ଥୋଇଣ ।।
* * * * *

ଡମରୁ ବାଜେ ମାଧୁରୀ
ଈଶ୍ୱର ତାଣ୍ଡବେ ନାଚନ୍ତି ଫେରି
ଶୋଭା ଦିଶେ କପିଳାସ ପୁରୀ ।।

ଢୋଲ,ମହୁରୀ ,କଂସାଳ
ବୀଣା,କାହାଳୀ,ଘଣ୍ଟନାଦ ଶୁଭେ ଯେ
ଭୂମି ହେଉ ଦଲ ଦଲ ॥
* * * * *

ଧୂଳି ଦଣ୍ଡ ଯେ ସରିବ
ପାଣି ତୋଠେ ଯେତେ ଦ୍ରବ୍ୟ ଲାଗିବ
ତାହା ଈଶ୍ୱର ଯୁକ୍ତେ ଦବ ॥
ନବାତ , ନଡିଆ, ମହୁ
କଦଳୀ,ଦୁଗ୍ଧ,ବେଲପତ୍ର
ନାନା ପୁଷ୍ପେ ପଞ୍ଚାମୃତ ଏହୁ ॥
ପ୍ରସାଦ ତହୁଁ ପାଇବ
ପାହାଡ଼ା ପରେ ତେରଟି ପଇସା ଥୋଇ
ତେର ମୁଣ୍ଡିଆ ମାରିବ ।
ବ୍ରତ ଉପାସନା ଯିବ
ଅଟକା ପରିବା କଞ୍ଚା ମୁଗ ଡାଇ ଯେ
ଆପେ କରିବେ ରାନ୍ଧଣା ॥
* * * * *

ମନେ ନ ଧର ବିରସ
ମ ଅକ୍ଷରେ ଏ ବନ୍ଦନା ଶେଷ
ନାରାୟଣ କହେ ଏହି ଭାଷ ।(୪୭)

ବୀଣାକାର ବା ପାଟଭୋକ୍ତା ଗୋଟିଏ ପ୍ରଜ୍ୱଳିତ ଦୀପ ଯଜମାନ ଦ୍ୱାର ସମ୍ମୁଖରେ ରଖିବା ପରେ ଅନ୍ୟ ଏକ ସୂର୍ଯ୍ୟ ଚନ୍ଦ୍ର ଅଙ୍କିତ ପତାକା ସେଠାରେ ପୋତି ଦିଅନ୍ତି । ଏହା ହିଁ ନିମନ୍ତ୍ରଣ ଗ୍ରହଣ କରିବାର ପ୍ରତିଶୃତି । ଏହି କାର୍ଯ୍ୟ ସମ୍ପାଦନ ପରେ ସେମାନେ ପୂର୍ବ ନିର୍ଦ୍ଧାରିତ ସ୍ଥାନକୁ ବିଶ୍ରାମ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ଦଣ୍ଡଭୋକ୍ତାମାନେ ସେହି ଦିନକ (୨୪ଘଣ୍ଟା) ପାଇଁ ଅତିଥି ହୋଇଥିବା ଯୋଗୁଁ ସେମାନଙ୍କର ଯାବତୀୟ ଖର୍ଚ୍ଚ ଯଜମାନ ବହନ କରି ସମସ୍ତ ଅଭାବ ଓ ଅସୁବିଧାର ପ୍ରତିକାର କରନ୍ତି ।

## ଦଣ୍ଡନାଟର ଭୋକ୍ତା/ଭୋଗତା

ଦଣ୍ଡନାଟର ମୁଖ୍ୟ ୧୩ ଭୋକ୍ତାଙ୍କ ସମେତ ସମସ୍ତ ଉପଭୋକ୍ତା ନୀତି, ନିୟମ ଅନୁସାରେ ଚଳନ୍ତି ।·ପରମ୍ପରାନୁଯାୟୀ ଜଣେ ଦଣ୍ଡୁଆ (୧୩ ଜଣଙ୍କ ମଧ୍ୟରୁ) ତାହାର ମାନସିକ ପୂରଣ ପାଇଁ ଅଂଶ ଗ୍ରହଣ କରିବାକୁ ଚାହିଁଲେ ଅତିକମ୍‌ରେ ୧୩ ବର୍ଷ ପାଇଁ ଯୋଗ ଦେବ । ଅନେକ ପାରମ୍ପରିକ ଦଣ୍ଡଭୋକ୍ତା ତେରର ଗୁଣିତକ ହିସାବରେ ଅଂଶ ଗ୍ରହଣ କରିଥାନ୍ତି । ପ୍ରତ୍ୟେକ

ତେର ବର୍ଷକୁ ଗୋଟିଏ ଗୋଟିଏ 'ପାଟ' (ଗ୍ରାମ୍ୟ ଭାଷାରେ) କୁହାଯାଏ । ଏହାପରେ ଅବସର ଗ୍ରହଣ କରି ନିଜର ପୁତ୍ର ବା ସମ୍ପର୍କୀୟମାନଙ୍କୁ ଅଂଶ ଗ୍ରହଣ ସକାଶେ ପ୍ରବର୍ତ୍ତାନ୍ତି । କେତେକ ଭୋକ୍ତାଙ୍କର ଏହା ବଂଶ ପରମ୍ପରା ।

ତେର ଭୋକ୍ତାଙ୍କ କାର୍ଯ୍ୟ ସ୍ୱତନ୍ତ୍ର । କାମନା ଗୃହସ୍ଥ ଅଗ୍ନି ଯେଉଁ ଦୁଇଜଣ ଜଗିରହନ୍ତି, ସେମାନଙ୍କୁ ଯୋଗୀ କୁହାଯାଏ । ଅନ୍ୟ ଜଣେ ଭୋକ୍ତା ସେହି ଅଗ୍ନିକୁ ଚମ୍ପାବରରେ ସଂଯୋଗ କରି ଦଳରେ ବୁଲନ୍ତି । ଚମ୍ପାବରର ଅଗ୍ନି ଦଣ୍ଡ ଘଡିରେ ସଂଯୋଗ କରି ଅଗ୍ନି ଖେଳରେ ଦୁଇଜଣ ଅଂଶ ଗ୍ରହଣ କରନ୍ତି । ସେମାନଙ୍କୁ ସାହାଯ୍ୟ ଏବଂ ସହଯୋଗ କରିବା ପାଇଁ ଜଣେ ଭୋକ୍ତା ଝୁଣା ଧରି ପାଖେ ପାଖେ ଥାଏ । ଏହି ଅଗ୍ନି ପ୍ରଜ୍ୱଳିତ ହୁଏ ଶାଳରସଜାତ ଝୁଣାରେ । ଏହିପରି ଛଅଜଣ ଦଣ୍ଡାଗ୍ନିର ସମ୍ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରନ୍ତି । ଏହା ବ୍ୟତୀତ ଦୁଇଜଣ ଶିବ ପ୍ରତିମା ଓ ଗୌରୀବେତ ଧରନ୍ତି । ବାଦକ, ପ୍ରଭାନାଚ, ଚଢେୟା, ସଉରା ଓ ବୀଣାକାର ପାଇଁ ଜଣେ ଜଣେ, ଏହିପରି ଏହା ହେଉଛି ତେର ଜଣର ଦଣ୍ଡନାଟ । ଅଗ୍ନିଦଣ୍ଡ ଖେଳ ପ୍ରଦର୍ଶନକାରୀ ଭୋକ୍ତା ଏହି ତେରଦିନ ଅନ୍ନ ଭୋଜନ କରନ୍ତି ନାହିଁ । ଅନ୍ୟମାନେ ରାତ୍ରରେ ଥରେ ମାତ୍ର ଆହାର କରିଥାନ୍ତି ।

ଏହି ତେର ଭୋକ୍ତାଙ୍କ ବ୍ୟତୀତ ଅନ୍ୟ ଉପଭୋକ୍ତାମାନେ କଠିନ ନିଷ୍ଠା ଇଚ୍ଛାକଲେ ଗ୍ରହଣ କରିପାରିବେ । କିନ୍ତୁ ସମସ୍ତ ଭୋକ୍ତା ୧୩ଦିନ ପାଇଁ ଗୃହ ତ୍ୟାଗ କରିବେ, ସ୍ତ୍ରୀ ସଂସର୍ଗ ରଖିବେ ନାହିଁ ଏବଂ କୌଣସି ମାୟାମମତା ପ୍ରତି ଆସକ୍ତି ଭାବ ପ୍ରଦର୍ଶନ କିମ୍ବା କୌଣସି ଉତ୍ତେଜକ ଦ୍ରବ୍ୟ ଗ୍ରହଣ ବା ବ୍ୟବହାର କରିବେ ନାହିଁ ।

ଭୋକ୍ତାମାନେ ଗୃହତ୍ୟାଗ ପୂର୍ବରୁ ଶିବ,ପାର୍ବତୀ ଓ ବିଷ୍ଣୁଙ୍କ ଦର୍ଶନ, ଇଷ୍ଟ ଦେବଦେବୀଙ୍କ ପୂଜା, ପିତାମାତା ଓ ଗୁରୁଜନଙ୍କୁ ପ୍ରଣାମ କରି ଦାଣ୍ଡରେ ତିନିଗାର କାଟି ସୂର୍ଯ୍ୟ ଦେବଙ୍କୁ ନମସ୍କାର କଲାପରେ କାମନା ଗୃହକୁ ପୂର୍ବାଭିମୁଖୀ ହୋଇ ଯାତ୍ରା କରନ୍ତି । ଯଦି ଭୋକ୍ତାର ସ୍ତ୍ରୀ ଥାଏ, ସେ ମଧ ଗୃହଦଣ୍ଡ ପାଳନ କରେ । ପରମ୍ପରାନୁକ୍ରମେ ସେ ଥରେ ମାତ୍ର ହବିଷ୍ୟାନ୍ନ ମଧ୍ୟରାତ୍ର ସମୟରେ ଗ୍ରହଣ କରି ମଧ୍ୟାହ୍ନରେ ଖଇପଣା, ଫଳମୂଳ, କ୍ଷୀର ଆଦି ସେବନ କରେ । ଏକ ବସ୍ତ୍ର ପରିଧାନ ଏବଂ ଭୂଶଯ୍ୟା ଗ୍ରହଣ କରି ଈଶ୍ୱରପାର୍ବତୀଙ୍କ ନାମ ଜପି ସମୟ ଅତିବାହିତ କରେ । ଦକ୍ଷିଣ ହସ୍ତ ଓ ଗୋଡରୁ, ଚୁଡି ଓ ମୁଦି ବାହାର କରିଦିଏ । କପାଳରେ ଥିବା ସିନ୍ଦୁର ଟୋପାର ଡାହାଣ ପାର୍ଶ୍ୱରୁ ଅଧା ଲିଭାଇ ଦିଏ । ଏହି ତେର ଦିନ ଘର ଭିତର ଅଗ୍ନି ବାହାରକୁ ଯାଏ ନାହିଁ । ଗୃହ ଝାଡୁ ଦ୍ୱାରା ସଫା ହେଲାପରେ ମଇଳା ବା ଧୂଳି ଘରର ଆଗ୍ନେୟ କୋଣରେ ଏହି ତେର ଦିନ ଜମା ରହେ । ସମସ୍ତ ପ୍ରକାର ଆମିଷ, ମୈଥୁନ, ନିଶାଦ୍ରବ୍ୟ ପ୍ରଭୃତି ତାମସିକ ଦ୍ରବ୍ୟ ତ୍ୟାଗ କରାଯାଏ । 'ବିଷୟା ବିନିବର୍ତ୍ତନ୍ତେ ନିରାହାରସ୍ୟ ଦେହିନଃ ।'(୪୮) ନିବୃତ୍ତି ମାର୍ଗ ଅବଲମ୍ବନ କରିବାକୁ ହେଲେ ନିରାହାର ହୋଇ ରାତ୍ରି ଅନିଦ୍ରା ରହିବାକୁ ହୁଏ । କାରଣ, ''ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି

ସଂଯମୀ ।''(୪୯) ଯାହା ଜଗତବାସୀଙ୍କ ନିକଟରେ ରାତ୍ରି,ତାହା ଋଷି କୁମାରଙ୍କଠାରେ ଦିବା ସ୍ୱରୂପ । ପ୍ରକାଶ ଯୋଗ୍ୟ, ଦଣ୍ଡଭୋକ୍ତାଙ୍କୁ ଋଷିପୁତ୍ର ନାମରେ ଅଭିହିତ କରାଯାଇଛି ।

ବିଷୁବ ସଂକ୍ରାନ୍ତି ପରଦିନ ଭୋକ୍ତାଗୃହିଣୀ ଗୃହ ଦାଣ୍ଡ ଗୋବରରେ ଲିପାପୋଛା କରି, ନାଲିମାଟିର ଏକ ବର୍ତ୍ତୁଳାକାର ଲେପ ଦେଇ ତାହା ଉପରେ ଅର୍ଘ୍ୟ ଓ ହଳଦିପାଣି ସଜ୍ଜିତ କରିଥାଏ । ଦଣ୍ଡବ୍ରତ ଶେଷ କରି ସ୍ୱାମୀ ଦାଣ୍ଡରେ ଉପସ୍ଥିତ ହେବା ମାତ୍ରେ ସେ ସମ୍ପୂର୍ଣ୍ଣ ସଧବା ବେଶ ଧାରଣ କରି ହଳଦିପାଣିରେ ସ୍ୱାମୀର ପଦ ଧୌତ କରି, ଅର୍ଘ ଓ ଆଳତୀ ପ୍ରଦାନ ପରେ ଗୃହ ପ୍ରବେଶ କରାଏ । ତାପରେ ଶିବପାର୍ବତୀ ଓ ଅନ୍ୟାନ୍ୟ ଦେବଦେବୀଙ୍କ ଦର୍ଶନ କରି ଗୃହଦଣ୍ଡ ଉଦ୍‌ଯାପନ କରେ ।

ଝାମୁ,ପାଟୁଆ,ଚଡକ ପ୍ରଭୃତି ଲୋକନୃତ୍ୟମାନଙ୍କର 'ମୁଖ୍ୟ' କାଳିସୀ ବା ଢାକି ରୂପରେ ପରିଚିତ ହେଲାବେଳେ ଦଣ୍ଡନାଟରେ ମୁଖ୍ୟ 'ପାଟଭୋକ୍ତା' ନାମରେ ପରିଚିତ । ସେ ଦଣ୍ଡନାଟର ବଡପଣ୍ଡା/ ଦଳପତି/ନେତା ଇତ୍ୟାଦି । ସେ ୧୩/୨୧ ଦିନ ଯାଏଁ ଅନ୍ନ ସ୍ପର୍ଶ କରେ ନାହିଁ । ସାମାନ୍ୟ ସୁମିଷ୍ଟ ଫଳ ଓ ଲିଆପଣା ସେବନ କରେ । ଏ ପ୍ରକାରର ଆହାରରେ ତାହାର କୌଣସି କ୍ଷତି ହୁଏ ନାହିଁ । ପାଟଭୋକ୍ତା ଶିକ୍ଷକ ସଦୃଶ ସବୁବେଳେ ହାତରେ ଗୋଟାଏଁ ବେତ ଧରିଥାଏ । ଏହା ହିଁ ଅନ୍ୟମାନଙ୍କୁ ଶାସନ କରିବାର ସଙ୍କେତ । ପାଟଭୋକ୍ତା ଜ୍ୟୋତିମାର୍ଗର ଅଧିକାରୀ ଏବଂ ପାଣି ଦଣ୍ଡୁଆ ଜଣେ ସାଧାରଣ ସାଧକ ମାତ୍ର ।

ଓଡିଶାରେ ହେଉଥିବା ଦଣ୍ଡନାଟରେ ଭୋକ୍ତାମାନଙ୍କ ପରିଚୟ ଆଞ୍ଚଳିକ ଭେଦରେ ଭିନ୍ନ ଭିନ୍ନ । ଉତ୍ତର-ଓଡିଶାରେ (ବିଶେଷତଃ ବାଲେଶ୍ୱର ଜିଲାରେ ) ପ୍ରଚଳିତ ୧୩ ଭୋକ୍ତାଙ୍କ ପରିଚୟ ଚନ୍ଦେନେଶ୍ୱର ମହାଦେବଙ୍କ ମାହାତ୍ମ୍ୟ ପ୍ରଚାର ପୁସ୍ତିକାରେ ଉଲ୍ଲେଖ ଅଛି -

ବୌଦ୍ଧ ଧର୍ମ କର୍ତ୍ତା ବାକ୍ୟସିଂହ ପୁଣି
ଜୈନଙ୍କ ନିର୍ଗନ୍ଥନାଥ
ପରାଚୀନ ଶାସ୍ତ୍ର ଇତିହାସେ ଯେହୁ
ମହାବୀର ବୋଲି ଖ୍ୟାତ ।।
ଶ୍ରୀ ଶଙ୍କରାଚାର୍ଯ୍ୟ ଭଟ୍ଟ କୁମାରୀର
ରାମାନନ୍ଦ ରାମାନୁଜ
ଶ୍ରୀ ଅଭେଷ ସ୍ୱାମୀ ଦାନବ କବୀର
ନିମ୍ବାଦିତ୍ୟ ମାଧବାଚାର୍ଯ୍ୟ ।।
ଅତି ପରାଚୀନ ବଲ୍ଲଭ ଆଚାର୍ଯ୍ୟ
ମଣି ହେଲେ ଦ୍ୱାଦଶ,
ସଭିଙ୍କ ଉପରେ ପାଟଭକ୍ତ ହୋଇ
ଲକ୍ଷ୍ମୀ ହେଲେ ତ୍ରୟୋଦଶ । (୫୦)

ଏହା ତନ୍ତ୍ର ଶାସ୍ତ୍ରାନୁଯାୟୀ ଲେଖା ହୋଇଥିବା ମନେହୁଏ ନାହିଁ । ସାଂପ୍ରତିକ କାଳର ଏକ ସୁନ୍ଦର ପରିକଳ୍ପନା ହୋଇଥିଲେ ମଧ୍ୟ ପରମ୍ପରାନୁଯାୟୀ ଏମାନଙ୍କୁ ତେରଭୋକ୍ତା ବୋଲି ଗ୍ରହଣ କରିବା ସମ୍ଭବ ନୁହେଁ ।

ବାଲେଶ୍ୱରର ରାଇବଣିଆ ଅଞ୍ଚଳରେ ଯେଉଁ ଦଣ୍ଡନାଟ ହୁଏ, ସେଠାରେ ତେର ଭୋକ୍ତା ହେଲେ- ପାଟଭୋକ୍ତା, ଦେଉଳପଡିଶା, ଦଣ୍ଡସ୍ୱାମୀ, ଆଲାମସ୍ୱାମୀ, ଚନ୍ଦନୀଆ ପାତ୍ର, ଫୁଲମାଳୀ, ଧୂପିଆ ପାତ୍ର, ବେତୁଆ ପାତ୍ର, ଦାନ୍ତକାଠିଆ ପାତ୍ର, ଗୋବରିଆ ପାତ୍ର, ପଢାସ୍ୱାମୀ, ଭଣ୍ଡାରଘରିଆ ଓ କଟୁଆଳ । ପାଟଭୋକ୍ତା ସମସ୍ତଙ୍କ ଉପରେ ଏବଂ ରାଜାଙ୍କ ପ୍ରତିନିଧି ସଦୃଶ । ଏହି ଦଣ୍ଡଭୋକ୍ତାମାନେ ଗଞ୍ଜାମ ଜିଲ୍ଲାର ଦଣ୍ଡୁଆଙ୍କ ଭଳି ସ୍ତ୍ରୀ ବେଶ ଧାରଣ କରି, ଘୁଙ୍ଗୁର ବାନ୍ଧି ନାଚିବା ଦେଖାଯାଏ ।

ଦଣ୍ଡନାଟରେ ତେର ଭୋକ୍ତା ହେଉଛନ୍ତି, ପୂଜକ ଏବଂ ରୁଦ୍ରଗଣଙ୍କ ପ୍ରତୀକ । ଢେଙ୍କାନାଳ ଅଞ୍ଚଳରେ ସାଧାରଣତଃ ଏହିମାନେ ତିଣାୟତ, ବିନାୟକ, ନନ୍ଦୀ, ଭୃକୁଟୀ, କାର୍ତ୍ତିକ, ମହାକାଳ, କଳାରୁଦ୍ର ପ୍ରଭୃତି ଭାବରେ ପରିଚିତ । ''କିନ୍ତୁ ଲୋକ ସମ୍ମୁଖରେ ସେମାନେ ଫକୀର, ଫକୀରାଣୀ, ବାବାଜୀ, ବାବାଜିଆଣୀ, ଯୋଗୀ, ଯୋଗୀଆଣୀ, ଚଢେଇଆ, ଚଢେୟାଣୀ, ଶବର, ଶବରୁଣୀ, ପତ୍ରଶଉରା, ପତ୍ରଶଉରାଣୀ ଓ ବାଇଧନ ଏହିପରି ଭାବରେ ବାହାରନ୍ତି '। (୫୧)

ପଶ୍ଚିମ ଓଡିଶାରେ ହେଉଥିବା ଦଣ୍ଡ ପୂଜାରେ ୩୦/୪୦ ବ୍ୟକ୍ତି ଅଂଶ ଗ୍ରହଣ କରନ୍ତି । ସେଥିରୁ ମୁଖ୍ୟ ଭୋକ୍ତାଙ୍କୁ 'ତେର ଭଗତା' କୁହାଯାଏ । କିନ୍ତୁ ନୃତ୍ୟ ବା ସୁଆଙ୍ଗ ବେଳେ ଆଉ ତିନି ଜଣ ଭୋଗତା ଯୋଗ ଦିଅନ୍ତି । ଏହି ଷୋଳ ଜଣ ହେଲେ - ପ୍ରଭା, ହର, ପାର୍ବତୀ, ଫକୀର, ଫକୀରାଣୀ, ଚଢେୟା, ଚଢେୟାଣୀ, ନବଛନକା, ଶବର, ଶବରୁଣୀ, ବାଇଧନ, ବୀଣାକାରୁ, ବୀଣାକାରୁଆଣୀ, ଭାଲୁଆ, ପତ୍ରଶଉରା ଓ ପତ୍ରଶଉରାଣୀ ।

ଖୋର୍ଦ୍ଧା, ନୟାଗଡ ଅଞ୍ଚଳମାନଙ୍କରେ ହେଉଥିବା ଦଣ୍ଡନାଟରେ ଯେଉଁ ଭୋକ୍ତା ଅଂଶ ଗ୍ରହଣ କରନ୍ତି, ସେମାନଙ୍କୁ ପୁରାଣର ବିଭିନ୍ନ ଚରିତ୍ର ସହ ଚିହ୍ନିତ କରାଯାଇଥାଏ । ଯଥା- କ୍ରତୁ, ଅଙ୍ଗିରା, ମରିଚି, ପୁଲହ, ପୁଲସ୍ତ୍ୟ, ଜୟନ୍ତ, ପାକାଶାସନ୍ତି, ଶ୍ରୀବସ୍ତ, ସୁରସେନ, ଗନ୍ଧର୍ବସେନ, ନଳ, କୁବେର ଓ ମଣିଭଦ୍ର ।

ଦଣ୍ଡ ଶାସ୍ତ୍ରାନୁଯାୟୀ ତେର ଦୋଷୀପୁତ୍ର ହେଲେ- ମାରିଚ, ପୁଲହ, ପୁଲସ୍ତ୍ୟ, କ୍ରତୁ, ଅଙ୍ଗିରା, ଜୟନ୍ତ, ପାକଶାସ୍ତି, ସୁବସ୍ତ, ଶୁରସେନ, ଗନ୍ଧର୍ବସେନ, ନଳ, କୁବେର ଓ ମଣିଭଦ୍ର । ଏହି ତେର ଦୋଷୀ ପୁତ୍ର ଦଣ୍ଡବ୍ରତ ଭଗ୍ନ କରିବାକୁ ଈଶ୍ୱର ପାର୍ବତୀଙ୍କ ଆଦେଶରେ ତେର ଋଷି ପୁତ୍ର ହେଲେ । ଯଥା- ଦୁର୍ବାସା, ଗୌତମ, ଶକ୍ତି, ଭୃଗୁ, ଆସଶେକ, ଆସମିକ, ରୁଦ୍ର, ଦତ୍ତାତ୍ରେୟ,

ଭୟ, ମହାବୀର୍ଯ୍ୟ, ଗର୍ଗ, ନର ଓ ବ୍ୟାସ । ଏମାନେ ପୁଣି ଅନୀତି କରିବାରୁ ହରପାର୍ବତୀଙ୍କ ଦ୍ୱାରା ଶାପଗ୍ରସ୍ତ ହୋଇ ନୀଚ କୁଳରେ ଜନ୍ମ ହେଲେ । ଯଥା- ଶବର, ଶଉରା, ପାଣ, ହାଡି, ବାଉରୀ, ଡମ୍ବ, କେଳା, କୈବର୍ତ୍ତ, ରଜକ, ମୁଣ୍ଡା, କନ୍ଧ, ଦଣ୍ଡାସୀ ଓ ଭଣ୍ଡାରୀ । ଏମାନେ ଅଧିକାଂଶ ଆଦିବାସୀ ସମ୍ପ୍ରଦାୟର । ଏମାନଙ୍କ ଆଧୁନିକ ନାମ ହେଉଛି- ଚଢେୟା, ଚହଟା, ହେମା, ଜେମା, ରଜା,ରଣା,ଆନନ୍ଦ,ମଙ୍ଗୁଳୁ,ହନୁ,ବାନା,ଧନୁ,ରଘୁ ଓ କାଳୁ ।

ଦଣ୍ଡ ନାଟର ଭୋକ୍ତା ହେଲେ - କାମନା ଗୃହ ରକ୍ଷକ, ପ୍ରଭାଧାରୀ, ପାଟଭୋକ୍ତା, ଦଣ୍ଡ ଓ ଝୁଣାଧାରୀ, ନାଚଗୁଆଧାରୀ, ପାଟଦେଣିଆ, ପଡି ଦଣ୍ଡୁଆ, ଗୌରୀବେତଧାରୀ, ପାଟ ଚୋଳିଆ, ମୟୂର ଚନ୍ଦ୍ରିକା ଗୁଚ୍ଛଧାରୀ, ଝାଞ୍ଜଧାରୀ ଓ ବାନାଧାରୀ ।

ରାତ୍ରିରେ ଯେତେବେଳେ ନାଟ ଆରମ୍ଭ ହୁଏ, ସେଥିରେ ତେରଭ୍ରୋକ୍ତା, ଯୋଗ ଦିଅନ୍ତି । ଅତୀତରେ ପ୍ରତ୍ୟେକ ଭୋକ୍ତା ପର୍ଯ୍ୟାୟ କ୍ରମେ ଅଭିନୟ କ୍ଷେତ୍ରକୁ ଯାଇ ବିଭିନ୍ନ ପ୍ରକାର ନୃତ୍ୟ ଚୋଇ ତାଳ ମାଧମରେ ପରିବେଷଣ କରୁଥିଲେ । କିନ୍ତୁ ସାମ୍ପ୍ରତିକ କାଳରେ ପରିସ୍ଥିତି ଜନିତ ପ୍ରଭାବରୁ ଦଣ୍ଡ ନାଟର ଆଙ୍ଗିକ ପରିବର୍ତ୍ତନ ଘଟିଛି । କେବଳ ପ୍ରଭା, ଗଣେଶ, ଈଶ୍ୱରପାର୍ବତୀ, ଚଢେୟା ନୃତ୍ୟପରେ ଅଧିକାଂଶ ଦଣ୍ଡନାଟ ଦଳ ଯାତ୍ରାରମ୍ଭ କରି ଦିଅନ୍ତି । ଏହା ସମ୍ପର୍କରେ ସବିସ୍ତୃତ ଆଲୋଚନା ପରବର୍ତ୍ତୀ ପୃଷ୍ଠାମାନଙ୍କରେ କରାଯାଇଛି ।

ପାଟଭୋକ୍ତା ବା ପାଟ ଦଣ୍ଡୁଆ ପ୍ରଥମେ ଗନ୍ଧର୍ବସେନ, ଦ୍ୱିତୀୟରେ ଦୁର୍ବାସା ଏବଂ ପରବର୍ତ୍ତୀ କାଳରେ ଚଢେୟା ରୂପରେ ଜନ୍ମ ନେଇଥିବା ଦଣ୍ଡ ପରମ୍ପରାରେ ଆଲୋଚିତ ।

ଦଣ୍ଡ ନାଟରେ ଭୋକ୍ତାମାନେ ଯେଉଁ ୧୬ ପ୍ରକାର ଦଣ୍ଡ ଭୋଗ କରନ୍ତି, ତାହାହେଲା- ଆହାର, ଉଜାଗର, ଗୃହତ୍ୟାଗ, ମୈଥୁନତ୍ୟାଗ, ପଦଗାମୀ, ଶ୍ମଶାନ, ବନବାସ, ଧୂଳି, ପାଣି ଓ ଅଗ୍ନି, ଅଗ୍ନି ପରୀକ୍ଷା, ଗୃହତ୍ୟାଗ, ନୃତ୍ୟ, ପାକ, ଅଙ୍ଗବଳୀ, ମେରୁପଟା, ଶୁଦ୍ଧିକ୍ରିୟା ଓ କୁଳଭୋଜି ।

ସାମଗ୍ରିକ ଭାବରେ ଦଣ୍ଡ ନାଟର ନାୟକ ପାଟଭୋକ୍ତା ଓ ଉପନାୟକ ରୂପରେ ବୀଣାକାରକୁ ଗ୍ରହଣ କରାଯାଇପାରେ । ଏଣୁ ଏମାନଙ୍କର ଭୂମିକା ଏଥିରେ ଗୁରୁତ୍ୱପୂର୍ଣ୍ଣ ।

# ଦଣ୍ଡନାଟର ବିଭିନ୍ନ ପର୍ଯ୍ୟାୟ

ଦଣ୍ଡ ନାଟରେ ମନୋରଞ୍ଜନ ଧର୍ମୀ ଅଭିନୟ ଦେଖିବାକୁ ମିଳୁଥିଲେ ମଧ୍ୟ ଏହାକୁ ସେହିପରି ଭାବରେ ଗ୍ରହଣ କରାଯାଇ ନପାରେ । ଦଣ୍ଡନାଟ ମୁଖ୍ୟତଃ ଧର୍ମ ଓ ପରମ୍ପରାର ଏକ ମୂର୍ତ୍ତିମନ୍ତ ପ୍ରତୀକ । ଏଥିରେ ମୁକ୍ତିର କାମନା ଏବଂ ଜଗତର କଲ୍ୟାଣ ସମ୍ପର୍କୀୟ ଅନେକ ଅନେକ ଉପାଦାନ ରହିଛି । ତେଣୁ ଏହା ଅସାଧାରଣ ନୃତ୍ୟ ପରମ୍ପରା । ପ୍ରତ୍ୟେକ ଭୋକ୍ତା ଯଜମାନର କାମନା ପୂରଣ ସକାଶେ ନିଜର ସୁଖ ଦୁଃଖକୁ ଜଳାଞ୍ଜଳି ଦେଇ ଶିବଙ୍କଠାରେ ଭକ୍ତି ନିବେଦନ କରନ୍ତି । କର୍ତ୍ତାର ସମସ୍ତ ସୁଖ ଦୁଃଖକୁ ସେମାନେ ନିଜ ଉପରେ ନ୍ୟସ୍ତ କରନ୍ତି । ଯଜମାନର ମଙ୍ଗଳ କାମନା, ନିଜ ଉଦ୍ଦେଶ୍ୟ ସାଧନ ଏବଂ ମାନବ ସମାଜର ଉନ୍ନତି, ଆଦର୍ଶ ଏବଂ ଅହିଂସା-ଧର୍ମ ପ୍ରତିଷ୍ଠା ପାଇଁ ଦଣ୍ଡନାଟ ସତତ ଚେଷ୍ଟିତ । ମହାଦେବଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ଦିନ ଦଣ୍ଡୁଆମାନେ ପାଞ୍ଚ ପ୍ରକାର ଦଣ୍ଡ ବ୍ୟତୀତ ସେମାନଙ୍କର ବ୍ୟକ୍ତିଗତ ଦଣ୍ଡ ୧୧ ପ୍ରକାର ରହିଥିବା ପୂର୍ବରୁ ଆଲୋଚନା କରାଯାଇଛି ।

## ଧୂଳିଦଣ୍ଡ

ଦଣ୍ଡ ବରଣ ପରେ ଦଣ୍ଡନାଟ ଦଳ ନିକଟସ୍ଥ କୌଣସି ଏକ ନିବାଞ୍ଛନ ସ୍ଥାନରେ କିଛି ସମୟ ବିଶ୍ରାମ ନେବା ପରେ ମଧ୍ୟାହ୍ନରେ ସେମାନେ ଯଜମାନର ଗୃହ ଉଦ୍ଦେଶ୍ୟରେ ପ୍ରତ୍ୟାବର୍ତ୍ତନ କରନ୍ତି । ଗୃହ ସମ୍ମୁଖସ୍ଥ ଦାଣ୍ଡରେ ପ୍ରଚଣ୍ଡ ଖରାରେ ଯେତେବେଳେ ଧୂଳି ଉତପ୍ତ ଥାଏ ଦଣ୍ଡଭୋକ୍ତାମାନେ ସେତେବେଳେ ନିର୍ବିକାର ଚିତ୍ତରେ ନିଜ ନିଜର ଅଭିନୟ ପ୍ରଦର୍ଶନ କରିଥାନ୍ତି ।

ଏହି ଧୂଳିଦଣ୍ଡ ମୁଖ୍ୟତଃ କୃଷି କର୍ମ ଭିତ୍ତିକ ୧୬ ପ୍ରକାର ଅଭିନୟ ବିଶିଷ୍ଟ । ଭୂମିପୂଜା, ଧାନ କିଆରୀ ଓ ଚାଷୋପଯୋଗୀ ଜମି ପ୍ରସ୍ତୁତ କରିବା, ଭୂମିରେ ହଳ ବୁଲାଇବା, ବୀଜରୋପଣ କରିବା, ଜଳ ମଡାଇବା, ଘାସ ବାଛିବା, ଖତ ଓ ସାର ଦେବା, ଧାନକାଟିବା, ଧାନ ଅମଳ କରିବା, ଧାନ କୁଟିବା ଏବଂ ଶେଷରେ କୃଷି ଦେବତା ଶିବଙ୍କ ପାଇଁ ମନ୍ଦିର ନିର୍ମାଣ କରିବା । ଏହିପରି ୧୬ ପ୍ରକାର କୃଷିକର୍ମ ଧୂଳିଦଣ୍ଡରେ ଅଭିନୀତ ହୁଏ । ଶିବଙ୍କ ଉଦ୍ଦେଶ୍ୟରେ ଏହି ସମସ୍ତ କୃଷି କର୍ମ ହେଉଥିବା ମଝି ମଝିରେ ଭୋକ୍ତାମାନେ ପଦ୍ୟ ମାଧମରେ ସୂଚାଇ ଦେଉଥାନ୍ତି -

''ଆସିଲେ ଈଶ୍ୱର
ଦେଇଗଲେ ବର
ଆନ ସେବା ଛାଡି ଏହି ସେବା କର,
ଏ ସେବା କଲେ କି ଫଳ ପାଇ ?

ଅନ୍ଧ ନେତ୍ର ପାଆନ୍ତ
ଅପୁତ୍ରିକ ସନ୍ତାନ ପାଏ
ଖଣ୍ଡିଆ କାମ ହୁଏ
ରୋଗୀ ବ୍ୟାଧିରୁ ମୁକ୍ତି ପାଏ
ଅଜ୍ଞାନୀ ଜ୍ଞାନ ପାଏ
ଶୁଖିଲା କାଠ କଞ୍ଚା ହୁଏ
ଭଷୁନା ଧାନ ଗଛା ହୁଏ
ଭକ୍ତିରେ ଯେ ଯାହା କାମନା କରେ
ତାହା ପ୍ରାପ୍ତ ହୁଏ ।''

ତାପରେ-

ଆସିଲେ ତେର ଭୁହୁତା
ସେବିଲେ ରୁଦ୍ର ଦାଢୀକା
ଭୋଗିଲେ ନାନାଦି ଦଣ୍ଡ
ହୋଇଲେ କାମନା ପ୍ରଦ
ପାଇଲେ ମୁକ୍ତିର ବାଟ
ଶେଷେ ଲାଗିଲେ କୈଳାଶ ତଟ ।'' (୫୨)

ଏମାନେ 'କଳାରୁଦ୍ର ମଣିକି ଭଜ ହେ' ପ୍ରତ୍ୟେକ ଅଭିନୟ ପର୍ଯ୍ୟାୟ ଶେଷରେ କହି ଗୋଟାଏ କର୍ମ ଶେଷ କରିଥାନ୍ତି । ଏଠାରେ ଭୋକ୍ତା ଆଞ୍ଚଳିକ ଭାଷାରେ 'ଭଗତ' ରୂପେ ପରିଚିତ ।

ଶସ୍ୟ ଅମଳ ସମୟରେ ଜଣେ ଭୋକ୍ତା/ଭଗତ ପ୍ରଶ୍ନ କରେ, ''କେତେ ଧାନ?'' ଅନ୍ୟ ଜଣେ ଭୋକ୍ତା ଗୋଟିଏ ନିର୍ଦ୍ଦିଷ୍ଟ ପରିମାଣର ଉତ୍ତର ଦିଏ, ଯାହାକି ଆସନ୍ତା ଫସଲ ଆମଦାନୀର ଏକ ସଙ୍କେତ ବୋଲି ଧରି ନିଆଯାଏ । ଧୂଳି ଦଣ୍ଡରେ ପ୍ରତ୍ୟେକ ଭୋକ୍ତା ଗୋଟିଏ ଗୋଟିଏ ନାଟ୍ୟ ସାମଗ୍ରୀ ରୂପେ ପରିକଳ୍ପିତ । ମଝି ମଝିରେ ଭୋକ୍ତାମାନଙ୍କୁ ଟାଣି, ପିଟି, ଗଡେଇ ଏହି ସବୁ କଷ୍ଟସାଧ ଅଭିନୟ କରିବାକୁ ବାଧ କରାଯାଏ ।

ଧୂଳିଦଣ୍ଡ ସମୟରେ ପଲ୍ଲୀ ଜୀବନର ଅନେକ ହାସ୍ୟରସାତ୍ମକ ନିଖୁଣ ଚିତ୍ର ପ୍ରଦାନ କରାଯାଏ । ସେଥି ମଧ୍ୟରେ ସ୍ୱାମୀ ସ୍ତ୍ରୀ କଳହ, ଅଭାବଜନକ ପରିସ୍ଥିତିର ଚିତ୍ର, ଦୁଇ ସଉତୁଣୀ କଳି, ନିମ୍ନ ଜାତିର ବିବାହ, ସନ୍ତାନ ଜନ୍ମ ଏବଂ ନାମକରଣ ପ୍ରଭୃତି ନିତିଦିନିଆ ଜୀବନର ଆଭାଷ ପ୍ରଭୃତି ଏ ପ୍ରକାର ଅଭିନୟ ଦଣ୍ଡ ଭୋକ୍ତାଙ୍କ ସାମୟିକ ବିଶ୍ରାମ ଏବଂ ଚିତ୍ତ ବିନୋଦନ ପାଇଁ ଉଦ୍ଦିଷ୍ଟ ଥିବା ଗ୍ରହଣ କରାଯାଇପାରେ ।

କେତେକ ଦଣ୍ଡନାଟରେ ରାତ୍ରିରେ ହେଉଥିବା ଶବର ଶବରୁଣୀ, ପତ୍ରଶଉରା ଓ ପତ୍ରଶଉରାଣୀ, ଯୋଗୀ, ଯୋଗୀଆଣୀ ପ୍ରଭୃତି ନାଚ ଏହି ଧୂଳିଦଣ୍ଡ ସମୟରେ ଅଭିନୀତ ହୋଇଯାଏ । ରାତ୍ରିର ଯାତ୍ରାଭିନୟ ସକାଶେ ପୂର୍ବରୁ ଏପରି ବ୍ୟବସ୍ଥା ହୋଇଥିବା ମନେହୁଏ । ଧୂଳିଦଣ୍ଡ ଭିତରେ କେତେକ ଭୋକ୍ତା ମୁଖ ମଧ୍ୟରେ ଅଗ୍ନିକୁ ଧରନ୍ତି । ଏହାକୁ ଅଗ୍ନି ଭକ୍ଷଣ କୁହାଯାଏ । ଆଉ କେତେକ କଣ୍ଟା ଉପରେ ଶୟନ ବା ଗଡିବା ଅଭିନୟ କରିଥାନ୍ତି ।

## ପାଣିଦଣ୍ଡ

ଧୂଳିଦଣ୍ଡ ଶେଷ ହେବା ପରେ ଦଣ୍ଡଭୋକ୍ତାମାନେ ପୋଖରୀ ବା ନଦୀ କୂଳକୁ ପାଣି ଦଣ୍ଡ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ଏଠାରେ ସେମାନଙ୍କର ଯାବତୀୟ ନିତ୍ୟକର୍ମ ଶେଷ ହୁଏ । ଛଅ ଅଙ୍ଗୁଳି ବିଶିଷ୍ଟ ଆୟତାକୁ ଦନ୍ତଶୋଧନ ପାଇଁ ବ୍ୟବହାର କରନ୍ତି । ଆୟୁର୍ବେଦ ଅନୁଯାୟୀ ଏହାଦ୍ଵାରା ମୁଖ ଦୁର୍ଗନ୍ଧ ଦୂର ହୁଏ ଏବଂ ମୁଖ ଗହ୍ୱରର ରୋଗ ଜୀବାଣୁ ବିନିଷ୍ଟ ହୁଅନ୍ତି ।

ଭୋକ୍ତାଙ୍କର ଉତପ୍ତ ଶରୀର ଜଳାଶୟରେ ସ୍ନାନ କରିବା ଫଳରେ ଶାନ୍ତ ହୁଏ । ଦିନକ ମଧ୍ୟରେ ଏହା ହିଁ ସେମାନଙ୍କର ଏକମାତ୍ର ସ୍ନାନ ବିଧି । ଏକାଗ୍ର ଚିତ୍ତରେ ସମସ୍ତ ଭୋକ୍ତା ବିଭିନ୍ନ ପ୍ରକାର ଜଳକ୍ରୀଡା କରିଥାନ୍ତି । ଏମାନେ ଜଳାଶୟ ମଧ୍ୟରେ ତେର ଥର ବୁଡ ପକାଇ ତେର ଅଞ୍ଜଳି ବାଲି ଆଣି ତାହା ସାହାଯ୍ୟରେ କୂଳରେ ଏକ ଶିବଲିଙ୍ଗ ସ୍ଥାପନ କରନ୍ତି । ପୋଖରୀ ମଧ୍ୟରେ ଥିବା ଗରୁଡ ସ୍ତମ୍ଭ ସଦୃଶ ଶିବଙ୍କ ଉଦ୍ଦେଶ୍ୟରେ ପ୍ରତ୍ୟେକ ଦଣ୍ଡଭୋକ୍ତା ନିଜକୁ ବିନିଯୋଗ କରି ପ୍ରତୀକାତ୍ମକ ଏକ ମନ୍ଦିର ସୃଷ୍ଟି କରିବା ପରେ ପାଣିଦଣ୍ଡ କାର୍ଯ୍ୟ ସମାପ୍ତ ହୁଏ । ଏହିପରି ସମସ୍ତ କାର୍ଯ୍ୟ ସମ୍ପାଦନ ହେଉଥିବା ବେଳେ କୂଳରେ ଢୋଲ, ମହୁରୀ, ଝାଞ୍ଜ ବାଦ୍ୟର ତୀବ୍ର ଝଙ୍କାର ସହ 'କଳାରୁଦ୍ର ମଣି କି ଭଜ ହେ' ମନ୍ତ୍ର ସମସ୍ତେ ଉଚ୍ଚାରଣ କରୁଥାନ୍ତି ।

ଛତ୍ର ପୂଜା ଓ ବନ୍ଦନା ପରେ ହରପାର୍ବତୀ ଓ କାଳୀଙ୍କ ଆରାଧନା କରାଯାଏ । ଏହାହିଁ ଭଗବାନ ଶିବଙ୍କ ଛତ୍ର ଛାୟାତଳେ ମାନବ ସମାଜକୁ ଆଶ୍ରୟ ଦେଇ ରକ୍ଷା କରିବା ପ୍ରତୀକ । ଏହି ଛତ୍ର କଳା କନାରେ ପ୍ରସ୍ତୁତ ଏକ ଗୋଲାକାର ବସ୍ତୁ । ଏହା ସର୍ବଦା ପୁଷ୍ପ ବିମଣ୍ଡିତ । ଛତ୍ର ତଳେ କାଷ୍ଠାସନ ଉପରେ ଦଣ୍ଡ ଦେବତାଙ୍କୁ ଅଧିଷ୍ଠିତ କରି ଭକ୍ତମାନଙ୍କର ପୂଜା ସାମଗ୍ରୀକୁ ଭୋଗ କରାଇ ମନକାମନା ପୂରଣ ସକାଶେ ପ୍ରାର୍ଥନା କରନ୍ତି । ଚମ୍ପାବର ଅଗ୍ନିକୁ ଦଣ୍ଡ ଘଡିରେ ସଂଯୋଗ କରି ଝୁଣା ଦେଇ ସେଠାରୁ ଅଗ୍ନି ଖେଳ ମାଧ୍ୟମରେ ଯଜମାନ ଗୃହ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ଆସିବା ପଥରେ କୌଣସି ଭକ୍ତ ପୂଜା ସାମଗ୍ରୀ ଅର୍ପଣ କଲେ ତାହା ହୃଷ୍ଟ ଚିତ୍ତରେ ଗ୍ରହଣ ହୁଏ । ଯଜମାନ ଗୃହକୁ ପୂଜା ସାମଗ୍ରୀ ଗ୍ରହଣ କରିବାପରେ ସେଠାରେ ପାଟ ଦଣ୍ଡୁଆ ଓ ଅନ୍ୟ ଜଣେ ଭୋକ୍ତା କିଛି ସମୟ ବାଦ୍ୟ ସହାୟତାରେ ଅଗ୍ନି ଖେଳ ପ୍ରଦର୍ଶନ କରନ୍ତି । ପ୍ରତ୍ୟେକଦ୍ଵୟ ଯୋଡା ଦଣ୍ଡ ଘଡି ଧରି ଏହି କାର୍ଯ୍ୟ ସମ୍ପାଦନ କରିବାରେ ଦକ୍ଷତା ପ୍ରଦର୍ଶନ କରିଥାନ୍ତି । ଏହାପରେ ଯଜମାନର

ସର୍ବାଙ୍ଗୀନ ମଙ୍ଗଳ କାମନା କରି ପୂର୍ବୋକ୍ତ ନିବାଞ୍ଚନ ସ୍ଥାନକୁ ଫେରିଯାଇ ସଂଗୃହୀତ ଲିଆପଣା ସେବନ କରି ସନ୍ତୁଷ୍ଟ ହୁଅନ୍ତି । ସମସ୍ତ ଦିନର ଏକମାତ୍ର ଆହାର ପାଟଭୋକ୍ତା ଏହି ପଣା ଓ ଫଳ ଦ୍ୱାରା ଶେଷ କରେ ।

ପାଣିଦଣ୍ଡ ପରେ ଅଗଝୁଣା ଖେଳି ଖେଳି ଯଜମାନର ଗୃହ ପ୍ରତ୍ୟାବର୍ତ୍ତନ ଦୃଶ୍ୟ ଅତୀବ ମନୋରମ ଏବଂ ଭୟଙ୍କର । ଝୁଣା ଓ ଗୁଗୁଳ ମିଶ୍ରିତ ଚୂର୍ଣ୍ଣ ଦଣ୍ଡ ଅଗ୍ନିରେ ପଡି ଆକାଶକୁ ଗୋଲାକାର ସଦୃଶ ଉଠିବା ଫଳରେ ଉତପ୍ତ ବାୟୁମଣ୍ଡଳ କିଛି ପରିମାଣରେ ଶାନ୍ତ ହୁଏ ଏବଂ କ୍ଷତିକାରକ ଜୀବାଣୁ ନାଶ କରେ ।

## ବନଦଣ୍ଡ

ନିବାଞ୍ଚନ ସ୍ଥାନ ବା ତୋଟାରେ ସାନ୍ଧ୍ୟକାଳୀନ ଅବସ୍ଥାନ ସମୟକୁ ବନଦଣ୍ଡ କୁହାଯାଏ । ଏପରି ଅବସ୍ଥାନ ୧୩ ଦିନରେ ୧୩ଗୋଟି ସ୍ଥାନରେ ହୁଏ । ସେହିପରି ତେର ଗୋଟି ସ୍ଥାନରେ ସ୍ୱତନ୍ତ୍ର ଚୂଲୀ ପ୍ରସ୍ତୁତ କରାଯାଇ ରୋଷେଇ କାର୍ଯ୍ୟ ସମ୍ପାଦିତ ହୋଇଥାଏ । କିନ୍ତୁ କାମନା ଗୃହର ଦଣ୍ଡଜଗାଳୀ ୧୩ ଦିନରେ ୧୩ ଗୋଟି ମାଟି ହାଣ୍ଡି ସାହାଯ୍ୟରେ ଖାଦ୍ୟ ପ୍ରସ୍ତୁତ କରେ । ଏହା ମଧ ତାହାର ବନ ଦଣ୍ଡ ସଦୃଶ । ବିଶ୍ରାମ ସ୍ଥାନର ଅନତି ଦୂରରେ ସ୍ଥାନଟିକୁ ପରିଷାର କରାଯାଇ ଅହ୍ୟା (ଚୂଲୀ) ପ୍ରସ୍ତୁତ କରି ସନ୍ଧ୍ୟା ଆଳତୀ ପରେ ଚମ୍ପାବରରୁ ଜାତ ଅଗ୍ନିରେ ଝୁଣା ପକାଇ ସେହି ଅହ୍ୟାକୁ ପୋଡି ଶୁଦ୍ଧି କରାଯାଇ ଅଗ୍ନି ସଂଯୋଗ ହୁଏ, ପାକ ପାଇଁ ।

ଯଜମାନ ଗୃହରୁ ଆସିଥିବା ଗୋଡି, ମାଟି ବିହୀନ ଅରୁଆ ଚାଉଳ, କଞ୍ଚା କଦଳୀ, ବାଇଗଣ, କଖାରୁ ପ୍ରଭୃତି ପରିବା ଏବଂ ମୁଗଡାଲି ଦ୍ୱାରା ପ୍ରସ୍ତୁତ ସାତ୍ତ୍ୱିକ ଖାଦ୍ୟ ଏମାନେ ଗ୍ରହଣ କରନ୍ତି । ଅକଟା ପରିବା ଓ ଅବଟା ମସଲାହିଁ ସେମାନଙ୍କ ଖାଦ୍ୟ । ସାରା ଦିନର ଉପବାସପରେ ନିଶାର୍ଦ୍ଧରେ ଦଣ୍ଡଭୋକ୍ତାମାନେ ଢୋଲ ବାଦ୍ୟ ବାଦନ କରି ଆହାର କରନ୍ତି । କୌଣସି ବିକୃତ ଶବ୍ଦ, କ୍ରନ୍ଦନ ବା ଚିତ୍କାର ଯେପରି ସେମାନଙ୍କର ଶ୍ରୁତିଗୋଚର ନହୁଏ । ଭୋଜନ ସମୟରେ କୌଣସି ଆପତ୍ତି-ଜନକ ପଦାର୍ଥ ବାହାରିଲେ, ତତ୍‌କ୍ଷଣାତ୍ ତାହା ପରିତ୍ୟକ୍ତ ହୁଏ । ଆହାର ନକଲେ ମଧ ଦୈବୀ କୃପାରୁ ସେମାନଙ୍କୁ କ୍ଷୁଧା ତୃଷ୍ଣା ବାଧେ ନାହିଁ ବୋଲି ବିଶ୍ୱାସ । ଭୋକ୍ତାଙ୍କ ଖଲି ପତ୍ରରେ ଥରେ ମାତ୍ର ଖାଦ୍ୟ ପରିବେଷିତ ହୁଏ । ଭୋଜନ ପୂର୍ବରୁ 'କଳାରୁଦ୍ର ମଣିକି ଉଚ୍ଚ ହେ' ମନ୍ତ୍ର ଧ୍ୱନି ନିନାଦିତ ହୁଏ । ଖାଦ୍ୟ ଗ୍ରହଣ ପରେ ସମସ୍ତେ ଏକ ମୁହାଁ ହୋଇ ନିଜ ଖଲିପତ୍ରକୁ ବାହାରେ ପୋପାଡି ମୁଖ ପ୍ରକ୍ଷାଳନ ପୂର୍ବକ ବିଶ୍ରାମ ସ୍ଥାନକୁ ଫେରି ଆସନ୍ତି । ପରିସ୍ରା କଲେ ଅଣ୍ଟା ପର୍ଯ୍ୟନ୍ତ ଏବଂ ପାଇଖାନା ଗଲେ ସମ୍ପୂର୍ଣ୍ଣ ସ୍ନାନ ବିଧି ଏଥିରେ ରହିଛି । ଏହି ସମୟରେ ସେମାନେ ବ୍ରାହ୍ମଣ ସଦୃଶ ପଇତା ଉପଯୋଗ କରନ୍ତି । ନିୟମ ବହିର୍ଭୁତ କାର୍ଯ୍ୟ କଲେ ଦଣ୍ଡିତ ହେବାର ଭୟ ଥାଏ । ପାଟଭୋକ୍ତା ଓ ଅଗ୍ନିଦଣ୍ଡଧାରୀ ଅନ୍ନ ଭୋଜନ କରନ୍ତି ନାହିଁ ।

ଉଲ୍ଲେଖ ଯୋଗ୍ୟ ଯେ ଦଣ୍ଡନାଟ ଦଳରେ ଭୋକ୍ତା ସଂଖ୍ୟା ଯେତେ ହୁଅନ୍ତୁ ନା କାହିଁକି ଯଜମାନ ଗୃହରୁ ଆସିଥିବା ୬(ଛଅ) ଗଉଣୀ ଚାଉଳ ମାତ୍ର ପାକ ହେବ । ସୁଆଙ୍ଗ ବା ଯାତ୍ରାଭିନୟରେ ଅଂଶ ଗ୍ରହଣକାରୀ କଳାକାରମାନଙ୍କ ପାଇଁ ସ୍ୱତନ୍ତ୍ର ପାକ ହୁଏ । ଖାଦ୍ୟ ପ୍ରସ୍ତୁତି ଦୃଷ୍ଟିରୁ ଏମାନଙ୍କ ସହ ଦଣ୍ଡଭୋକ୍ତାର ପ୍ରାୟ ସମ୍ପର୍କ ନଥାଏ । ବନଦଣ୍ଡର ଲକ୍ଷ୍ୟ ହେଉଛି ଲୋକାଳୟରୁ କିଛି ସମୟ ଦୂରରେ ରହି ମାନସିକ ଶାନ୍ତି ଲାଭ ଉଦ୍ଦେଶ୍ୟରେ ପ୍ରାକୃତିକ ପରିବେଶ ମଧ୍ୟରେ ବିଶ୍ରାମ କରିବା ।

## ଅଗ୍ନିଦଣ୍ଡ

ବନଦଣ୍ଡ ସମାପ୍ତ ପରେ ମଧ୍ୟରାତ୍ରରେ ଭୋକ୍ତାମାନେ ଢୋଲ, ମହୁରୀ, ଘଣ୍ଟ, କାହାଳୀ ବାଦ୍ୟ ବାଦନ କରି ଯଜମାନ ଗୃହକୁ ଯାତ୍ରାରମ୍ଭ କରନ୍ତି । ପାଟଦଣ୍ଡୁଆ ଓ ପାଣିଦଣ୍ଡୁଆ ବା ଦୀପଦଣ୍ଡୁଆ ପ୍ରତ୍ୟେକ ଦୁଇଯୋଡା ଦଣ୍ଡ ଅଗ୍ନି ହାତରେ ଧରି ଝୁଣା ସେଥିରେ ଢାଳି ଢାଳି ରାସ୍ତାରେ ବିଭିନ୍ନ ଅଗ୍ନିଖେଳ ଖେଳି ଆସନ୍ତି । ବେଳେ ବେଳେ ପରିବେଶକୁ ଗମ୍ଭୀର ଓ ଭୟଙ୍କର କରି ଭକ୍ତି ଭାବ ଜାଗ୍ରତ କରିବା ଉଦ୍ଦେଶ୍ୟରେ ମୁଠାଏ ମୁଠାଏ ଝୁଣା ଅଗ୍ନି ଉପରେ ପକାଇ କୌଶଳପୂର୍ଣ୍ଣ ଭାବରେ ଉପରକୁ ଟାଣନ୍ତି ଯେ ସେହି ଅଗ୍ନି ପ୍ରଳୟାଗ୍ନି ଭଳି ଦେଖାଯାଏ । ଏହି ସମୟରେ ସମସ୍ତ ଭୋକ୍ତାଙ୍କର 'କଳାରୁଦ୍ରମଣିକି ଭଜ ହେ' ମନ୍ତ୍ର ଧ୍ୱନି ବାରମ୍ବାର ନିନାଦିତ ହୁଏ । ଯଜମାନ ଓ ଜଗତର ମଙ୍ଗଳ ଉଦ୍ଦେଶ୍ୟରେ ସେହି ଅଗ୍ନିକୁ ସମସ୍ତ ଭୋକ୍ତା ବିନିଯୋଗ କରନ୍ତି । ମନେହୁଏ, ମଣିଷର ନିଷ୍ଠା ଓ ଭକ୍ତି ନିକଟରେ ଅଗ୍ନି ଯେପରି ପରାଜୟ ଲାଭ କରିଛି । ଏହି ଅଗ୍ନିଦଣ୍ଡ ତାଣ୍ଡବ ନୃତ୍ୟ ପରି ଭୟ ଏବଂ ରୋମାଞ୍ଚକର । ପାଟଭୋକ୍ତାଠାରେ ଯେପରି ଦଣ୍ଡଠାକୁରାଣୀ ଆବେଶ ହୁଅନ୍ତି । ଏମାନଙ୍କ ଉଦ୍ଦଣ୍ଡ ନୃତ୍ୟ ଦେଖିବାକୁ ହଜାର ହଜାର ଜନତା ଗୃହ ବାରଣ୍ଡାରେ ଠିଆ ହୋଇ ଅପେକ୍ଷା କରିଥାନ୍ତି । ଏହା ବ୍ୟତୀତ ଉଦ୍ଦଣ୍ଡ ନୃତ୍ୟକାରୀ ପାଟଭୋକ୍ତା ଓ ପାଣିଦଣ୍ଡୁଆର ଆଲୁଳାୟିତ କେଶ, କିଳିକିଳା ଚିତ୍କାର ପରିବେଶକୁ ଭୟଙ୍କର କରେ । ଏ ପ୍ରକାର ପରିବେଶକୁ ଢୋଲ, ମହୁରୀ, ଘଣ୍ଟ ଓ କାହାଳୀର ଧ୍ୱନୀ ମୁଖରିତ କରେ ।

ଏହାପରେ ଆରମ୍ଭ ହୁଏ ଦଣ୍ଡନାଟର ନୃତ୍ୟ ଓ ସୁଆଙ୍ଗ ।

✲

# ଦଣ୍ଡନାଚର ନୃତ୍ୟ/ସୁଆଙ୍ଗ

ଯଜମାନର ଗୃହ ସନ୍ମୁଖରେ ଅଗ୍ନିଦଣ୍ଡ ଶେଷ ହେବା ପରେ ସୁଆଙ୍ଗ ଆରମ୍ଭ ହୁଏ । ସୁଆଙ୍ଗ ସମ୍ପ୍ରତି ସ୍ୱଳ୍ପ ସମୟ ପାଇଁ ବିଧିରକ୍ଷା ପୂର୍ବକ ପ୍ରତ୍ୟେକ ଦଳ ପ୍ରଦର୍ଶନ କରିଥାନ୍ତି । ସୁଆଙ୍ଗ ଶବ୍ଦଟି ସଂସ୍କୃତ 'ସ୍ୱଙ୍ଗ'ର ଅପଭ୍ରଂଶ ଏବଂ ସୁଅଙ୍ଗଚାଳନା ବା ସୁ-ଅଭିନୟବୋଧକ । ଓଡିଶାରେ ମିତ୍ରାକ୍ଷର/ଅମିତ୍ରାକ୍ଷର ଛନ୍ଦ ଗୀତ ସମ୍ବଳିତ ନାଟ୍ୟ ପରିବେଷଣ ଅତି ପ୍ରାଚୀନ । ଏ ପ୍ରକାର ପାରମ୍ପରିକ ଶୈଳୀ ବର୍ତ୍ତମାନ ସୁଦ୍ଧା ପ୍ରତ୍ୟେକ ଅଞ୍ଚଳରେ ବିଦ୍ୟମାନ । ସ୍ୱଳ୍ପ ଗଦ୍ୟ ସମ୍ବଳିତ ଦଣ୍ଡ ସୁଆଙ୍ଗ ମୁଖ୍ୟତଃ ପଦ୍ୟଧର୍ମୀ ଏବଂ ସମସ୍ତ ଚରିତ୍ର ମୁଖ୍ୟତଃ ଢୋଲ ବାଦ୍ୟର ତାଳେ ତାଳେ ନୃତ୍ୟକରିଥାନ୍ତି । ଏହା ବେଳେ ବେଳେ ଉଦ୍ଦଣ୍ଡ ରୂପ ଧାରଣ କରୁଥିବା ଯୋଗୁଁ କିଛି ପରିମାଣରେ ତାଣ୍ଡବ ନୃତ୍ୟର ଛାପ ଦେଖିବାକୁ ମିଳେ । ମୁଖ୍ୟଚରିତ୍ରକୁ ଢୋଲବାଦକ ବେଶଘରକୁ (Green room) ଯାଇ ତାଳ ମାଧ୍ୟମରେ ମଞ୍ଚ ଉପରକୁ ପାଛୋଟି ନେଇ ଆସନ୍ତି । ସୁଆଙ୍ଗର ପ୍ରତ୍ୟେକ ଚରିତ୍ର ମଞ୍ଚ ଉପରେ ନିଜ ପରିଚୟ ଗୀତ ମାଧ୍ୟମରେ ପ୍ରଦାନ କରିବା ବିଧି ରହିଛି । ଏ ପ୍ରକାର ଶୈଳୀ ପ୍ରତ୍ୟେକ ଅଞ୍ଚଳର ନୃତ୍ୟରେ ଦେଖିବାକୁ ମିଳେ ।

ସୁଆଙ୍ଗର ପ୍ରଥମ ଚରିତ୍ର ହେଲେ ହରପାର୍ବତୀ । ଶିବ ନିଜର ରୂପ ବର୍ଣ୍ଣନା କରିବା ସହ ଏହା ଶିବ ପାର୍ବତୀଙ୍କ ପୂଜା ବୋଲି କହିଥାନ୍ତି ଏବଂ ଦଣ୍ଡର ବିଧି ବିଧାନ ସେ ଆନୁଷ୍ଠାନିକ ଭାବେ ପାର୍ବତୀଙ୍କୁ ପ୍ରଦାନ କରନ୍ତି । ଏଠାରେ ଲକ୍ଷ୍ୟ କରାଯାଇପାରେ ଯେ ଲୌକିକ ପୂଜା ପାଠରେ ଶିବପାର୍ବତୀ ଯେପରି ଲୌକିକ ଦେବତାରେ ରୂପାନ୍ତରିତ ହୁଅନ୍ତି ସେପରି ସାଂସାରିକ ଅଭାବ ଅସୁବିଧା ମଧ୍ୟରେ ସେମାନେ ଜଡିତ ଥିବା ମନେକରନ୍ତି ।

ସୁଆଙ୍ଗର ସମସ୍ତ ଅଭିନୟ ସମ୍ପାଦିତ ହୁଏ ଗୀତ ମାଧ୍ୟମରେ । ପଦେ ପଦେ ଗୀତର ଶେଷରେ ଢୋଲ ଓ ମହୁରୀ ବାଜେ । ସେହି ବାଦ୍ୟର ତାଳେ ତାଳେ ପ୍ରତ୍ୟେକ ଚରିତ୍ର ମଞ୍ଚ ଉପରେ ନୃତ୍ୟ ଆରମ୍ଭ କରନ୍ତି । ଗୀତ ଗାନ ସମୟରେ ବାଦ୍ୟବାଦନ ପ୍ରକ୍ରିୟା ବନ୍ଦରହେ କିମ୍ବା ମନ୍ଦ୍ର ଧ୍ୱନି ସୃଷ୍ଟି କରାଯାଏ । ଗୀତର ବୋଲ୍ ଶେଷବେଳେ ବାଦ୍ୟର ତାଳ କ୍ରମଶଃ ବୃଦ୍ଧିପାଏ । ତଦନୁଯାୟୀ କଳାକାରମାନେ ବିଭିନ୍ନ ଆଙ୍ଗିକ ଅଭିନୟ ପ୍ରଦର୍ଶନ କରନ୍ତି ।

ମଞ୍ଚ ଉପରକୁ ଶିବପାର୍ବତୀଙ୍କ ଆଗମନ ସମୟରେ ସମବେତ ପ୍ରାର୍ଥନା ହୁଏ । କିମ୍ବା ସମସ୍ତଙ୍କ ତରଫରୁ ନନ୍ଦୀ ବେଶଧାରୀ ଜଣେ କଳାକାର ଏହି ପ୍ରାର୍ଥନା କରେ । ଏହାକୁ chorus କୁହାଯାଇପାରେ । ସମବେତ ଗାନ ବିଧି ଏକ ପ୍ରାଚୀନ ପରମ୍ପରା ଅନୁସୃତ । ସୁଆଙ୍ଗର ଅନ୍ୟାନ୍ୟ ଚରିତ୍ର ମଧ୍ୟରେ ଚଢେୟା ଚଢେୟାଣୀ, ପତ୍ର ଶଉରା, ପତ୍ରଶଉରାଣୀ, ଶବର ଶବରୁଣୀ

ପ୍ରଭୃତି କ୍ରମାନ୍ୱୟରେ ଆସନ୍ତି । ଏମାନଙ୍କ ଅଭିନୟ ସହ ଦର୍ଶକ ଓ ଅଭିନେତା ସମ୍ପର୍କ ଆଧୁନିକ ନାଟକରେ ବର୍ତ୍ତମାନ ଲକ୍ଷ୍ୟ କରାଯାଏ । ଏଥିପାଇଁ ଦଣ୍ଡନାଟର ଅବଦାନ କମ୍ ନୁହେଁ ।

ଓଡିଶାର ଅନ୍ୟାନ୍ୟ ଅଞ୍ଚଳରେ ହେଉଥିବା ଦଣ୍ଡ ସୁଆଙ୍ଗ ତୁଳନାରେ ଗଞ୍ଜାମର ପ୍ରଚଳିତ ଦଣ୍ଡନାଟ କେତେକ ପରିବର୍ତ୍ତିତ । ପ୍ରଥମେ ମଞ୍ଚ ଉପରକୁ ଆସେ ନନ୍ଦୀ, ଈଶ୍ୱରପାର୍ବତୀଙ୍କ ଗୁଣଗାନ ପରେ ସେମାନଙ୍କ ଆଗମନ ସୂଚନା ପ୍ରଦାନ କରି ମଞ୍ଚ ଉପରୁ ବିଦାୟ ନିଏ । ଏହାପରେ ଶିବପାର୍ବତୀଙ୍କ ଆଗମନ ହୁଏ, ଢୋଲ ତାଳ ମାଧ୍ୟମରେ । ମଞ୍ଚ ଉପରେ ସମବେତ ଦର୍ଶକମଣ୍ଡଳୀକୁ ଦଣ୍ଡ ବିଧାନଗୀତ ମାଧ୍ୟମରେ ପ୍ରଦାନ କରନ୍ତି ।ତା'ପରେ ଆସେ ଚଢେୟା । ଚଢେୟାର ପୂଜାରେ ସନ୍ତୁଷ୍ଟ ହୋଇ ଈଶ୍ୱର ବର ଦିଅନ୍ତି, କହନ୍ତି ଯେ ଜୀବନଧାରଣ ପାଇଁ ପଶୁପକ୍ଷୀଙ୍କ ଶିକାର କରିପାରେ କିନ୍ତୁ କେବେହେଲେ ଶୁକ, ସାରୀ,ପାରା, କପୋତ ଓ ମୟୂରକୁ ମାରିବ ନାହିଁ । ଏହା କଲେ ସର୍ପାଘାତ ହେବ । ଈଶ୍ୱର ପାର୍ବତୀ ମଞ୍ଚ ଉପରୁ ବିଦାୟ ନେବା ପରେ ଚଢେୟାଣୀ ଆସି ଅନୁରୋଧ କରିବାରୁ ଅନିଚ୍ଛା ସତ୍ତ୍ୱେ ଚଢେୟା କପୋତ ଶିକାର କରି ସର୍ପାଘାତ ହୋଇଛି । ସାପୁଆ କେଳା ଆସି ବିଷଝାଡି ଭଲକରେ କିନ୍ତୁ ସଫଳ ନହେଲେ ଈଶ୍ୱରପାର୍ବତୀଙ୍କୁ ପ୍ରାର୍ଥନା କରିବାକୁ କହି ସେଠାରୁ ବିଦାୟ ନିଏ । ଚଢେୟାଣୀ ଏପରି ଦୁର୍ଘଟଣାକୁ ଦାୟୀ ମନେ କରି ଆକୁଳ ନିବେଦନ କରିବାରୁ ସେଥିରେ ପ୍ରଭାବିତ ହୋଇ ଈଶ୍ୱର (ଶିବ) ପହଞ୍ଚି ଜୀବନ ଦାନ କରନ୍ତି । ଏହାପରେ ବୀଣାକାର ଓ ବାଇଧନ ଆସି ପ୍ରାର୍ଥନା କରେ -

କରୁଛି ଚରଣେ ସ୍ମରଣ ଶଙ୍କର
କରିନାହିଁ କିଛି ଜୀବନେ ମୋର ।
କର୍ମ ନାମ ମୋର ହେଲା ଏଥର
କରୁଣା କରିବ ପାର୍ବତୀ ବର
କରିବ ମୋତେ ଉଦ୍ଧାର ।
କହି ପାରୁନାହିଁ କରୁଣା ସାଗର
ଅଟେ ମୁଁ ମୂର୍ଖ ପାମର ।।
କଳନା ରୂପେ ପ୍ରଭୁ ଦିଗମ୍ବର
କରିବାକୁ ମନ ବଳିଲା ମୋର ।
କରୁଅଛି ଦଣ୍ଡ ନୃତ୍ୟ ମୁଁ ଛାର
କରୁଛି ଦଣ୍ଡ ନୃତ୍ୟରେ ବିହାର ।

କରୁଛି ମୁହିଁ ଜୁହାର
କରିବ ଏ ଭବ ସମୁଦ୍ରରୁ ପାର
ହେ ତ୍ରିଶୂଳ ଡମରୁଧର ।। (୫୩)

ଦଣ୍ଡ ସୁଆଙ୍ଗରେ ଯୋଗୀ ଆସେ,ଫକୀର ଆସେ । ଫକୀରର ମୁସଲମାନ ବେଶ ଦର୍ଶକଙ୍କୁ ଆନନ୍ଦ ଦେବାପାଇଁ ଉଦ୍ଦିଷ୍ଟ ଏବଂ ଗ୍ରାମରେ ଏକତ୍ର ରହିବା ସଙ୍କେତ ବହନ କରେ । ଏହିପରି ଅନେକ ଚରିତ୍ରର ସମାବେଶ ଦଣ୍ଡସୁଆଙ୍ଗରେ ଦେଖିବାକୁ ମିଳେ । ଯେ କୌଣସି ପ୍ରକାରେ ନୃତ୍ୟଗୀତାଦି ମାଧ୍ୟମରେ ରାତ୍ରି ଶେଷ କରିବାକୁ ପଡେ ।

ସଂପ୍ରତି ଅଧିକାଂଶ ଦଣ୍ଡସୁଆଙ୍ଗରେ ନନ୍ଦୀ, ଇଶ୍ୱରପାର୍ବତୀ, ଚଢେୟା ଚଢେୟାଣୀ, ଶବରଶବରୁଣୀ ପ୍ରଭୃତି ବିଶିଷ୍ଟ ପାରମ୍ପରିକ ଚରିତ୍ର ବ୍ୟତୀତ ଅନେକ ସାମାଜିକ ଚରିତ୍ର (ଜମାଦାର,ଫକୀର,ଫକୀରାଣୀ,ସାପୁଆ,ଯୋଗୀ, ପ୍ରଭୃତି) ଦେଖିବାକୁ ମିଳେ ନାହିଁ । ଅତୀତର ସୁଆଙ୍ଗ ବର୍ତ୍ତମାନ ଯାତ୍ରା (Theatre) ଅଧିକାର କରି ନେଇଛି ।

## ଦଣ୍ଡ ନାଟର ଚରିତ୍ର

ଦଣ୍ଡନାଟରେ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ପରିବେଷିତ ହୁଏ ନାହିଁ । ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ପ୍ରକାରର ଚରିତ୍ର ପ୍ରବେଶ କରୁଥିବାରୁ ଏଥିରେ ନିର୍ଦ୍ଦିଷ୍ଟ ଚରିତ୍ର ସଂଖ୍ୟା ନଥାଏ । ଗୁଜୁରାଟରେ 'ଭବାଇ' ଲୋକନୃତ୍ୟ ସଦୃଶ୍ୟ ଦଣ୍ଡନାଟ ନାନାପ୍ରକାର ବେଶପୋଷାକ, କାହାଣୀ, ଉପକାହାଣୀ ଦ୍ୱାରା ସମୃଦ୍ଧ ।

ଓଡିଶାର ଯେଉଁ ସବୁ ଅଞ୍ଚଳରେ ଦଣ୍ଡନାଟ ଅନୁଷ୍ଠିତ ହୁଏ, ସବୁଠାରେ ମୁଖ୍ୟ ଚରିତ୍ରଗୁଡିକ ପ୍ରାୟ ସମାନ । ଯଥା- ପ୍ରଭା, ଶିବପାର୍ବତୀ, ଚଢେୟା ଚଢେୟାଣୀ, ଶବର ଶବରୁଣୀ, ଯୋଗୀ, ବୀଣାକାର ପ୍ରଭୃତି । ଉପଚରିତ୍ର ମାନଙ୍କରେ ଆଞ୍ଚଳିକ ଭେଦାନୁସାରେ ଭିନ୍ନତା ଲକ୍ଷ୍ୟ କରାଯାଏ । ସେଗୁଡିକ ହେଲା ନନ୍ଦୀ, ନାରଦ, ବୈଦ୍ୟ, ଜାମ୍ବେ, କେଳୁଣୀ, ବନଦୁର୍ଗା, ଚଢେୟାଭାଇ, କୃଷ୍ଣ, ରାଧା, ଯୋଗୀଆଣୀ, ଦାରୋଗା, ଜମାଦାର, ଫକୀର ପ୍ରଭୃତି । ଏହା ବ୍ୟତୀତ ଅନେକ କାଳ୍ପନିକ ଚରିତ୍ର ବିଷୟବସ୍ତୁ ଅନୁଯାୟୀ ସୃଷ୍ଟି କରାଯାଇଥାଏ । ଦରକାର ହେଲେ ନାଟୁଆମାନେ ଦର୍ଶକମଣ୍ଡଳୀ ମଧ୍ୟରୁ ଅନେକଙ୍କୁ ଟାଣି ଆଣନ୍ତି, ସାମୟିକ ଅଭିନୟ ପାଇଁ ।

ଦ ଣ୍ଡନାଟ ପର୍ଯ୍ୟାଲୋଚନା କଲେ, ଦେଖାଯାଏ ଯେ ଦେବଦେବୀ ଚରିତ୍ର ବ୍ୟତୀତ ଅନ୍ୟ ସମସ୍ତ ଚରିତ୍ର ଲୌକିକ । କାହାର ଘରଦ୍ୱାର, ସମ୍ପତ୍ତି କିଛି ନାହିଁ କିମ୍ବା ସେହି ସମ୍ପର୍କରେ କିଛି ସୂଚନା ମଧ୍ୟ ଦେଖିବାକୁ ମିଳେ ନାହିଁ । ଏମାନେ ସମସ୍ତେ ନିମ୍ନ ସ୍ତରର ଅବହେଳିତ ମନୁଷ୍ୟ ତଥାପି ସେମାନଙ୍କର ଶ୍ରେଷ୍ଠ ସମ୍ପତ୍ତି ହେଉଛି ଈଶ୍ୱର ଭକ୍ତି ।

ପାଟଭୋକ୍ତା, ବୀଣାକାର ପ୍ରଭୃତି ମୁଖ୍ୟଚରିତ୍ରମାନଙ୍କୁ ବହୁ ବିଷୟ ଜାଣିବାକୁ ପଡିଥାଏ । ଦଣ୍ଡନାଟ ସମ୍ବନ୍ଧୀୟ ଅନେକ ପ୍ରଶ୍ନ ତଥା ମନୋରଞ୍ଜନ ଧର୍ମୀ ନୃତ୍ୟ ସଂକ୍ରାନ୍ତୀୟ

ଆବେଦନ, ଦର୍ଶକଙ୍କ ତରଫରୁ ଆସେ । ଦର୍ଶକଙ୍କ ଇଚ୍ଛା ସାଧ-ମତେ ପୂରଣ କରିବାକୁ ଏମାନେ ଏକପ୍ରକାର ବାଧ ହୋଇଥାନ୍ତି । କାରଣ ଦଣ୍ଡନାଟ ହେଉଛି ଗଣନୃତ୍ୟ ଏବଂ ଜନସାଧାରଣଙ୍କ ସକାଶେ ଉଦ୍ଦିଷ୍ଟ ।

## ପାଟଭୋକ୍ତା

ଦଣ୍ଡନାଟରେ ପାଟଭୋକ୍ତା ଓ ପାଟଦଣ୍ଡୁଆ ଏକ ଓ ଅଭିନ୍ନ । ଆଞ୍ଚଳିକ ଭେଦରେ ସେ କେଉଁଠି ପାଟଦଣ୍ଡୁଆ, ପାଟଭୋଗତା ଏବଂ କେଉଁଠି ପାଟଭୋକ୍ତା ନାମରେ ପରିଚିତ । ଗଞ୍ଜାମ ଜିଲ୍ଲାର ଗ୍ରାମାଞ୍ଚଳରେ 'ପାଟ' କହିଲେ ୧୩ ବର୍ଷ ବୁଝାଏ । ଦଣ୍ଡନାଟରେ ଯେଉଁମାନେ ଅଂଶଗ୍ରହଣ କରିବେ, ସେମାନେ ୧୩ ବର୍ଷ ବା ଗୋଟିଏ 'ପାଟ' ପାଇଁ ରହିବେ । ଏହାର ବ୍ୟତିକ୍ରମ ହେଲେ ଶିବପାର୍ବତୀଙ୍କ ଦ୍ୱାରା ଦଣ୍ଡିତ ହେବାର ଭୟ ଅଛି । ତେଣୁ ଅନେକ ଦଣ୍ଡଭୋକ୍ତା ୧ରୁ ଆରମ୍ଭ କରି ୩।୪ ପାଟ ଯାଏଁ ଅର୍ଥାତ୍ ୧୩। ୨୬। ୩୯। ୫୨ ବର୍ଷ ମାନସିକତା ଅନୁଯାୟୀ ଅଂଶଗ୍ରହଣ କରିଥାନ୍ତି । ପାଟଭୋକ୍ତା ଦଣ୍ଡ ନାଟର ଦଳପତି । ସେ ଭୋକ୍ତାଙ୍କ ମଧ୍ୟରେ ଶ୍ରେଷ୍ଠ ଭୋକ୍ତା । ସମସ୍ତ ପ୍ରକାର କ୍ଷୁଧା, ତୃଷା ଏବଂ ବିଷୟତୃଷ୍ଣାକୁ ତ୍ୟାଗ କରିବାର କ୍ଷମତା ସହ ଶୃଙ୍ଖଳା ରକ୍ଷା କରିବାର ଦାୟିତ୍ୱ ମଧ ତାହାର ଥାଏ ।

'ପାଟ' ଅର୍ଥ ଶ୍ରେଷ୍ଠ, ଭୋକ୍ତାଙ୍କ ମଧ୍ୟରେ ଯିଏ ଶ୍ରେଷ୍ଠ ସେ ହିଁ ପାଟଭୋକ୍ତା । ଦଣ୍ଡ କବିଙ୍କ ମତାନୁସାରେ ସେ ହେଉଛନ୍ତି ପୌରାଣିକ ଯୁଗର ଗନ୍ଧର୍ବସେନ । ଗର୍ନ୍ଧବସେନ ତେର ଭୋକ୍ତାଙ୍କ ମଧ୍ୟରେ ଶ୍ରେଷ୍ଠ ଥିବା ପୂର୍ବରୁ କୁହାଯାଇଛି । ବିଶେଷତଃ ଗଞ୍ଜାମ ଓ କଳାହାଣ୍ଡି ଜିଲ୍ଲାରେ ପାଟଭୋକ୍ତା ପ୍ରଥମେ ଗନ୍ଧର୍ବସେନ, ଦ୍ୱିତୀୟରେ ଦୁର୍ବାସା ଏବଂ ତୃତୀୟରେ ଚଢେୟା ରୂପରେ ପରିଚିତ ।

ପାଟଭୋକ୍ତା ୨୧ ଦିନ ପର୍ଯ୍ୟନ୍ତ ଅନ୍ନସ୍ପର୍ଶ କରେ ନାହିଁ । ଦଣ୍ଡନାଟରେ ସମସ୍ତ ନିୟମକାନୁନ୍ ତାହାପାଇଁ ପ୍ରଯୁଜ୍ୟ ହେଉଥିବାରୁ ସେ ସାମାନ୍ୟ ଫଳହାର, ଲିଆପଣା ଓ ପଇଡପାଣି ଗ୍ରହଣ କରେ । କାମନାଗୃହର ଅଗ୍ନି କୁଣ୍ଡରୁ ଦଣ୍ଡଘଡି ଓ ଚମ୍ପାବରରେ ସେ ପ୍ରଥମେ ଅଗ୍ନି ସଂଯୋଗ କରେ । 'କଳାରୁଦ୍ରମଣି କି ଭଜ ହେ'ମନ୍ତ୍ର ବାରମ୍ବାର ଉଚ୍ଚାରଣ କରିବା ପାଇଁ ପ୍ରବର୍ତ୍ତାଏ । ତା'ପର ଦିନଠାରୁ ଦଣ୍ଡଯାତ୍ରା ଆରମ୍ଭ କରିବାକୁ ସେ ନିବେଦନ କରେ ।

ଧୂଳିଦଣ୍ଡକୁ ସେ ବୀଣାକାର ସହ ପରିଚାଳନା କରେ । କେତେକ ଦଣ୍ଡନାଟରେ ସେ ଏକାକୀ ପରିଚାଳନା କରୁଥିବା ଦେଖାଯାଏ । ଧୂଳିଦଣ୍ଡ ସମୟରେ କୌଣସି ଭୁଲ ଦେଖିଲେ ଭୋକ୍ତାମାନଙ୍କ ଉପରେ ବେତ୍ରାଘାତ କରି ଅଭିନୟକୁ ମାର୍ଜିତ କରେ । ଧୂଳିଦଣ୍ଡର ସମସ୍ତ ଷୋଳ ପ୍ରକାର ଦଣ୍ଡାଭିନୟ ତାହାର ନିର୍ଦ୍ଦେଶନାରେ ହିଁ ସଞ୍ଚାଳିତ ହୁଏ । ତେଣୁ ସେ ଦଣ୍ଡନାଟର ନିର୍ଦ୍ଦେଶକ ଓ ଦିଗ୍‌ଦର୍ଶକ ।

ପାଣିଦଣ୍ଡରେ ମଧ ପାଟଭୋକ୍ତାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପାଣି ଦଣ୍ଡୁଆ (ଦେଉଳ ପାଡିଆ) ସହ ମିଶି ଦୁଇଯୋଡା ଦଣ୍ଡ ଘଡି ବାଆଁ ହାତରେ ଧରି ଚମ୍ପାବରର ଅଗ୍ନି ସଂଯୋଗ କରି ଡାହାଣ ହାତ ସାହାଯ୍ୟରେ ଝୁଣା ପକାଇ ବିଭିନ୍ନ ପ୍ରକାରର ଅଗ୍ନିଖେଳ ପ୍ରଦର୍ଶିତ କରେ । କିନ୍ତୁ ସୁଆଙ୍ଗରେ ଅନୁପସ୍ଥିତ ରହେ ।

କେତେକ ଦଣ୍ଡନାଟରେ ପାଟଭୋକ୍ତା ପ୍ରଭାନାଚରେ ମଧ ଅଂଶ ଗ୍ରହଣ କରନ୍ତି । ପାଟଭୋକ୍ତା ଅନେକ ବର୍ଷ ଧରି ଦଣ୍ଡନାଟର ସୁପରିଚାଳନା ଏବଂ ସେବା କରିବା ପରେ ଅବସର ଗ୍ରହଣ କରି ପରିବାରର ପୁଅ, ପୁତୁରା ଏବଂ ଅନ୍ୟମାନଙ୍କୁ ଏଥିରେ ଅଂଶଗ୍ରହଣ କରିବାକୁ ପ୍ରବର୍ତ୍ତାଇଥାଏ । ତେଣୁ ଦଣ୍ଡ ନାଟରେ ପାଟଭୋକ୍ତାର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

## ପ୍ରଭା(ପରଭା)

ଦଣ୍ଡନାଟର ଅନ୍ୟତମ ଅଧିଷ୍ଠାତ୍ରୀ ଦେବୀ ହେଲେ କାଳୀ । ମଧରାତ୍ରରେ ପରିବେଷିତ ଦଣ୍ଡନାଟର ଏହା ପ୍ରଥମ ଚରିତ୍ର । ଏହି କାଳୀ ପୂଜା ପ୍ରାଚୀନ ଯୁଗରୁ ପ୍ରଚଳିତ । କାଳୀଙ୍କର ରୂପ ବିଭିନ୍ନ ପ୍ରକାରର ଯଥା- ମହାକାଳୀ, ନିତ୍ୟକାଳୀ, ଶ୍ମଶାନକାଳୀ, ରକ୍ଷାକାଳୀ ଓ ଶ୍ୟାମାକାଳୀ । ଦେବୀ କୃଷ୍ଣ ବର୍ଣ୍ଣ ହୋଇ ଜନ୍ମ ହୋଇଥିବା ଯୋଗୁଁ ତାଙ୍କ ନାମ କାଳୀ, ବାମନ ପୁରାଣରେ ହିମାଳୟଙ୍କ ତିନିକନ୍ୟାଙ୍କ ମଧରୁ କନିଷ୍ଠ କନ୍ୟାଙ୍କ ନାମ 'କାଳୀ' ଥିବା ଉଲ୍ଲେଖ ଅଛି । କାଳୀ ବିଳାସ ତନ୍ତ୍ରରେ ଗୌରୀଙ୍କ ଶରୀରୋତ୍ପନ୍ନ ଦେବୀ 'କାଳୀ' ବୋଲି ବର୍ଣ୍ଣିତ ହୋଇଛି । ମଣ୍ଡୁକୋପନିଷଦରେ ଅଗ୍ନିଙ୍କ ସପ୍ତଜିହ୍ୱା ମଧରୁ ଗୋଟିଏ ଜିହ୍ୱା 'କାଳୀ' ନାମରେ ଅଭିହିତ । ଅନ୍ୟ ଛଅଟି ଜିହ୍ୱା ହେଲା-କରାଳୀ, ମନୋଜବା, ସୁଲୋହିତା, ସୁଧୂମ୍ରବର୍ଣ୍ଣ, ସ୍ଫୁଲିଙ୍ଗିନୀ, ବିଶ୍ୱରୁଚି ବା ଲୋଳାୟମାନ । ସଂସ୍କୃତ ମହାଭାରତ ଭୀଷ୍ମ ପର୍ବରେ ଅର୍ଜୁନଙ୍କ ଦୁର୍ଗାସ୍ତବ ପ୍ରସଙ୍ଗରେ,'କାଳୀ, କପାଳୀ, ଭଦ୍ରକାଳୀ, ମହାକାଳୀ, କରାଳୀ, ଖଡ୍‌ଗଖେଟକ ଧାରିଣୀ, କାଳମୁଖରିଣ ପ୍ରିୟେ ଆଦି ଉଲ୍ଲେଖ ରହିଛି । ତନ୍ତ୍ର ସାରରେ ଉଦ୍ଦିଷ୍ଟ 'ଚାଣ୍ଡାଳିନୀ'ଙ୍କ ଧ୍ୟାନ କାଳିକାଙ୍କର ବୋଲି ଅନେକ ପଣ୍ଡିତ କହନ୍ତି । କାଳୀ ହେଉଛନ୍ତି ନିରାକାର, ସର୍ବ ଧର୍ମର ବିଲୟ ଭୂମି,କର୍ମ ଶକ୍ତିର ଆଧାର, ସର୍ବସଂହା, ବିଦ୍ୟାଦାୟିନୀ ଓ ସଂସ୍କୃତିପ୍ରିୟା । ଦଣ୍ଡନାଟରେ ଯେଉଁ କାଳୀପୂଜା କରାଯାଏ ସେ ହେଉଛନ୍ତି ରକ୍ଷାକାଳୀ । କାଳୀପୂଜାକୁ ଉତ୍ତର ଓଡିଶା ଓ ସୀମାନ୍ତବର୍ତ୍ତୀ ପଶ୍ଚିମବଙ୍ଗରେ ନୀଳପୂଜା କହନ୍ତି । ଦଣ୍ଡନାଟରେ ଯେଉଁ କାଳୀଙ୍କ ପ୍ରଭା ବାହାରେ ତାହା ଉଗ୍ରପ୍ରଭା ବୋଲି ଦଣ୍ଡଭୋକ୍ତାଙ୍କ ମତ । କାଳୀଙ୍କର ଶାରୀରିକ ବର୍ଣ୍ଣ ନୀଳ ହୋଇଥିବା ଯୋଗୁଁ ପ୍ରଥମ ଦିନର ଦଣ୍ଡ ପୂଜାକୁ 'ନୀଳ' କହିଥାନ୍ତି । ଶିବଙ୍କ ଦୁଇ ସ୍ତ୍ରୀ-ପାର୍ବତୀ ଓ କାଳୀ । ଉଭୟ ଏକ ବୋଲି ଦଣ୍ଡନାଟରେ ଉଲ୍ଲେଖ ନାହିଁ । ତେଣୁ ଏଥିରେ କାଳୀ ଓ ପାର୍ବତୀଙ୍କ ପୂଜାବିଧି ସ୍ୱତନ୍ତ୍ର ।

ପ୍ରଭା  ଅର୍ଥ ଜ୍ୟୋତି ଏବଂ ଶକ୍ତିର ଜ୍ୟୋତି ପ୍ରତୀକ । ମଧ୍ୟ ରାତ୍ରରେ ଯଜମାନର ଗୃହ ସମ୍ମୁଖରେ  ପ୍ରଭା ଧାରଣ କରି ପାଟଭୋକ୍ତା ବା ଅନ୍ୟଜଣେ ଭୋକ୍ତା ଢୋଲ ବାଦ୍ୟର ତାଳେ ତାଳେ ନାଚିଥାଆନ୍ତି । ଏହି ନୃତ୍ୟ ସାଧାରଣତଃ ଲାସ୍ୟଧର୍ମୀ ହେବା କଥା । କିନ୍ତୁ କାଳୀଙ୍କର ନୃତ୍ୟ ଉଦ୍ଦଣ୍ଡଧର୍ମୀ ଥିବା ବିଭିନ୍ନ  ପୁରାଣ-ଶାସ୍ତ୍ରମାନଙ୍କରୁ ସୂଚିତ । ତେଣୁ ଦଣ୍ଡନାଟରେ ଉଗ୍ରପ୍ରଭା ନୃତ୍ୟକୁ କିଛି ସଂସ୍କାର କରାଯାଇ ତାଳ ଲୟ ପ୍ରୟୋଗ କରି ତାଣ୍ଡବ ଧର୍ମୀ କରାଯାଇଥିବା ମନେ ହୁଏ ।

ପ୍ରଭାନିର୍ମାଣ କୌଶଳ ମଧ୍ୟ ତନ୍ତ୍ର ସମ୍ମତ । ଗଠନ ପୂର୍ବରୁ  ପାଟଭୋକ୍ତା ଶୁଦ୍ଧ ପୂତ ଭାବରେ  ଦୁର୍ଗା, କାଳୀ ବା ଶିବମନ୍ଦିରରେ ଅଧା (ଗ୍ରାମ୍ୟ ଭାଷାରେ ଅଧିଆ ବା ଗୁହାରିଆ) ପଡନ୍ତି । ଦେବୀଙ୍କ ସ୍ୱପ୍ନାଦେଶ କ୍ରମେ ଢୋଲ, ଝାଞ୍ଜ, ମହୁରୀ ବାଦନ ପୂର୍ବକ ରୁଦ୍ରକାଳୀ ନାମ ଭଜନ କରି ସେ ନିର୍ଦ୍ଦେଶିତ ସ୍ଥାନକୁ ଯାତ୍ରାକରି ବାଉଁଶ ଆଣନ୍ତି । ସେହି ବାଉଁଶ ସାହାଯ୍ୟରେ ପ୍ରଭା ଗଠନ କରି ତାର ପ୍ରାଣ ପ୍ରତିଷ୍ଠା କରାଯାଏ । ଏହା ସମ୍ପୂର୍ଣ୍ଣ ଭାବରେ ଜଗନ୍ନାଥଙ୍କ ନବକଳେବର ଶୈଳୀକୁ ଅନୁକରଣ କରିବା ମନେ ହୁଏ । ପ୍ରଭା ମଧ୍ୟରେ କାଳୀଙ୍କର ଏକ ପୂର୍ଣ୍ଣାଙ୍ଗ ଚିତ୍ର ସ୍ଥାପିତ ହୁଏ । ପ୍ରତି ବାର ବର୍ଷରେ ଥରେ ଏହାର ପରିବର୍ତ୍ତନ କରାଯାଏ । ଚୈତ୍ର ମଳମାସ ହେଲେ ନୂତନ ପ୍ରଭା ଗଠନ କରାଯାଇ ନୂତନ ଓ ପୁରାତନ ପ୍ରଭାକୁ ମୁହାଁମୁହିଁ କରି ଘଟ ପରିବର୍ତ୍ତନ କରାଯାଏ । ଏହା ନବକଳେବରରେ ଦାରୁ ସ୍ଥାପନାର ଅନୁରୂପ । କାମନା ଗୃହର ହୋମ କୁଣ୍ଡଠାରୁ ନୂତନ ପ୍ରଭା ଦଣ୍ଡଯାତ୍ରା ମଧ୍ୟରେ ନିଆଯାଏ । ପୁରାତନ ପ୍ରଭାକୁ ବିସର୍ଜନ ସ୍ୱରୂପ  ଦଣ୍ଡ ଗୃହର ଛାତ ସନ୍ଧିରେ ରଖି ଦିଆଯାଏ । କିମ୍ବା ଏକ ଉତ୍ତମ ସ୍ଥାନ ନିର୍ବାଚନ କରି ସେଠାରେ ଏହାକୁ ପୋତି ଦିଅନ୍ତି । କିନ୍ତୁ ପୁରାତନ ପ୍ରଭାକୁ ନଦୀ, ନାଳ କିମ୍ବା ପୋଖରୀରେ ବିସର୍ଜନ  କରିବା ବିଧି ନାହିଁ । ବିସର୍ଜନ ପରେ ଏହା କୌଣସି କୂଳରେ ଲାଗି ଅସଦ୍ ବ୍ୟବହାର ହେଲେ ବିପଦ ଆଶଙ୍କା ରହିଛି ।

ନୃତ୍ୟ ପୂର୍ବରୁ ପ୍ରଭାକୁ ଭୋକ୍ତାର କଟି ଓ ପିଠି ସହ ଦୃଢ ଭାବରେ ବନ୍ଧନ କରାଯାଏ । ପ୍ରଭାକୁ ବେକ ଉପରେ ଗୋଟାଏ ଗାମୁଛାରେ ଚାପ ସହ ଉଭୟ ପାର୍ଶ୍ୱକୁ ଭୋକ୍ତା ଦୁଇହାତ ମୁଠିରେ ଧରି ନୃତ୍ୟ ସକାଶେ ପ୍ରସ୍ତୁତ ହୁଏ । କେତେକ ସ୍ଥାନରେ ଏପରି ଚାପ ପ୍ରୟୋଗ କରି ନଥାନ୍ତି । ପ୍ରଭା ଖସି ନଯିବା ପାଇଁ  ବେକ, ପିଠି  ଓ କଟୀ ସହ ଦୃଢ ବନ୍ଧନ କରିଥାନ୍ତି । ଅବଶ୍ୟ ସ୍ଥାନ ଭେଦରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ । ଅଧିକାଂଶ ଦଣ୍ଡ ଦଳରେ ପ୍ରଭା ନୃତ୍ୟକାରୀ ସହ ଜଣେ ସହକାରୀ ମଧ୍ୟ ଥାଆନ୍ତି । ଏହାକୁ ସହଚରୀ ଭାବରେ ଗ୍ରହଣ କରାଯାଇଥାଏ । ଏହି ନୃତ୍ୟ କେବଳ ୧୩ ଦିନରେ ୧୩ ଥର  ଅନୁଷ୍ଠିତ ହୁଏ । ଅନ୍ୟ ସମୟରେ କାମନା ଗୃହରେ ବା ଠାକୁରାଣୀ ମନ୍ଦିରରେ ପ୍ରଭାକୁ  ସୁରକ୍ଷିତ ରଖାଯାଏ । ବର୍ଷର  ଅନ୍ୟ ସମୟରେ ଏହାକୁ ସ୍ପର୍ଶ କଲେ କିମ୍ବା ଲୋଭର ବଶବର୍ତ୍ତୀ ହୋଇ ପ୍ରଭାଧାରଣ କରି ନୃତ୍ୟ କଲେ ଅନିଷ୍ଟ ହେବାର ବିଶ୍ୱାସ ରହିଛି ।

ବଲାଙ୍ଗିର ଜିଲ୍ଲାର କେତେକ ଅଞ୍ଚଳ ଓ ଦଶପଲ୍ଲାରେ ବରାଦ ମୁତାବକ ହେଉଥିବା ଦଣ୍ଡନାଟରେ ମୂଳପ୍ରଭା ବ୍ୟତୀତ ଅନ୍ୟ ଏକ ପ୍ରଭା ବ୍ୟବହାର କରାଯାଏ । ଗଞ୍ଜାମ, ଫୁଲବାଣୀ, କଳାହାଣ୍ଡି, ଅଞ୍ଚଳରେ ପ୍ରଭା ନୃତ୍ୟକାରୀ ଭୋକ୍ତାର ବେଶପୋଷାକ ସାଧାରଣ ହୋଇଥିବା ବେଳେ ନୟାଗଡ଼ ଓ ଦଶପଲ୍ଲା ଅଞ୍ଚଳରେ ପ୍ରଭାଧାରୀଭୋକ୍ତାର ପୋଷାକ ଓ ବେଶରେ ବର୍ଣ୍ଣାଢ୍ୟତା ଥାଏ । ଢେଙ୍କାନାଳ ଓ ବାଲେଶ୍ୱରର ଅଧିକାଂଶ ଦଣ୍ଡନାଟରେ ପ୍ରଭା ନୃତ୍ୟର ଅଭାବ ଢେର ପରିଲକ୍ଷିତ । ଏ ପ୍ରକାର ପ୍ରଭାବିହୀନ ନୃତ୍ୟକୁ 'ଉଦଣ୍ଡ ନାଟ' ରୂପେ ଅଭିହିତ କରାଯାଇଛି ।

ପ୍ରଭା ନୃତ୍ୟରେ ପାଟ ଢୋଲିଆର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସହ ଢୋଲିଆର ଆବଶ୍ୟକତା ଏଥିରେ ପ୍ରାୟ ନଥାଏ । କାରଣ ପାଟଢୋଲିଆ ହେଉଛି ଅନ୍ୟତମ ତେର ଭୋକ୍ତାଙ୍କ ମଧ୍ୟରୁ ଜଣେ । ମହୁରୀ, ଘଣ୍ଟ, କାହାଳୀବାଦନ ସହ ପାଟଢୋଲିଆ ୧୬ ପ୍ରକାର ତାଳ ମାଧ୍ୟମରେ ନୃତ୍ୟ କରାଇଥାଏ । ଏହି ଷୋଳ ପ୍ରକାର ଢୋଲ ତାଳ ବା ବୋଲ୍ କୁ ସ୍ଥାନୀୟ ଭାଷାରେ 'ଷୋଳଖାଡ଼ି' କହନ୍ତି ।

ପ୍ରଭା-ନାଟୁଆ ଛିଟ ରଙ୍ଗର ଘାଗରା ପିନ୍ଧେ ଏବଂ ଅଣ୍ଟା ଓ ପାଦରେ ଘୁଙ୍ଗୁର ବାନ୍ଧେ । ପାଟ ଢୋଲିଆର ପ୍ରଥମ ତାଳରୁ ନୃତ୍ୟାରମ୍ଭ ହୋଇ ତାହା କ୍ରମଶଃ ଦ୍ରୁତ ହୁଏ । ପ୍ରଭା ନାଟୁଆର, ସହକର୍ମୀ ହାତରେ କଳା ବା ନାଲି ରଙ୍ଗର ଏକ ରୁମାଲ ଧରି ନୃତ୍ୟରେ ସାହାଯ୍ୟ କରେ । ପାଟ ଢୋଲିଆର ବାଦନ ପ୍ରକ୍ରିୟା ମଧ୍ୟ ନୃତ୍ୟପୂର୍ଣ୍ଣ । ବାଦ୍ୟର ପରିବର୍ତ୍ତନ ସଙ୍ଗେ ସଙ୍ଗେ ନୃତ୍ୟକାରୀର ଛନ୍ଦ, ଅଙ୍ଗ ଓ ଭାବଭଙ୍ଗୀ ମଧ୍ୟ ପର୍ଯ୍ୟାୟକ୍ରମେ ଷୋଳପ୍ରକାରରେ ପରିବର୍ତ୍ତିତ ହୁଏ ।

ଏ ପ୍ରକାର ନୃତ୍ୟ ସମୟରେ ଦଣ୍ଡ ଅଗ୍ନିର ଝୁଣା ଖେଳ ବାସ୍ତବିକ ଭୟାବହ ଏବଂ 'କାଳରୁଦ୍ର ମଣିକି ଭଜ ହେ' ମନ୍ତ୍ର ଧ୍ୱନି ରଙ୍ଗସ୍ଥଳୀକୁ ପ୍ରକମ୍ପିତ କରେ । ପ୍ରଭା ନାଟୁଆ ଆବେଶ ଅବସ୍ଥାକୁ ଆସି ଅଚେତନ ହେବାଯାଏଁ ଢୋଲ ବାଦ୍ୟ ମାଧ୍ୟମରୁ ତୀବ୍ରତର ହେଉଥାଏ । ଅଚେତନ ଅବସ୍ଥାକୁ 'ଦଣ୍ଡକାଳୀ ବିଜେ' କହିଥାନ୍ତି । ଏହି ସମୟରେ ଯଜମାନର ମାନସିକ ଏବଂ ଦଣ୍ଡଭୋକ୍ତାଙ୍କର ସଫଳତା ଓ ବିଫଳତା ସମ୍ପର୍କରେ ଭବିଷ୍ୟତ ବାଣୀ ପ୍ରଦାନ କରି ପ୍ରତିକାରର ମାର୍ଗ ଦର୍ଶାଇଥାନ୍ତି ।

ନାଟ୍ୟ-ପ୍ରୟୋଗ ଦୃଷ୍ଟିରୁ ଏହି ଆବେଶ ପ୍ରକ୍ରିୟା ସ୍ୱତନ୍ତ୍ର । କୌଣସି ଅଭିନେତା ଦୈବୀ ଚରିତ୍ରରେ ଅଭିନୟ କଲେ ତାହାର ପ୍ରକୃତି ସେହି ଦେବତା ଅନୁରୂପ ହୋଇଥାଏ । ଚରିତ୍ର ସହ ନିଜକୁ-ସମ୍ପୂର୍ଣ୍ଣ ରୂପେ ବିନିଯୋଗ କଲେ ଶରୀରର ଭାବଭଙ୍ଗୀ ଏବଂ କଥନରେ ଏକ ଅପୂର୍ବ ଦେବତ୍ୱ ପରିଲକ୍ଷିତ ହୁଏ । ଏହି ଅବଚେତନ ଅବସ୍ଥାରୁ ସଚେତନ ଜଗତକୁ ଫେରି ଆସିବା ବେଳେ ମୁଖ ନିସୃତ ବାଣୀକୁ ଦୈବୀ ନିର୍ଦ୍ଦେଶ ଭାବରେ ଦର୍ଶକମଣ୍ଡଳୀ ଗ୍ରହଣ କରିଥାନ୍ତି ।

ଉପରୋକ୍ତ ଷୋଳ ପ୍ରକାର ବାଦ୍ୟ ତାଳରେ ଷୋଳପ୍ରକାର ଅଭିନୟ ତାଣ୍ଡବ ସହ ସମତା ରକ୍ଷା କରେ । କେହି କେହି କହନ୍ତି ଶିବ ତାଣ୍ଡବର ରୂପାନ୍ତର ହେଉଛି ପ୍ରଭା ନାଚ । ଶାରୀରିକ ନୃତ୍ୟର ପ୍ରାଧାନ୍ୟ ଥିବା ଯୋଗୁଁ ଗୀତର ଆବଶ୍ୟକତା ଉପଲବ୍ଧ ହୁଏ ନାହିଁ । ଏହି ନୃତ୍ୟ ଦକ୍ଷିଣ ଓଡିଶାରେ 'କାଳିକା ନାଚ' ଭାବରେ ପ୍ରଚଳିତ ।

ଦଣ୍ଡନାଟର ପ୍ରଭା ବା କାଳିକା ନାଚରେ ମୁଖା ବ୍ୟବହୃତ ହୁଏ ନାହିଁ । କିନ୍ତୁ ଦକ୍ଷିଣ ଓଡିଶାରେ ହେଉଥିବା ଠାକୁରାଣୀ ଯାତ୍ରାମାନଙ୍କରେ କାଳୀଙ୍କ ଏକ ଭୟଙ୍କର ମୁଖା ବ୍ୟବହାର କରନ୍ତି । ଏହି କାଳୀକା ନୃତ୍ୟକାରୀ ଗୋଟିଏ ହାତରେ କାଠଛୁରୀ ଓ ଅନ୍ୟ ହାତରେ ଦର୍ପଣ ଧାରଣ ପୂର୍ବକ ସେଥିରେ ମୁଖ ଦେଖି ବାଦ୍ୟର ତାଳେ ତାଳେ ନାଚେ । ଦଣ୍ଡନାଟର ପ୍ରଭା ଅର୍ଦ୍ଧଚନ୍ଦ୍ରାକୃତି ହେବା ବେଳେ ଠାକୁରାଣୀ ଯାତ୍ରାର ପ୍ରଭା ଦେବାଳୟ ଆକୃତି ବିଶିଷ୍ଟ ।

ଗଞ୍ଜାମର ଗାଲେରୀ,ତନରଡା, ଗାମୁଣ୍ଡି, ନୂଆଗାଁ, କୁଲାଗଡ, ଆଙ୍କୁଲାପଲ୍ଲୀ ଏବଂ ପୁରୀ ଜିଲ୍ଲାର ନୟାଗଡ ଓ ଦଶପଲ୍ଲା ଅଞ୍ଚଳରେ ପ୍ରଭାନାଚ ଏବଂ ଢୋଲ ବାଦନ ଶୈଳୀ ଅନ୍ୟମାନଙ୍କଠାରୁ ଉନ୍ନତତର ।

## ଇଶ୍ୱର-ପାର୍ବତୀ

ପ୍ରଭା ନାଚ ପରେ ଏକ ଗୌଣ ଚରିତ୍ର 'ନନ୍ଦୀ' ଆସି ପ୍ରାର୍ଥନା ମାଧ୍ୟମରେ ହରପାର୍ବତୀଙ୍କ ଆଗମନ ସୂଚନା ଦିଏ । ସେ ଇଶ୍ୱରଙ୍କ ଦ୍ୱାରପାଳ/ ବାର୍ତ୍ତାବହ/ଡଗର/ଦୂତ ପ୍ରଭୃତି ଭୂମିକା ସୂଚାରୁ ରୂପେ ପାଳନ କରେ । ଏହାପରେ ଦର୍ଶକ ମଣ୍ଡଳୀର ଶୁଭକାମନା କରି ମଞ୍ଚ ପରିକ୍ରମା ପରେ ପ୍ରସ୍ଥାନ କରେ । ପରବର୍ତ୍ତୀ ସମୟରେ ପାଟଢୋଲିଆ ବେଶଗୃହକୁ ଯାଇ ଢୋଲ ବାଦ୍ୟର ତାଳେ ତାଳେ ପୁଷ୍ପପଥ ଦେଇ ଇଶ୍ୱର ପାର୍ବତୀଙ୍କୁ ମଞ୍ଚ ଉପରକୁ ପାଛୋଟି ଆଣେ । ସମସ୍ତ ଦର୍ଶକ ଶିବପାର୍ବତୀଙ୍କ କଥୋପକଥନ ଶୁଣିବାକୁ ଉତ୍କଣ୍ଠାର ସହ ଅପେକ୍ଷା କରିଥାନ୍ତି । ଏହି ଇଶ୍ୱର - ପାର୍ବତୀ ଦେବ ଚରିତ୍ର ନହୋଇ ଯେପରି ଲୌକିକ ଚରିତ୍ରରେ ପରିବର୍ତ୍ତନ ହୋଇଯାନ୍ତି । କାରଣ ଇଶ୍ୱର ଦେବତ୍ୱର ପ୍ରତୀକ ହୋଇ ହାତରେ ତ୍ରିଶୂଳ ଧାରଣ କରି ଆସିବା ବେଳେ ପାର୍ବତୀଙ୍କ ବେଶ ଓ ପୋଶାକରେ ବର୍ଣ୍ଣାଢ୍ୟତା ନଥାଏ । କେବଳ ସେ ହାତରେ ଗୋଟିଏ ରୁମାଲ ଧରିଥାନ୍ତି । କିନ୍ତୁ ଦର୍ଶକଙ୍କ ନିକଟରେ ଦୈବୀ ଚରିତ୍ରକୁ ପ୍ରତିନିଧିତ୍ୱ କରୁଥାନ୍ତି । ସେମାନେ ପ୍ରତି ଗୀତର ପଦ ଶେଷରେ ଢୋଲ ବାଦ୍ୟର ତାଳେ ତାଳେ ନୃତ୍ୟ କରନ୍ତି ଏବଂ ଦଣ୍ଡନାଟର ଆଗତ ଭବିଷ୍ୟତ ରୀତିନୀତି, କାହାପରେ କେଉଁ ନୃତ୍ୟ ଏବଂ ଘଟଣାବଳୀ ହେବ ତାହା ପ୍ରକାଶ କରନ୍ତି । ନନ୍ଦୀ, ଈଶ୍ୱର ଓ ପାର୍ବତୀ ନୃତ୍ୟ ପରମ୍ପରାନୁସାରେ ନିଜର ପରିଚୟ ପ୍ରଦାନ କରିଥାନ୍ତି -

ଶିବ- କୈଳାସୁ ବାହାର ହର ବସି ବୃଷଭ ପିଠିର

ଶିରେ ଜଟା ଅର୍ଦ୍ଧଶଶୀ ସାଜେ ହେ ।

ଭକ୍ତମାନଙ୍କର ଦୁଃଖ ଧ୍ୟାନେ ଜାଣି ପଞ୍ଚମୁଖ

ଆସି ତାଙ୍କ ପାଶେ ହେଲେ ବିଜେ ହେ ।(୫୩)

ପାର୍ବତୀ- ବାହାରିଲେ ହୈମବତୀ ସେ ଦୁଃଖେ ଅତି ।

କାହିଁଗଲେ ପଶୁପତି ସେ ଦୁଃଖେ ଅତି । ପଦ ।

କରମ ଲିଖନ,ମୋର କେତେ ହୀନ

ପ୍ରାଣପତି ହେଲେ ଯତି,ସେ ଦୁଃଖେ ଅତି ।।

ତେଜି ଅଳଙ୍କାର,ହୃଦେ ଅସ୍ଥିହାର

ଅଙ୍ଗେ ବୋଳିଲେ ବିଭୂତି,ସେ ଦୁଃଖେ ଅତି ।।

ବାସୁଆ ବଳଦ,ବାହନ ସମ୍ପଦ

ଶ୍ମଶାନେ ବୁଲନ୍ତି ରାତି,ସେ ଦୁଃଖେ ଅତି ।। (୫୪)

* * * * *

ଏହିପରି ସମସ୍ତ ପ୍ରକାର ନୃତ୍ୟାଭିନୟ ପାର୍ବତୀଙ୍କ ପ୍ରଶ୍ନ ଏବଂ ଈଶ୍ୱରଙ୍କ ଉତ୍ତର ମାଧ୍ୟମରେ ଶେଷ ହୁଏ । ଯଥା-

ପାର୍ବତୀ- ଶୁଣ ଆହେ ପ୍ରାଣେଶ୍ୱର

କିମ୍ପା ତୁମେ କୈଳାସପୁର ହେ

ଆସି ଭ୍ରମଣ କର ଏଠାରେ, ଶଙ୍କର ହେ ।

ଈଶ୍ୱର- ଶୁଣ ଗଉରୀ ସଧୀରେ,

ଭକ୍ତଜନ ଚିନ୍ତା କରନ୍ତେ ଘରେ ଗୋ,

ଆମେ ଆସିବୁ ଦଣ୍ଡ ଯାତରେ, ଗଉରୀ ଗୋ ।

ପାର୍ବତୀ- ଆହେ ଦେବ ପଶୁପତି

ଦଣ୍ଡଯାତ ଅଟେ କେମନ୍ତ ରୀତି ହେ

ତାହା ଶୁଣିବାକୁ ମୋର ମତି, ଶଙ୍କର ହେ ।

ଈଶ୍ୱର- ଶୁଣ ଦେବୀ ଦେଇ ଚିତ୍ତ
ଅଛନ୍ତି ଯେ ମୋର ତୋର ଭକତ ଗୋ
ସେହୁ ଭିଆଇଲେ ଦଣ୍ଡଯାତ, ଗଉରୀ ଗୋ ।

ପାର୍ବତୀ- ଆହେ ଦେବ ମହେଶ୍ୱର
କେମନ୍ତ ଚରିତ ହେବ ତାଙ୍କର ହେ
ଆଜ୍ଞା ଦିଅ ଆସନ୍ତୁ ଏଠାରେ, ଶଙ୍କର ହେ ।

ଈଶ୍ୱର- ତୁହ ସତୀ ଏବେ ଏହା
ଚଢେୟାଣୀ ସଙ୍ଗଧରି ଚଢେୟା ଗୋ,
ନୃତ୍ୟ ରଚିରେ ଆସିବ ତାହିଁ, ଗଉରୀ ଗୋ ।

ପାର୍ବତୀ- ଆହେ ଦେବ ଶୂଳଧାରୀ
ଚଢେୟା ତୁମର ଭକ୍ତ କିପରି ହେ,
କହ ସଂଶୟ ଯାଉ ମୋହରି, ଶଙ୍କର ହେ ।

ଈଶ୍ୱର- ସର୍ପ ମାଇଲା ବନସ୍ତେ
ମୋତେ ଚିନ୍ତା କରି ବସିଲା ସ୍ୱପ୍ନେ ଗୋ,
ଆସି କହେ କବିଚନ୍ଦ୍ରଘାତେ, ଗଉରୀ ଗୋ। (୫୬)

ଏହିପରି ସମସ୍ତ ପ୍ରକାର ନୃତ୍ୟାଭିନୟ ପାର୍ବତୀଙ୍କ ପ୍ରଶ୍ନ ଓ ଈଶ୍ୱରଙ୍କ ଉତ୍ତର ମାଧମରେ ଶେଷ ହୁଏ, ଏବଂ ମଞ୍ଚରୁ ପ୍ରସ୍ଥାନ ପରେ ଚଢେୟା ଓ ଚଢେୟାଣୀ ଚରିତ୍ର ଦ୍ୱୟ ପ୍ରବେଶ କରନ୍ତି ।

## ଚଢେୟା ଓ ଚଢେୟାଣୀ

ଦଣ୍ଡନାଟର ମୁଖ୍ୟ ଚରିତ୍ର ହେଲେ ଚଢେୟା ଓ ଚଢେୟାଣୀ । କେତେକ ଦଣ୍ଡନାଟରେ ଚଢେୟା ହେଉଛି ପାଟଭୋକ୍ତା । ଏହି ଚରିତ୍ରଙ୍କ ନୃତ୍ୟ ମଧ ତାଣ୍ଡବ ନୃତ୍ୟ ଅନୁକୃତି । ଚଢେୟା ମୁଖା ବ୍ୟବହାର କରୁଥବବା ସମ୍ପ୍ରତି କୌଣସି ଦଣ୍ଡନାଟରେ ଦେଖାଯାଏ ନାହିଁ । କେବଳ ଛଉ ନୃତ୍ୟରେ ଚଢେୟା-ମୁଖା ଦେଖାଯାଏ ।

ପୋଷାକ ଓ ଅଳଙ୍କାର ମଧରେ ଚଢେୟା କାଛି, କଟିରେ ନବରଙ୍ଗିଆ, ଘାଗୁଡିମାଳ, ଜଙ୍ଘିଆ, ମୁହଁରେ ଲମ୍ବା କଳି, ପଗଡିରେ ବିଭିନ୍ନ ପକ୍ଷୀର ପର, କର୍ଣ୍ଣରେ କୁଣ୍ଡଳ, ବେକରେ ମାଳିର ହାର, କାନ୍ଧରେ ପଇତା, ଲଲାଟରେ ସିନ୍ଦୁର ଟିପା, ବାହୁରେ ବାଜୁ ବନ୍ଧ, ହାତରେ ଓ ଗୋଟିଏ

ଗୋଡରେ ଲୌହ-ବଳା ବା କଙ୍କଣ ବ୍ୟବହାର କରେ । ଚଢେୟାଣୀ ମଧ ଚଢେୟା ଅନୁରୂପ ଅଧିକାଂଶ ପୋଷାକ ଓ ଅଳଙ୍କାର ପରିଧାନ କରିଥାଏ ।

ସହ ଢୋଲ-ବାଦକ ବେଶ ଘରକୁ ଯାଇ ଢୋଲବାଦ୍ୟ ମାଧମରେ ଚଢେୟାକୁ ପୃଷ୍ଠପଥ ଦେଇ ମଞ୍ଚ ଉପରକୁ ପାଛୋଟି ଆଣିବାପରେ ସେ ତାହାର ପରିଚୟ ଆପେ ଦେଇଥାଏ ଏବଂ ଏଥିରେ ଥାଏ ପୋଷାକର ବର୍ଣ୍ଣନା-

ଆସେ ଚଢେୟା ଧୀରେ
ଫାଶ ଧରିଅଛି କରେ ହେ,
ଆସେ ଚଢେୟାଧିରେ । ପଦ ।
ପକ୍ଷୀମାନଙ୍କୁ ବାହୁରେ ବାନ୍ଧି
କି ଯତନରେ, ଗରଗଡ ମାଳି-ଡରେ
ମଣ୍ଡି ହୋଇଛି ଗଳାରେ ।।
ଲଙ୍ଗ କାଛ କଟିଦେଶେ
ପିନ୍ଧିଅଛି ବୀର ବେଶେ,
ଘଣ୍ଟି ଘାଗୁଡିର ବେପେ ମଧୁଅଛି ଗଗନରେ ।। (୫୭)

ଏହାପରେ ସେ ଚଢେୟାଣୀକୁ ଡାକେ-

ଦାରଚାକ୍ଷୀ ହେମା ଯେମା
ମୋର କୁଳ ଚନ୍ଦ୍ରମା,ଆସ ଆସରେ ।
ତୋର କିଙ୍କିଣୀ ନାଦ
ମୋର ଅମର ଔଷଧ,ଆସ ଆସରେ ।। (୫୮)

ଏଭଳି ଡାକରେ ଚଢେୟାଣୀ ନ ଶୁଣନ୍ତେ ଚଢେୟା ପୁଣି ଉଚ୍ଚସ୍ୱରରେ

ଡାକିଛି-

ଦାମର ଦାଧଣ୍ଡରେ ସଡି
ମଣିଚନ୍ଦ୍ରପୁଅ ଦିଅଇ ରଚି
ମୋର ଚଢେୟାଣୀ,ଆସ ଚଅଳେ ଦଉଡି ।।
ଖଞ୍ଜନାକ୍ଷୀ ଚନ୍ଦ୍ର-ମୁହିଁ
ଚଥମୋ ଜୀବନ ହେ ପ୍ରାଣ ମଦୀ

ଜୀବଜୀବନ ଲୋ, ତୋ ବିନା ନଯିବି ଡାହିଁ ।।
ଗତ ହେଲା ଷଡମାସ
ବନସ୍ତେ ଆସିଲି ପକ୍ଷୀ ମାରିତ
ଭଜନେ ଶୟନେ,ଅଛୁ ସ୍ୱପନେ ମୋର ପାଣ ।। (୫୯)

ଚଢେୟାର ବିନମ୍ର ନିବେଦନରେ ଚଢେୟାଣୀ ଆସେ ଏବଂ ନିଜର ପରିଚୟ ଦିଏ- ''ଖର ଖର ଚାଲି କରି, ବାହାର ହେଇଲା ଚଢେୟା ନାରୀ କିଲୋ, କାଖରେ ଟୋକେଇ ଧରି'' । ଦୀର୍ଘ ଛଅ ମାସର ବ୍ୟବଧାନ ପରେ ପ୍ରାଣପ୍ରିୟା ଚଢେୟା ସହିତ ସାକ୍ଷାତ ହୋଇଛି । ମାନ, ଅଭିମାନ, ସନ୍ଦେହ ଏବଂ ଅବିଶ୍ୱାସ ପ୍ରକାଶ କରେ, ଝଗଡା ହୁଏ । ଚଢେୟା ପ୍ରିୟା ଚଢେୟାଣୀର ରାଗ ରୋଷ, ଅଭିମାନ, ମଧୁର ବଚନ ଦ୍ୱାରା ଶେଷ କରେ ଏବଂ ଅନେକ ପ୍ରତିଶ୍ରୁତି ଦିଏ । ତାପରେ ଚଢେୟାଣୀ ଅନୁରୋଧ କରେ -

ପ୍ରାଣଧନ ହେ, ଶୁଣ ମୋର ଗୁହାରୀ
ମାରି ଆଣି ଦିଅ କୋକିଳ ସାରୀ ।ପଦ।

* * *

ନୀଳକଣ୍ଠ ପକ୍ଷୀ ପୃଚ୍ଛ ନୃଙ୍କ ଦେଖି
ମନଗଲା ଲାଖି ମରୁଛି ଝୁରି
ରାନ୍ଧି ପରଷିବି ଆଣିଦିଅ ବେଗି
ଢବିନନ୍ଦ୍ର ଭାବି ପଦ ଉଚ୍ଚାରି ।। (୬୦)

-- ଚଢେୟା ଶିକାରକୁ ଯାଏ । ସଚେତନ ଚଢେୟା କୋଇଲି, ସାରୀ, ମୟୂର, ଶୁଆ କିମ୍ବା କପୋତ ନମାରି ଏକ ସାଧାରଣ ଚଢେଇ ଶିକାର କରି ଆଣିବାରୁ ଚଢେୟାଣୀ ସନ୍ତୁଷ୍ଟ ହୋଇନାହିଁ । ତାହାର ଦରକାର ନୀଳକଣ୍ଠ ପକ୍ଷୀ । ଏହାକୁ ମାରି ରାନ୍ଧିବ । ପଞ୍ଚପକ୍ଷୀ ଶିକାର କଲେ ତାର ପରିଣତି ସମ୍ପର୍କରେ ଚଢେୟା ସୂଚାଇ ଦେଇଛି । ଚଢେୟାଣୀ ମନରେ ପରିବର୍ତ୍ତନ ଆସିଛି । ତାପରେ ଚଢେୟା କହିଛି-

ଶୁଣ ହେମା ଜେମା ବାଣୀ
ଧରିଆଣିଅଛି ଗୋଟିଏ ରଣୀ,
ମୋର ଚଢେୟାଣୀ,ଧରିକୁ ଦେସର ପାଣି ।
ଚଢେୟାଣୀ- ଖାଇବାକୁ ମନ କେତେ
ମସଲା ନାହିଁ କି ମାଇପା ନାହିଁ,
ମୋର ଗୁଣମଣି, ରାନ୍ଧିବି ମୁହିଁ କେମନ୍ତେ ।।

ଚଢେୟା-ଭେଳେଇ ବହୁତ୍ତ ହେତେ
ହେଇଁ ଅଛା ଆସି ଉଷିବ ତୋତେ,
ଦଣ୍ଡ ଚଢେୟାଣୀ, ପ୍ରାଣରେ ମାରିବି ତୋତେ ॥
ଚଢେୟାଣୀ- ଘମଣ୍ଡ ବହୁଛ ହେତେ
ଗୃହେ ଅନ୍ନ ନାହିଁ ନାଚୁଛ ଏତେ,
ଘର ନାହିଁ ତୋର, ବାସ ଭରିଛ ବନସ୍ତେ ॥ (୬୧)

ଏହିପରି ଉଭୟଙ୍କ ମଧ୍ୟରେ କଳି ହୁଏ । ଏହା ଦର୍ଶକଙ୍କୁ ଯଥେଷ୍ଟ ଆମୋଦ ଦେଉଥିଲେ ମଧ୍ୟ ନିତିଦିନିଆ ଦାରିଦ୍ର୍ୟ ଜୀବନର ପ୍ରତିଛବି ଏଥିରୁ ମିଳେ । ପୁଣି ମିଳିମିଶି ଯାଇଛନ୍ତି । ପଞ୍ଚପକ୍ଷୀ (କୋଇଲି, ସାରୀ, ଶୁଆ, ମୟୂର, କପୋତ) ନମାରିବା ପାଇଁ ଶିବ ଆଦେଶ ଦେଇଛନ୍ତି । ଏହାର ବ୍ୟତିକ୍ରମ ହେଲେ ମୃତ୍ୟୁ ଅନିବାର୍ଯ୍ୟ । ଶିବଙ୍କ ଆଦେଶ ଓ ସତର୍କକୁ ଚଢେୟା ଶିରୋଧାର୍ଯ୍ୟ କରିଅଛି । ଏହାପରେ ଚଢେୟା ଯାଉଛି ଜଙ୍ଗଲକୁ ଚଢେଇ ଶିକାର ପାଇଁ । ଚଢେୟାଣୀଠାରୁ ବିଦାୟ ନେଉଛି -

ଚଢେୟା-ବନେଯିବି ପ୍ରାଣ ସହି
ଧରି ଆଣିଦେବି ପକ୍ଷୀଙ୍କି ଯାଇ,
ବିକିବ ଯତନେ ଗ୍ରାମେ ଗ୍ରାମେ ତୁମେ ଯାଇ ॥
ଚଢେୟାଣୀ-ଶୁଣ ଆହେ ପ୍ରାଣନାଥ
ନମାର ସାରୀ, ଶୁଆ, ରାଜହଂସ,
ମୟୂର,କପୋତ କରିଛ ଶିବେ ଶପଥ ॥
ଚଢେୟା- ଚଢେୟା ବୀର ମୋ ନାମ
ପକ୍ଷୀ ଚଞ୍ଚୁ ମାରି ଧରେ ଜୀବନ
କିପରି ଛାଡିବି, ସେହି ଭଲ ପକ୍ଷୀମାନ ॥
ଚଢେୟାଣୀ- ମୋ ରାଣ ଶୁଣ ହେ ନାଥ
ହେବେ ନମାରିବ ଏହି ପକ୍ଷୀତ,
ଶିବ ଶିବା ପାଶେ,କରିଅଛ ହେ ଶପଥ ॥

ପ୍ରତିଜ୍ଞାବଦ୍ଧ ଚଢେୟା ଜଙ୍ଗଲର ପ୍ରାକୃତିକ ଶୋଭା ଏବଂ ପରିବେଶ ମଧ୍ୟରେ ବିଭୋର ହୋଇ ଭୁଲିଯାଇଛି ଚଢେୟାଣୀର ସତର୍କ ବାଣୀ । ଗୋଟାଏ ମୟୂର ଶିକାର କରିବା ଫଳରେ ତାକୁ ସର୍ପ ଦଂଶନ କରେ ଏବଂ ସେ ମୃତ୍ୟୁ ମୁଖରେ ପତିତ ହୁଏ । ଅନେକ ସମୟ ଧରି ନ ଫେରିବାରୁ ଚଢେୟାଣୀ ଖୋଜିବାକୁ ଯାଇଛି । ଘଟଣା ସ୍ଥଳରେ ପ୍ରବେଶ କରି ଯାହା ଦେଖିଛି,ନିଜକୁ ବିଶ୍ୱାସ କରି ପାରିନାହିଁ । ଚଢେୟାର ମାଂସ ଲୋଭ ପରିଣାମରେ ମର୍ମାହତ ଚଢେୟାଣୀ ବାହୁନି ବାହୁନି କାନ୍ଦୁଅଛି । ଏହି କ୍ରନ୍ଦନରେ ଯେପରି ଅଭିମାନ ଓ ଅନ୍ଧକାର ଭବିଷ୍ୟତ ରହିଛି-

ପର୍ବତ ଶିଖରେ କଳା ବାହୁଟିଆ
ଚୂଆରେ ନ ପିଏ ପାଣି ।
ଯୁବା ଦେହ ମୋର କିପରି ଧରିବି
କାହିଁଗଲ ଗୁଣମଣି ହେ ।
ମୋ ସାଆନ୍ତ,
ମତେ କଥାପଦେ ହେଲେ କହନ୍ତ ।।

ପର୍ବତ ଶିଖରେ ମହାଲିମ୍ବ ଗଛ
ଖୁଣ୍ଟିଲେ ବହୁଛି ଖୀର
ଏକାଳେ ଏକାନ୍ତେ କିପରି ବଞ୍ଚିବି
ଧନ ତ ହେଲେ ଅନ୍ତର ହେ,
ମୋ ସାଆନ୍ତ ।।
ପର୍ବତ ଶିଖରେ ରଙ୍ଗ କୁନ୍ଦଲତା
କି ରଙ୍ଗେ ଫୁଟିଛି ଫୁଲ
କାହାସଙ୍ଗେ ମୁଁ ଯେ ଏଦିନ ସାରିବି
ଧନ ମୋତେ ଛାଡିଗଲ ଯେ,
ମୋ ସାଆନ୍ତ ।। (ସଂଗୃହୀତ)

ଚଢେୟାଣୀର ବିକଳ କ୍ରନ୍ଦନ ଏବଂ ପ୍ରାର୍ଥନାରେ ବିଚଳିତ ହୋଇ ଶିବ/ବନଦୁର୍ଗା ଆବିର୍ଭୂତ ହୋଇ ଚଢେୟାକୁ ଜୀବଦାନ କରିଛନ୍ତି । ଜୀବନ ଲାଭପରେ ଚଢେୟା ଓ ଚଢେୟାଣୀ ଶିବ/ବନଦୁର୍ଗାଙ୍କୁ ସ୍ତୁତି ଓ କୃତଜ୍ଞତା ଜ୍ଞାପନ କରି ପକ୍ଷପକ୍ଷୀ ନ ମାରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି ।

କେତେକ ଦଣ୍ଡନୃତ୍ୟରେ ଚଢେୟାର ଦୁଇଟି ସ୍ତ୍ରୀ ଥିବା ଦେଖାଯାଏ । ସଉତୁଣୀ କଳି, ପାରସ୍ପରିକ ଈର୍ଷା, ସ୍ୱାମୀ ନିକଟରେ ଅଭିମାନ, ରାଗରୋଷରେ ଉଭୟଙ୍କର ଅବସ୍ଥା କିପରି ଶୋଚନୀୟ ଓ ହାସ୍ୟାସ୍ପଦ ତାହା ପ୍ରଦର୍ଶନ କରିବା ଏହାର ଲକ୍ଷ୍ୟ ।

କାହାଣୀକୁ ଗତିଶୀଳ କରିବା ପାଇଁ ଅନେକ ସହ ଚରିତ୍ରର ସଂଯୋଜନା ମଧ୍ୟ ଏଥିରେ କରାଯାଇଥାଏ । ଏହାଦ୍ୱାରା ମୌଳିକ ଚଢେୟା ନୃତ୍ୟର ଅଭିନୟ ବିଭିନ୍ନ ଦଣ୍ଡନାଟରେ ଭିନ୍ନ ଭିନ୍ନ ପ୍ରକାରର ହୁଏ । ଏଥି ମଧ୍ୟରେ ଚଢେୟା-ଭାଇର ବିଧବା-ବିବାହ ପ୍ରସ୍ତାବ ଉଲ୍ଲେଖ ଯୋଗ୍ୟ ।

ଦିଅର- ଏକା ହୋଇଲ ଦୁନ୍ଦହୀ, କାନ୍ଦୁ କାହିଁକି ଲୋ,
କେଉଁଠାରେ ଛାଡିଦେଲୁ ମୋର ଭାଇକି ।

ଚଢେୟାଣୀ- ପୋଡିଯାଉ ଥୁଆଖୋଇ ସୁଆଉ ତୋଉରେ
ଅଗାଧ ସମୁଦ୍ରେ ଭେଳା ବୁଡିଛି ମୋର ।।
ମରି ପଡିଅଛି ଭାଇ, ତିଳେ ହେଲେ ବାଧୁ ନାହିଁ
ଆଉ ବୋଲୁ ମୋତେ ନେଇ କରିବୁ ଘରରେ ।।

ଦିଅର- କାହିଁକି ଲୋ କୁନ୍ଦଦନ୍ତୀ, ହେଉନୁ ବାଇଲୋ,
ମଲାଠାରୁ ଆଉ କି ସେ ଆସିବ ଭାଇଲୋ ।
ମଲାଯେବେ ଭଲହେଲା
ଆମର କଳଙ୍କ ଗଲା,
ତୋ କରମେ ଲେଖାଥିଲା ଲଭିବି ମୁହିଁଲୋ ।।

ଚଢେୟାଣୀ- ସୁଆଉ ନ କର ଆଉ
ମୋ ପାଶୁ ଯା' ଯାରେ
ବଡଭାଇ ମଲା ତୁ ତ ହୋଇଲୁ ରାଜାରେ ।। (୬୨)

ଦୁଇଭାଇଙ୍କର ଅତୀତର କୌଣସି କଳିର ପ୍ରତିଫଳନ ଏହି ସମୟରେ ସାନଭାଇଠାରେ ପ୍ରତିକ୍ରିୟା ସୃଷ୍ଟି କରିଛି । ଯାହାର ଉଦାହରଣ ସାମ୍ପ୍ରତିକ କାଳରେ ନିମ୍ନ ସ୍ତରରେ ରହୁଥିବା ବ୍ୟକ୍ତିଙ୍କଠାରେ ସ୍ପଷ୍ଟ ପରିଦୃଷ୍ଟ । ଚଢେୟା ଭାଇଠାରେ ମଧ ଏହା ପ୍ରତିଫଳିତ -

ମୋର ଭାଇରେ,ମୋର ଭାଇରେ
ମତେ କାହିଁଗଲୁ ଛାଡିରେ
ତୋର ଘରଣୀ କାହାକୁ ଦେଇରେ ।।

ଭେଣ୍ଡିଆ ବୟସ ବହି
ପରିହାସ ଦିନେ କରିଥିଲି ମୁହିଁରେ ।
ଦୁଷ୍ଟ ତୁହି ତ ମତେ
ମାରିଥିଲୁ ନାତେ
ମୋର ଦେହୁଁ ପ୍ରାସ ଛାଡୁ ନାହିଁରେ ।।

ନୂଆ ବୋହୂକୁ ମୁଁ ନୂଆ ନୂଆବେଳେ
ଅଳପେ ଦେଲି ଅନାଇ ।
ସେଥିପାଇଁ କେତେ କଳି କରୁଥିଲୁ
ମୁଁ ଏବେ ହେବି ଥୁଆ ଥୋଇରେ ।।

ହାଣ୍ଡିକ ଭାତକୁ ରାନ୍ଧି ପରଷିଲା
ବଳେ ତତେ ନ ଅଣ୍ଟଇ
ହାଣ୍ଡିଶିଆ ତୁତ ମଲୁ ଯେବେ
ମୁଁ ତ ଏବେ ରହିବି ଅଚିନ୍ତା ହୋଇରେ ।। (୬୩)

କାହାଣୀକୁ ଅଧିକ ରସାଳ କରିବା ପାଇଁ ଚଢେୟା ମୃତ୍ୟୁର ତଦନ୍ତ ପୋଲିସ୍ ବା ଜମାଦାର ଦ୍ୱାରା କରାଇବା, ପୋଷ୍ଟମର୍ଟମ କିମ୍ବା ଗୁଣିଆ ବା ସାପୁଆ ଦ୍ୱାରା ବିଷ ଝାଡ଼ିବା ଦୃଶ୍ୟ ଆମୋଦଦାୟକ ହେଲେ ହେଁ ତତ୍କାଳୀନ ସମାଜର ଏକ ପ୍ରତିଛବି ଏବଂ ଇଙ୍ଗିତ ଥିବା ମନେହୁଏ । ଏହାର ଅବିକଳ ପ୍ରଭାବ ଗ୍ରାମ୍ୟ କଳାକାରମାନେ ସୃଷ୍ଟି କରିଛନ୍ତି ନୃତ୍ୟ ମାଧମରେ । ସାମ୍ପ୍ରତିକ କାଳର ବାସ୍ତବଧର୍ମି-ନାଟକକୁ (Realistic play) ପ୍ରଭାବିତ କରିଥିବା ଆଚମ୍ୱିତ ନୁହେଁ । ଚଢେୟା,ଚଢେୟାଣୀ ଏବଂ ଭାଇର କଥୋପକଥନ ହାସ୍ୟରସ ଅନ୍ତର୍ଗତ ହୋଇଥିଲେ ମଧ ସମାଜ ପ୍ରତି ଏକ ଦିଗ୍‌ଦର୍ଶନ ଏଥିରେ ଲୁକ୍କାୟିତ ଥିବା ସ୍ପଷ୍ଟ ।

ପ୍ରତ୍ୟେକ ଦଣ୍ଡଦଳରେ ଗୋଟିଏ ପାଶ ସବୁବେଳେ ଥାଏ । ତାହା ନାଗପାଶ ହୋଇଥିବା ଦଣ୍ଡଭୋକ୍ତା ମାନେ ପ୍ରକାଶ କରନ୍ତି କିନ୍ତୁ ଏହା ବାସ୍ତବରେ ଚଢେୟାର ପକ୍ଷୀଧରା ପାଶ । ଏହି ଚଢେୟା ଓ ଚଢେୟାଣୀ ନିଷାଦ ବା ଚଣ୍ଡାଳ ଶ୍ରେଣୀୟ ।

## ପତ୍ରଶଉରା, ପତ୍ରଶଉରାଣୀ

ଏମାନେ ମାନବ ସମାଜର ଆଦିମ ଅଧିବାସୀଙ୍କ ମଧରେ ଅନ୍ୟତମ । ଉଭୟ ଶଉରା ଓ ଶବର ଏକ ଶ୍ରେଣୀୟ ହୋଇଥିଲେ ହେଁ ଦଣ୍ଡ ନାଟରେ ଏମାନେ ସ୍ୱତନ୍ତ୍ର ଏବଂ ଏମାନଙ୍କ ନୃତ୍ୟ ଓ ସଙ୍ଗୀତରେ ମଧ ପାର୍ଥକ୍ୟ ପରିସ୍ଫୁଟିତ । ଏଣୁ ବାସସ୍ଥାନ ଭେଦରେ କଳିଙ୍ଗର ଶବର ସମ୍ପ୍ରଦାୟକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ- ପାର୍ବତ୍ୟ,ଆରଣ୍ୟକ ଓ ଉପକୂଳବାସୀ । ଏମାନଙ୍କ ବୃତ୍ତି ଭେଦ ମଧ ପୃଥକ । ଦଣ୍ଡନାଟ ପରମ୍ପରାରେ ପତ୍ରଶଉରାକୁ ଆରଣ୍ୟକ ଶ୍ରେଣୀଭୁକ୍ତ କରାଯାଇଛି ।

ଆଧୁନିକ କାଳରେ ଏମାନଙ୍କ ନୃତ୍ୟ ଓ ସଙ୍ଗୀତରେ ଯେଉଁ ପ୍ରକାରର ସ୍ୱେଚ୍ଛାଚାରିତା ଦେଖିବାକୁ ମିଳେ, ସେଥିରୁ ଉପକୂଳବର୍ତ୍ତୀ ଅଞ୍ଚଳ ଶବରମାନଙ୍କ ନୃତ୍ୟ ପ୍ରଭାବ ରହିଥିବା ମନେହୁଏ । ପୂର୍ବରୁ ଦଣ୍ଡନୃତ୍ୟର ପ୍ରାରମ୍ଭ ସମୟ ୮/୯ମ ଶତାବ୍ଦୀ ବୋଲି ନିର୍ଣ୍ଣୟ କରାଯାଇଥିବା କୁହାଯାଇଛି । ଶୈବଧର୍ମୀଙ୍କ ଦ୍ୱାରା ବାସନ୍ଦ ହୋଇ ବୌଦ୍ଧଧର୍ମାବଲମ୍ବୀଙ୍କ ମଧରୁ ଅଧିକାଂଶ ନିବିଡ ଅରଣ୍ୟାନୀ ମଧରେ ଶଉରା ସମ୍ପ୍ରଦାୟ ସହିତ ବାସ କରି ବୈବାହିକ ସମ୍ପର୍କ ସ୍ଥାପନ କରି ଏକ ନୃତ୍ୟ,ସଙ୍ଗୀତ ପରମ୍ପରା କାଳକ୍ରମେ ଆରମ୍ଭ କରିଥିବା ସମ୍ଭବ । କସ୍ମିନ୍ କାଳେ ଶଉରା/ଶବର ସମ୍ପ୍ରଦାୟ ତାନ୍ତ୍ରିକ ନ ଥିଲେ । ଏଣୁ ବୌଦ୍ଧ ଧର୍ମିଙ୍କ ତନ୍ତ୍ର ମାର୍ଗ ଏହି ସମାଜ ମଧରେ ଅନୁପ୍ରବେଶ ଘଟିଥିବା ମନେହୁଏ । ଶବର-କନ୍ୟାକୁ ଏହି ଅସ୍ପୃଶ୍ୟ ଶ୍ରେଣୀ ବିବାହ କରିବା ପରେ ଜାତ ସନ୍ତାନମାନେ ଶଉରା, ଶଉରାଣୀ ନାମଧାରଣ କରିଥିବା ସମ୍ଭବ । ''ପତ୍ର ଶଉରାଣୀ କଥାଟାର କେବଳ ପ୍ରାଚୀନ ଶାସ୍ତ୍ର ସମ୍ମତା ପର୍ଣ୍ଣଶର୍ବରୀ ସାଧନାରେ ଲେଖାଅଛି- ପର୍ଣ୍ଣଶବର୍ଯ୍ୟୈ ନମଃ ।

ପର୍ଣ୍ଣଶର୍ବରୀ ସାଧନମ୍ମୃତ୍ୟତେ । xx ଓଁ ପିଶାଚି ପର୍ଣ୍ଣଶର୍ବରୀ ସର୍ବମାରି ପ୍ରଶମନ ସ୍ୱାହା, ତତୋ ଯଥାବଦ୍ ବିସର୍ଜ୍ୟ ଯଥାସୁଖଂ ବିହରେଦିତି ।''(୬୪) ଏହାଛଡା ଆର୍ଯ୍ୟ ପର୍ଣ୍ଣଶର୍ବରୀରେ ତାରାଧାରିଣୀ ମନ୍ତ୍ରର ଉଲ୍ଲେଖ ଅଛି । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ମନ୍ତ୍ର ସାଧନା ପାଇଁ ଗୋଟିଏ ଗୋଟିଏ ରୂପ ପରିକଳ୍ପନା କରାଯାଇଛି । ସେଥିମଧ୍ୟରୁ ପର୍ଣ୍ଣଶର୍ବରୀ ଶକ୍ତିରୂପା ଦେବୀ । ଏହି ଦୃଷ୍ଟିରୁ ଦଣ୍ଡନାଟ ପରମ୍ପରାରେ ପତ୍ରଶଉରା ଓ ପତ୍ରଶଉରାଣୀଙ୍କ ନୃତ୍ୟ ସଂଯୋଜନା କରାଯାଇଛି। ଦଣ୍ଡନାଟରେ ଯେଉଁ ଭୋକ୍ତାମାନେ ଅଂଶ ଗ୍ରହଣ କରନ୍ତି ସେମାନେ ଗୋଟିଏ ଗୋଟିଏ ମନ୍ତ୍ରର ଦେବୀ । ଅଭିଜ୍ଞ ଦଣ୍ଡଭୋକ୍ତାଙ୍କ ମତରେ ଦଣ୍ଡନାଟରେ ଦଣ୍ଡଭୋକ୍ତାଙ୍କ ନୃତ୍ୟ ମନୋରଞ୍ଜନ ଧର୍ମୀ ହେଲେ ମଧ୍ୟ ସେଥିରେ ତନ୍ତ୍ର-ବାଦ ନିହିତ । ଏବଂ ଏହାର ଅଧିଷ୍ଠାତ୍ରୀ ହେଲେ ଦେବୀ । ତେଣୁ ଦଣ୍ଡ ନାଟର ସମସ୍ତ ଭୋକ୍ତା ସ୍ତ୍ରୀ ଲୋକ ହେବା କଥା । କେତେକ ସ୍ଥଳରେ ମନ୍ତ୍ର ସାଧନା ଦ୍ୱାରା ଦେବୀ ଓ ସାଧକ ଏକ ହୋଇଯାନ୍ତି । ତେଣୁ ପୁରୁଷ ବ୍ୟକ୍ତିଙ୍କ ପ୍ରଭାବ ଅକ୍ଷୁର୍ଣ୍ଣ ରହେ । ଫଳରେ ଦଣ୍ଡନୃତ୍ୟରେ ସାଧକ ଚଢେୟା, ସଉରା, ଯୋଗୀ ହେଲେ , ଦେବୀ ଚଢେୟାଣୀ, ସଉରାଣୀ, ଯୋଗୀଆଣୀ/ଯୋଗିନୀ ହୁଅନ୍ତି । କିନ୍ତୁ କୌଣସି ସ୍ତ୍ରୀ ଲୋକଙ୍କୁ ଏଥିରେ ଅଂଶଗ୍ରହଣ କରିବାକୁ ସୁଯୋଗ ଦିଆଯାଇନି । ସମାଜର ପବିତ୍ରତା ରକ୍ଷାକରିବା ଉଦ୍ଦେଶ୍ୟରେ ସେମାନଙ୍କୁ ଆଡେଇ ଦିଆଯାଇଛି । ଲଜ୍ୟା ଦୃଷ୍ଟିରୁ ହେଉ କିମ୍ବା ଅନ୍ୟ କୌଣସି କାରଣରୁ ହେଉ ପ୍ରକୃତ ଦଣ୍ଡପୂଜାରେ ସ୍ତ୍ରୀର ଭାଗ ନଥାଏ । କିନ୍ତୁ ପୁରୁଷମାନେ ସ୍ତ୍ରୀ ଭୂମିକାରେ ଅଭିନୟ କରିପାରିବେ ।

ଖ୍ରୀ: ୯ମ ଶତାବ୍ଦୀରୁ ୧୧ଶ ଶତାବ୍ଦୀ ମଧ୍ୟରେ ତନ୍ତ୍ର-ମାର୍ଗ ପ୍ରସାରିତ ହୋଇ ଥିବା ଦେଖିବାକୁ ମିଳେ । ବହୁ ହିନ୍ଦୁ ଓ ବୌଦ୍ଧଧର୍ମାବଲମ୍ବୀ ଅନେକ ତନ୍ତ୍ରଶାସ୍ତ୍ର ରଚନା କରି ସାଧାରଣ ଜନତାକୁ ନିଜ ନିଜ ଧର୍ମ ପ୍ରତି ଆକର୍ଷିତ କରିବାକୁ ଲାଗିଲେ । ସେଥି ମଧ୍ୟରୁ କୁହୁକ ବିଦ୍ୟା, ଫଳିତ ଜ୍ୟୋତିଷ, ବନସ୍ପତି ବିଦ୍ୟା, ହସ୍ତ ପରୀକ୍ଷା, ଜାତକ ପ୍ରସ୍ତୁତି, କପାଳ-ରେଖାରୁ ଅତୀତ ଓ ଭବିଷ୍ୟତ ବାଣୀ ପ୍ରଦାନ କରିବା, ଗୁଣି ଗାରେଡି ପ୍ରମୁଖ ପ୍ରଧାନ ।

ପତ୍ରଶଉରାଣୀ ବା ପର୍ଣ୍ଣଶର୍ବରୀ ପରିକଳ୍ପନା ଏବଂ ବିକାଶ ଏହି ସମୟରେ ହୋଇଥିବା ସମ୍ଭବ । ପର୍ଣ୍ଣଶର୍ବରୀ ଜଣେ ତନ୍ତ୍ର ଦେବୀ ଏବଂ ମହାମାରୀ ଓ ଅନ୍ୟାନ୍ୟ ଭୀଷଣ ବ୍ୟାଧିନାଶିନୀ । ଦଣ୍ଡନୃତ୍ୟର ପ୍ରତ୍ୟେକ ଚରିତ୍ର ତନ୍ତ୍ର ଶାସ୍ତ୍ରର ଜଣେ ଜଣେ ଦେବୀ -ପ୍ରତୀକ ଏବଂ ସେମାନେ ତତ୍କାଳୀନ ସମୟରେ ଜନସାଧାରଣଙ୍କଠାରୁ ପୂଜା ଗ୍ରହଣ କରୁଥିଲେ । ପତ୍ରଶଉରାଣୀ ସଦୃଶ୍ୟ ଯୋଗିନୀ ପୂଜା ମଧ୍ୟ ଓଡିଶାରେ ପ୍ରାଚୀନ ଯୁଗରୁପ୍ରଚଳିତ । ଦଣ୍ଡନାଟର ଏଇ ସମସ୍ତ ଚରିତ୍ର ସାଧାରଣତଃ ମଧ୍ୟ ରାତ୍ର ସମୟରେ ନୃତ୍ୟାଭିନୟ କରିଥାନ୍ତି । ଏଥିରେ ଉଦ୍ଦଣ୍ଡ ଲକ୍ଷ୍ୟ କରାଯାଏ । ଶଉରାଣୀ ଚରିତ୍ର ସମ୍ପର୍କରେ ଉପରୋକ୍ତ ତଥ୍ୟ ମିଳୁଥିବା ବେଳେ ପତ୍ରଶଉରାକୁ ଆର୍ଯ୍ୟ ସଭ୍ୟତା ଦ୍ୱାରା ପରିପୁଷ୍ଟ ହୋଇଥିବା ଏକ ଅନାର୍ଯ୍ୟ ଭାବରେ ଗ୍ରହଣ କରାଯିବା ଠିକ୍ ମନେ ହୁଏ । ଏହି ଅନାର୍ଯ୍ୟ ଶୈବଧର୍ମୀଙ୍କ ଦ୍ୱାରା ବିତାଡିତ, ଲାଞ୍ଛିତ ବୌଦ୍ଧଧର୍ମୀ ବ୍ୟତୀତ ଅନ୍ୟ

କେହିନୁହେଁ । ଏମାନେ ଶାବରୀ ସଂସ୍କୃତି ମଧ୍ୟରେ ନିଜକୁ ସାମିଲ କରିନେଇ ସ୍ୱତନ୍ତ୍ର ଭାବରେ ସୁସଂସ୍କୃତ ସଭ୍ୟତାର ବିକାଶ ସାଧନ କଲେ । ଢେଙ୍କାନାଳ, ବୌଦ, ସୋନପୁର, ଫୁଲବାଣୀ, ବଲାଙ୍ଗିର ପ୍ରଭୃତି ଜିଲ୍ଲାମାନଙ୍କର ପତ୍ର ଶଉରା, ପତ୍ର ଶଉରାଣୀ ନୃତ୍ୟ ଅନେକାଂଶରେ ପିଶାଚ ପିଶାଚୁଣୀ ପରି ଅତି ଭୟଙ୍କର ଏବଂ ଉଗ୍ର । ଢୋଲ ବାଦ୍ୟ ଓ ଝାଞ୍ଜ ତାଳ ସେହି ସମୟରେ ପରିବେଶକୁ ଅତି ଗମ୍ଭୀର କରେ-

ସଉରାଣୀ ସହ ସଉରା ନାଚଇ
          କିଳିକିଳା ରାବ ଦେଇ
ପିଶାଚ ପିଶାଚୀ ନାଚନ୍ତି କି ହସି
          ଆଷେ ହୋଇ ଧରାଧରି । (ସଂଗୃହୀତ)

ଏହି ପଦରୁ ଶଉରା ଓ ଶଉରାଣୀ ନୃତ୍ୟ ସମ୍ପର୍କରେ ସୂଚନା ମିଳେ ।

ପତ୍ରଶଉରା ଦେଖିବାକୁ କଳା ଏବଂ ଦ୍ରାବିଡ ଶ୍ରେଣୀୟ । ଏମାନଙ୍କ ବାସ, ବେଶଭୂଷା, ଖାଦ୍ୟପେୟ, ଭାଷା ପ୍ରଭୃତି ସଭ୍ୟତା ରୂପେ ଅଭିହିତ ହେବାବେଳେ ଆମୋଦପ୍ରମୋଦ, ନୃତ୍ୟଗୀତାଦିରେ ସଂସ୍କୃତି ପ୍ରତିଫଳିତ ହୋଇଥାଏ । ପତ୍ର ଶଉରା ଓ ଶଉରାଣୀଙ୍କ ଗଳାରେ ହାର, ହରେକ ରଙ୍ଗର ମାଳି ପ୍ରାକୃତିକ ବୃକ୍ଷଲତାରୁ ସଂଗୃହୀତ । ''ନାନା ବର୍ଣ୍ଣର ପକ୍ଷୀପର, ଫୁଲ, ପତ୍ର, ତୃଣ ଇତ୍ୟାଦି ତାଙ୍କର ଅଳଙ୍କାର । ସର୍ବପେକ୍ଷା ଅଧିକ ଆକର୍ଷଣୀୟ ହେଲା ମୁଣ୍ଡ କୁଡାରେ ବ୍ୟବହୃତ ପାନିଆଁ ସାଙ୍ଗକୁ ଫୁଲପେଣ୍ଡା । ତା ଛଡା ଅନ୍ୟାନ୍ୟ ରଙ୍ଗର ଶୋଭା ବର୍ଦ୍ଧକ ଖଡୁ, ବଳା, ମୁଦି, ନାଗୁଲ, ନାକଫୁଡିଆ ପ୍ରଭୃତି ରହିଛି । ଏସବୁ ସ୍ତ୍ରୀ ସମାଜର ଅଳଙ୍କାର, ପିତଳ, କିମ୍ବା ରସରେ ତିଆରି । ପୁରୁଷ ଜାତିର ପ୍ରଧାନ ପରିଚ୍ଛଦ ହେଲା ମୟୂରଚୂଳ ବା ବକପକ୍ଷୀର ପଞ୍ଜ । କଉଡି ଖଞ୍ଜା ମାଳି ମଧ ଗଳାଳଙ୍କାର ରୂପେ ଧାରଣ କରିଥାନ୍ତି । କିନ୍ତୁ ସ୍ତ୍ରୀମାନେ ତାହା ଭିଡିଥାନ୍ତି ଅଣ୍ଟାରେ 'କମର ପଟା' କରି'' ।(୬୫) ଉଭୟ ମୁହଁକୁ ବିକୃତ ଭାବରେ ଚିତ୍ରିତ କରନ୍ତି । ଏହି ନୃତ୍ୟରେ ଢୋଲ ବାଦକର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଢୋଲ, ମହୁରୀ, ଝାଞ୍ଜର ତାଳେ ତାଳେ ପାଦ ମିଶାଇ, ବିଭିନ୍ନ ଭଙ୍ଗୀରେ ଅଣ୍ଟା, ପିଠି ଓ ମୁଣ୍ଡକୁ ବିନିଯୋଗ କରି ନୃତ୍ୟ କରନ୍ତି ।

ଢେଙ୍କାନାଳ,ବାଲେଶ୍ୱର,ନୟାଗଡ ଅଞ୍ଚଳମାନଙ୍କର ପତ୍ରଶଉରା ଓ ଶଉରାଣୀ ଭଗବାନ କୃଷ୍ଣ ଓ ଶିବ ପାର୍ବତୀଙ୍କ ଗାଥା ଗାନ କରନ୍ତି । ଅଭିନୟ ସମୟରେ ଆବଶ୍ୟକତା ଦୃଷ୍ଟିରୁ ମନୋରଞ୍ଜନ ସକାଶେ ଝଗଡା କରନ୍ତି । ପରେ ଜଣେ ମଧ୍ୟସ୍ଥ ଦ୍ୱାରା ଏହାର ସମାଧାନ ହୁଏ । କେତେକ ସ୍ଥାନରେ ଜଣେ ଶଉରା ଓ ଶଉରାଣୀ ଘୁଡୁକୀ ବାଦ୍ୟ ମାଧମରେ ନୃତ୍ୟ କରି ବିଭିନ୍ନ ପୌରାଣିକ ଗାଥା ଶୁଣାଇଥାନ୍ତି ।

ଗଞ୍ଜାମ ଓ ଫୁଲବାଣୀରେ ଦଳବଦ୍ଧ ପତ୍ରଶଉରା ଓ ଶଉରାଣୀ ନାଚନ୍ତି । ଶଉରାମାନେ ସର୍କସ ଭଳି ଜଣଙ୍କ ଉପରେ ଜଣେ ଚଢ଼ି ବିକଟ ଶବ୍ଦ ସହ ଭୟଙ୍କର ନୃତ୍ୟ କରନ୍ତି । ଏହା ସାଙ୍ଗକୁ ଢୋଲ ବାଦ୍ୟର ତୀବ୍ରତା ଗମ୍ଭୀର ପରିବେଶ ସୃଷ୍ଟି କରେ । ଗଞ୍ଜାମ ପତ୍ରଶଉରାର ଦଣ୍ଡ ନାଟରେ କୌଣସି ଗୀତ ନ ଥାଏ । କେବଳ କୁହାଟମାନ ମଝିରେ ମଝିରେ ମଝିରେ ଦିଅନ୍ତି । କେତେକ ସ୍ଥାନରେ ଦଳଗତ ନୃତ୍ୟ ମଧ୍ୟରେ ଜଣେ ଯୁବକ ଘୁଡ୍ରୁକୀ ବଜାଏ ।

ଏହି ନୃତ୍ୟରେ ଅନାବଶ୍ୟକ ଭାବରେ ଆଜିକାଲି କେତେକ ଗୀତ ସଉରା ସଉରାଣୀ ମୁଖରେ ଦିଆଯାଇଛି । ଶଉରା ଓ ଶଉରାଣୀ ଗାଆନ୍ତି-

ରୁଦ୍ରଦାନୀ ଓଷା ଦେଖିବାପାଇଁ
ଆସିଲେ ହେ ଭାଇ ଶଉରା ଯୋଡ଼ି ।

*        *        *        *

ବିଶ୍ୱାସେ ମିଳଇ ଉଉରୀ ହର
ତର୍କ କଲେ ରହେ ବହୁତ ଦୂର ।
ଜୟ ଦଣ୍ଡ ରୁଦ୍ର ଦାନୀ
ଅନନ୍ତ ସ୍ୱରୂପୀ ତୁହି
ନିରଯ ଅରକ୍ଷ ଅଟଇ ମୁହିଁ
କରୁଣା ଯେ କଲେ, ସଙ୍କଟୁ ହେବି ମୁଁ ପାରି । (୬୬)

ପତ୍ରଶଉରାର ଇଷ୍ଟଦେବୀ ବନଦୁର୍ଗା । ମୁଖ୍ୟ ପର୍ବ ଶ୍ରାବଣ ପୂର୍ଣ୍ଣିମା । ଏହି ନୃତ୍ୟ ସାଧାରଣତଃ ଚଡ଼େୟା ନୃତ୍ୟ ପରେ ଅନୁଷ୍ଠିତ ହୁଏ । ଅନ୍ୟ ସମୟରେ ବରାଦ ମୁତାବକ ବିଭିନ୍ନ ପର୍ବପର୍ବାଣୀ ଓ ଯାତ୍ରା ସମୟରେ ନୃତ୍ୟ କରିଥାନ୍ତି ।

## ଡୁବୁଡୁବା-

ଦଣ୍ଡ ନାଟରେ ଏହା ଗୌଣ ଚରିତ୍ର । ଚଢ଼େୟା, ଈଶ୍ୱରଙ୍କ ନିକଟରେ କରିଥିବା ଶପଥ ଭୁଲି ମଉଗର୍ବରେ ପକ୍ଷୀକୁଳକୁ ବିନାଶ କରିଥିବାରୁ ଈଶ୍ୱର, ଗୁରୁ ବୃହସ୍ପତିଙ୍କୁ ଜ୍ୟୋତିଷ ରୂପେ ଚଢ଼େୟାକୁ ସତର୍କ କରାଇବା ପାଇଁ ପଠାଇଲେ । ଏହି ଜ୍ୟୋତିଷ ଲୋକଙ୍କଠାରେ ଡୁବୁଡୁବା ରୂପେ ପରିଚିତ । ପ୍ରତ୍ୟେକ ଚରିତ୍ର ଭଳି ଡୁବୁଡୁବା ନିଜର ପରିଚୟ ଚଢ଼େୟା ନିକଟରେ ପ୍ରକାଶ କରିଛି -

ଚଢେୟାର ପାଣେ ହୁଡୁହୁଡୁବା ପରବେଣ
ଭାଇରେ ହୁଡୁହୁଡୁବା ବେଣ
ଷଡିଦି ପକାଇ କହେ ସେ
ବ୍ରହ୍ମ ଜ୍ୟୋତିଷ,କହୁଛି ସତ ।
ଚଢେୟା ବୀର ଯିବ ନାଶ, କହୁଛି ସତ ।।
ଚତୁର୍ଥରେ କେତୁ ଅଛି
ସର୍ପାଘାତ ହେବ ଭାଇରେ,
ସର୍ପାଘାତ ହେବ ।
ଏକାଦଶେ ଗୁରୁ ଅଛି
ବଞ୍ଚିଲେ ବଞ୍ଚିବ, ଚଢେୟା ବୀର
ହୁଡୁକାଳୀ ଓଷା ତୁ କର ଚଢେୟା ବୀର ।।

କାହାଣୀକୁ ଗତିଶୀଳ, ଦଣ୍ଡ ନାଟର ମାହାତ୍ମ୍ୟ ପ୍ରଚାର କରିବା ଉଦ୍ଦେଶ୍ୟରେ ଏପରି ଏକ ଚରିତ୍ର ସଂଯୋଜନା ହୋଇଥିବା ମନେ ହୁଏ ।

## ସାପୁଆ କେଳା

ହୁଡୁହୁଡୁବାର ପ୍ରସ୍ଥାନ ପରେ ସାପୁଆ ଆସେ ଢୋଲ ବାଦ୍ୟର ତାଳେ ତାଳେ ମଞ୍ଚ ଉପରକୁ, ମୃତ ଚଢେୟାକୁ ଦେଖିବା ପାଇଁ । ଏଠାରେ ସେ ନିଜ ପରିଚୟ ପ୍ରଦାନ କରେ -

ମୁହିଁ ଆସିଘଲି ସାପୁଆ ଭାଇ
ଯୋଡା ନାଗେଶ୍ୱର ବାଡା ବଜାଇ ।।
ହର ପାର୍ବତୀଙ୍କ ହୁକୁମ ପାଇ
ଦେଖିଲେ ସାପକୁ ନେବି ଧେଳାଇ ।

ସାପୁଆ ତାହାର ପେଡିରେ ସାପ ରଖିଥାଏ । ସାପ ବିଷୟରେ ତାକୁ ସବୁ ଜଣା । ସେ ସର୍ପ ବିଶେଷଜ୍ଞ, ଈଶ୍ୱରଙ୍କ ଅନ୍ୟତମ ଭକ୍ତ । ଶିବଙ୍କ ଆଶୀର୍ବାଦରୁ ସର୍ପାଘାତରେ ମୃତବ୍ୟକ୍ତିକୁ ଜୀବନ ଦାନ ଦେବାର ଅଲୌକିକ ଶକ୍ତି ଲାଭ କରିଛି । ନାଗେଶ୍ୱର ବାଦନ କରି ସପ୍ତସ୍ୱର ଝଙ୍କାର ସୃଷ୍ଟି କରେ । ତୟରୁ ବାଦନ କରିପାରେ । ସାପ ଧରିବା, ସାପକୁ ନଚାଇବା, ସାପ ଦେଖାଇବା, ତାହାର ମୁଖ୍ୟ କାର୍ଯ୍ୟ । ଆରୋଗ୍ୟ ମନ୍ତ୍ର ମଧ ଜାଣେ । ମୃତ ଚଢେୟାକୁ ଅନୁଧାନ କରି ତାକୁ କେଉଁ ସାପ ମାରିଛି, ତାହା ନିରୂପଣ କରି ମନ୍ତ୍ରଗାନ କରିଛି -

ବିଷ ତ ବିଷ ଜାଳୀନାଗ ବିଷ
ଏ ବିଷକୁ ଜଳେ ଈଶ୍ୱର ଗ୍ରାସ,
ସର୍ପ ଆଦି ତହିଁ ଉଠିଲେ ଲେଶ
ଝଡ ବିଷ ଝଡ
ନ ଝଡୁ ବୋଇଲେ କାହାର ଆଜ୍ଞା
ଈଶ୍ୱର ପାର୍ବତୀଙ୍କର କୋଟି କୋଟି ଆଜ୍ଞା ।।

* * * * *

ହର ପାର୍ବତୀଙ୍କୁ ହୁକୁମ ହୋଇଲା
ଉଠରେ ଘାଉଡ ଉଠ
କବିଚନ୍ଦ୍ର ବୋଲେ ଚଢେୟା ଉଠିଲା
ନାଶ ଗଲା ତାର କଷ୍ଟ ।।
(ଆନନ୍ଦ କବିଚନ୍ଦ୍ର)

ଏହା ଗ୍ରାମ୍ୟ ଭାଷାରେ 'ପଦ୍ମତୋଳା' । ପଦ୍ମତୋଳା ପରମ୍ପରା ପ୍ରାଚୀନ କାଳରୁ ବିଭିନ୍ନ ରାଜ୍ୟରେ ପ୍ରଚଳିତ । ପଦ୍ମତୋଳା ମଧ୍ୟରେ ତନ୍ତ୍ରର ଏକଧାରା ନିହିତ ଥିବା ମନେ ହୁଏ । ଚଢେୟାର ଜୀବନ ଲୀଳା ନେଇ ବିଭିନ୍ନ କାହାଣୀର ସଂଯୋଜନା ମଧ୍ୟରେ ଏ କାହାଣୀ ଅନ୍ୟତମ । ଏହା ସମସ୍ତ ଦଣ୍ଡନାଟରେ ଦେଖିବାକୁ ମିଳେ ନାହିଁ । ଆବଶ୍ୟକତା ଦୃଷ୍ଟିରୁ କେତେକ ଦଣ୍ଡ ନୃତ୍ୟରେ କେଳା ସହ ଗୋଟିଏ ବା ଦୁଇଟି କେଳୁଣୀ ଚରିତ୍ରର ସଂଯୋଜନା ହୋଇଛି । କେଳା କେଳୁଣୀ ମଧ୍ୟରେ ବଚସା, ଅଭିମାନ, ମନୋମାଳିନ୍ୟ-ସମ୍ପର୍କୀୟ ଅଭିନୟରେ ଗ୍ରାମ୍ୟ ଜୀବନର ପ୍ରତିଛବି ପରିସ୍ଫୁଟିତ ।

## ଯୋଗୀ-

ଡୁବୁଡୁବା, ସାପୁଆ କେଳା ସଦୃଶ ଯୋଗୀ ଗୌଣ ଚରିତ୍ର । ରାତ୍ରିର ନାଟ୍ୟ ଆସରକୁ ଅଧିକ ରସୋଦ୍ଧୀର୍ଣ୍ଣ ଏବଂ ଗତିଶୀଳ କରିବାକୁ ଏପରି ଏକ ଚରିତ୍ର ସଂଯୋଜନା କରାଯାଏ । ଅନ୍ୟସମୟରେ ଏହାର ଆବଶ୍ୟକତା ଅନୁଭୂତ ହୁଏ ନାହିଁ ।

କାମନା ଗୃହର ଦଣ୍ଡାଗ୍ନିକୁ ଯିଏ ଜଗେ ସେ 'ଯୋଗୀ' ନାମରେ ପରିଚିତ । ଯେଉଁମାନେ ଯୋଗାଦି ସାଧନାମାନ କରନ୍ତି ସେମାନଙ୍କୁ ମଧ୍ୟ ଯୋଗୀ କୁହାଯାଏ । ଏମାନେ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି । ନିର୍ବିକାର ଭାବେ ସତ୍ କାର୍ଯ୍ୟ ଯେଉଁମାନେ କରନ୍ତି ସେମାନେ ମଧ୍ୟ କର୍ମଯୋଗୀ । ଏମାନଙ୍କ କୌଣସି ଲାଳସା ବା ଉଚ୍ଚାକାଂକ୍ଷା ନ ଥାଏ । କିନ୍ତୁ ଦଣ୍ଡନାଟରେ ଯେଉଁ ଯୋଗୀ ଓ ଯୋଗିଆଣୀ/ଯୋଗୀନୀ ଦେଖାଯାନ୍ତି, ସେମାନେ ଗୃହସ୍ଥ ଯୋଗୀ । ଏଥିରେ ଯେଉଁମାନେ

(ଭୋକ୍ତା) ଅଂଶ ଗ୍ରହଣ କରନ୍ତି ସେମାନେ ମଧ କର୍ମାନୁସାରେ ଜଣେ ଜଣେ ଯୋଗୀ । 'ଦଣ୍ଡ' ଯୋଗ ସାଧନାର ଏକ ଅଂଶ ବିଶେଷ । ଭଗବାନ ଶିବ ଧାନ ଯୋଗୀ ଏବଂ ରାମଭକ୍ତ ହନୁମାନ ହେଲେ ବ୍ରହ୍ମଯୋଗୀ । ଉଭୟଙ୍କ ଆଦର୍ଶ ଦଣ୍ଡନାଟରେ ଗୃହୀତ ।

ଅନେକ ସାଂସାରିକ ଯୋଗୀ ଅଛନ୍ତି ଯାହାର ପ୍ରମାଣ ଇତିହାସ ଓ ପୁରାଣ ସମେତ ଦଣ୍ଡନାଟରେ ମଧ ଦେଖିବାକୁ ମିଳେ । ଗଞ୍ଜାମର ଯୋଗୀ ନୃତ୍ୟରେ ପାଟଭୋକ୍ତା/ବୀଣାକାର ହାତରେ ଗୋଟିଏ ବେତ ଧରି ଅଭିନୟ କ୍ଷେତ୍ରକୁ ଆସିବା ପାଇଁ ଯୋଗୀ ଓ ଯୋଗୀଆଣୀକୁ ଡାକନ୍ତି । ଢୋଲ ଓ ଝାଞ୍ଜ ବାଦ୍ୟର ତାଳେ ତାଳେ ଦର୍ଶକମଣ୍ଡଳୀକୁ ନାନାପ୍ରକାରର ହାସ୍ୟୋଦ୍ଦୀପକ ଗୀତି-କଥା କହି ମଞ୍ଚ ଉପରକୁ ଆସେ-

ମୁଁ ଅଟେ ଯୋଗୀମଣି
ଦିଅରେ ବାବା ଭିକ୍ଷା ଆଣି
ଗ୍ରାମ ବାହାରେ ଥାଇ, ଭିକ୍ଷା ମାଗିଣ ଖାଇ
ସେଠାରୁ ଆସ ମିଳିଲୁ ତୁମର ଉଗତି ଜାଣି ।। (ସଂଗୃହୀତ)

ଏଠାରେ ଅଭିନୟ ସହ ବାସ୍ତବରେ ଦର୍ଶକଙ୍କଠାରୁ ଭିକ୍ଷା ସଂଗ୍ରହ କରନ୍ତି । ଦଣ୍ଡନାଟ ପ୍ରତି ଶ୍ରଦ୍ଧା ଓ ଭକ୍ତି ଯୋଗୁଁ ଦର୍ଶକମାନେ ଅର୍ଥ ଆକାରରେ ଭିକ୍ଷା ପ୍ରଦାନ କରିଥାନ୍ତି । ଯୋଗୀର ଆଶୀର୍ବାଦ ବିଚିତ୍ର ଏବଂ ହାସ୍ୟଭାବ ସୃଷ୍ଟି କରେ ।

ଯୋଗୀର ବେଶପୋଷାକାଦି ବାସ୍ତବତାର ମାୟା ସୃଷ୍ଟି କରିବା ନିମନ୍ତେ ଅଭିପ୍ରେତ । ଅଭିନୟକୁ ରୁଚିକର କରିବା ଉଦ୍ଦେଶ୍ୟରେ ଯୋଗୀ ପାଟଭୋକ୍ତାକୁ ଦର୍ଶକ ମଣ୍ଡଳି ମଧରେ ରହିଥିବା ଜଣେ ନାରୀବେଶୀ ଅଭିନେତାକୁ ଦେଖି ପ୍ରଶ୍ନ କରେ- ''ହେ ମଉସା, ଏ ନାରୀଟା ଏପରି ବୁଲୁଛି କାହିଁକି ?''ଏହି ନାରୀ ଯୋଗୀର ସ୍ତ୍ରୀ ହୋଇପାରେ । ତେଣୁ ସେ କହେ-

ଆଲେ ମଉସା, ଢେର ପଇସା
ଏଇ କଥା ଯିଏ କହିଲା
ଯାହା ଖୋଜୁଥିଲି ଆଜି ଦେଶଧନ
ହାତରେ ପଇଠ ହୋଇଲା ।।
ଏ ଅଟେ କାନ୍ତ ମୋହର ଲୋ ମଉସା
ଏ ଅଟେ କାନ୍ତ ମୋହର
ତୁଣ୍ଡ ବାରିକରି ଜାଣି ଦେଲିଣି
ଚାଲିଟି ତାଙ୍କର ଖର ।। (ସଂଗୃହୀତ)

ନାଟ୍ୟ ପରମ୍ପରାରେ ହାସ୍ୟରସ ପ୍ରବେଶ ପାଇଁ କୌଣସି ବାଧା ନ ଥାଏ । କିନ୍ତୁ ଲୋକନୃତ୍ୟ ପରମ୍ପରାରେ ତାହା ଅତ୍ୟଧିକ । 'ଦଣ୍ଡନାଟ' ଗ୍ରାମ୍ୟ ପରିବେଶ ମଧ୍ୟରୁ ସୃଷ୍ଟି । ତେଣୁ ଏଠାରେ ସାଂସାରିକ ଯୋଗୀ ହେଲେ ମଧ୍ୟ ସେ ବିଷୟବାସନା ମୁକ୍ତ ହୋଇ ପାରିନାହିଁ । ଏବଂ ସେ ଅନ୍ୟ ନାରୀ ଦେଖି ଭଲ ପାଇ ବସିଛି -

ଜେଉଁ ଦେଶରେ ତୋ ଘରଲୋ ନାଗରୀ
ଜେଉଁ ଦେଶରେ ତୋର ଘର ।
ଜେଉଁଠାରେ ମୋତେ ଦେଖିଣ ଥିଲୁ
ବୋଲୁଛୁ ଗିରସ୍ତ ମୋର ॥ (ସଂଗୃହୀତ)

ଅନ୍ୟ ସ୍ତ୍ରୀ ପ୍ରତି ଆକୃଷ୍ଟ ହେବା ଅଭିନୟ କିମ୍ବା ବାସ୍ତବ ଜୀବନରେ ଏପରି ହେବା, ମଣିଷର ଏକ ପ୍ରବୃତ୍ତି ବୋଲି ଗ୍ରହଣ କରାଯାଇପାରେ । ସେଥିରୁ ଯୋଗୀ ବାଦ୍ ଯିବ କିପରି ? କିନ୍ତୁ ଯୋଗିଆଣୀ ମନରେ କଷ୍ଟ ହେବା ସ୍ୱାଭାବିକ । ସେ ପତିବ୍ରତା । ପୁରୁଷ ପକ୍ଷରେ ଯାହା ସମ୍ଭବ ତାହା ନାରୀ ପକ୍ଷରେ ନୁହେଁ । ସେ କେତେକ ନୀତିନିୟମ ମଧ୍ୟରେ ଆବଦ୍ଧ ଯାହା ସହଜରେ ପ୍ରକାଶ କରିପାରେନା । ହାତ ମୁଠାରୁ ସ୍ୱାମୀ ଖସିଗଲେ ତାହାର ଭବିଷ୍ୟତ ହେବ ଅନ୍ଧକାର । ଏହି ଉଦ୍ଦେଶ୍ୟରେ ସ୍ୱାମୀ ସହ ପ୍ରଣୟଜନିତ କଳହ କରେ ଗୀତ ମାଧ୍ୟମରେ । ପରିଶେଷରେ ଯୋଗୀ ପରାଜୟ ସ୍ୱୀକାର କରି ଦର୍ଶକ ମଣ୍ଡଳୀ ଉଦ୍ଦେଶ୍ୟରେ ଘୋଷଣା କରେ -

ତୁମ ବୋଲ ନିଏ ଚଳି ସଭାଜନେ
ତୁମ ବୋଲ ନିଏ ଚଳି,
ଯୋଗୀ ଦେଖ ତେଚି ସଂଯୋଗୀ ହେଲି
ହାତ ଧରି ଚରି ନେଲି ॥(ସଂଗୃହୀତ)

ଯଦିଓ ଭାରତୀୟ ପରମ୍ପରାରେ ଗୃହିଣୀ ଥାଉଁ ଥାଉଁ ଅନ୍ୟ ନାରୀକୁ ସ୍ତ୍ରୀ ରୂପେ ଗ୍ରହଣ କରିବା ଦେଖାଯାଏ, କିନ୍ତୁ ତାହା ସାଧାରଣ ଜୀବନରେ ପରିପ୍ରକାଶ ହୁଏ ନାହିଁ । କିନ୍ତୁ ନାରୀର ବ୍ୟକ୍ତିଗତ ସ୍ୱାଧୀନତା ନଥିବାରୁ ସେ ଆନୁଗତ୍ୟ ସ୍ୱୀକାର କରିବାକୁ ବାଧ୍ୟ ହୋଇଛି । ସ୍ୱାମୀ-ସର୍ବସ୍ୱ ସଂସାର ମଧ୍ୟରେ ଜୀବନ ଅତିବାହିତ କରିନେବାକୁ ଶ୍ରେୟସ୍କର ମନେ କରିଛି ।

ଦଣ୍ଡନାଟରେ କିମ୍ବା କୌଣସିଠାରେ ଦୀର୍ଘଦିନ ଧରି ଯାତ୍ରା ହେଉଥିବା ସମୟରେ କେତେକ ଯୋଗୀଦଳ ସମୟ, ସୁବିଧା ଦେଖି ପହଞ୍ଚିଯାନ୍ତି । ଭିକ୍ଷାଥାଳ ବ୍ୟତୀତ ସେମାନଙ୍କର କୌଣସି ସମ୍ପତ୍ତି ନଥିବା ପ୍ରକାଶ କରନ୍ତି । ଗୃହସ୍ଥ ଯୋଗୀ ବୋଲି ପରିଚୟ ଦିଅନ୍ତି । ହାସ୍ୟ, ବ୍ୟଙ୍ଗକଥା କହି ଉପାର୍ଜନ କରିବା ପାଇଁ ଶ୍ରେଷ୍ଠ ମାର୍ଗ ବୋଲି ଜଣାନ୍ତି । ଏହା ମଧ୍ୟ କହନ୍ତି ଯେ,

ସେମାନେ ସଂସାର ତ୍ୟାଗ କରିବା ପାଇଁ ଯୋଗୀ ବେଶ ଧରି ନାହାନ୍ତି । ଶାରୀରିକ ପରିଶ୍ରମଜନିତ କଷ୍ଟରୁ ଉଦ୍ଧାର ପାଇବା ସକାଶେ ଆଳସ୍ୟ ମାଧମରେ ଯୋଗୀବେଶ ଧାରଣ କରି ଭିକ୍ଷା ବୃତ୍ତି ମାର୍ଗ ଅନୁସରଣ କରିଛନ୍ତି ।

ସମୟ, ସୁବିଧା ଏବଂ ଆବଶ୍ୟକତା ଦୃଷ୍ଟିରୁ ଏହି ନୃତ୍ୟ କେତେକ ଦଣ୍ଡନାଟ ଧୂଳିଦଣ୍ଡ ପର୍ଯ୍ୟାୟରେ ଦ୍ଵିପ୍ରହରରେ କେତେକ ରାତ୍ର ସମୟରେ ପରିବେଷଣ କରନ୍ତି ।

## ଶବର-ଶବରୁଣୀ

ଭାରତୀୟ ସଂସ୍କୃତିରେ ଶବର ଜାତିର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏମାନେ ହେଲେ ଦ୍ୱିତୀୟ ଶ୍ରେଣୀର ଶବର ଅର୍ଥାତ୍ ଆରଣ୍ୟକ । ଅରଣ୍ୟ ପରିବେଷ୍ଟିତ ପର୍ବତ ଗୁମ୍ଫା କିମ୍ବା ପତ୍ରକୁଟୀର ଏମାନଙ୍କ ନିବାସ ସ୍ଥାନ । କୃଷି ଓ ବନଜାତ ଦ୍ରବ୍ୟ ସଂଗ୍ରହ କରି ତାହା ସମତଳ ଅଞ୍ଚଳବାସୀଙ୍କୁ ବିକ୍ରୀ କରି ଅର୍ଥୋପାର୍ଜନ କରିବା ଏମାନଙ୍କ ମୁଖ୍ୟ କର୍ମ । ବନ୍ୟପଶୁ ଓ ପକ୍ଷୀ ଶିକାର ଗୌଣ କର୍ମ । ଜଙ୍ଗଲ ଜାତ ପଦାର୍ଥ ସାହାଯ୍ୟରେ ଏମାନେ ବିଭିନ୍ନ ମାରଣାସ୍ତ୍ର କରିବାରେ ଧୂରନ୍ଧର । ଏମାନେ ପାର୍ବତ୍ୟକ ଶବର ଅପେକ୍ଷା କେତେକ ପରିମାଣରେ ଉନ୍ନତତର । ଜନଗହଳିକୁ ଯଦିଓ ପସନ୍ଦ କରନ୍ତି ନାହିଁ, କିନ୍ତୁ ଗୋଷ୍ଠୀବଦ୍ଧ ଭାବରେ ଜୀବନଯାପନ କରିବାକୁ ପସନ୍ଦ କରନ୍ତି । ବର୍ତ୍ତମାନ ସୁଦ୍ଧା ଆଦିବାସୀ ସଂପ୍ରଦାୟର ଏକ ଅଂଶ ବିଶେଷ ବୋଲି ଗର୍ବ ଅନୁଭବ କରନ୍ତି ଏବଂ ସେମାନଙ୍କର ସମସ୍ତ ପୂଜା, ଆରାଧନା, ନୃତ୍ୟ ଏବଂ ସଙ୍ଗୀତ ସମେତ ମୌଳିକ ପରମ୍ପରାକୁ ମଧ ଅନୁସରଣ କରିଥାନ୍ତି । ପାର୍ବତ୍ୟକ ଶବର ଏବଂ ସମତଳବାସୀଙ୍କ ମଧରେ ଏମାନେ ଏକ ମାଧମ । ଶବରଜାତି ମାଧମରେ ଅତି ଦୁର୍ଲଭ ଜଙ୍ଗଲ ଜାତ ଦ୍ରବ୍ୟର ସନ୍ଧାନ ନିଅନ୍ତି ସମତଳ ଅଞ୍ଚଳର ବ୍ୟକ୍ତି ବିଶେଷଗଣ । ବର୍ତ୍ତମାନ ଏମାନେ ବିଭିନ୍ନ ଶାଖା, ଉପଶାଖା, ଗୋଷ୍ଠୀ, ଉପଗୋଷ୍ଠୀ, ମଧରେ ବିଭକ୍ତ ହୋଇ ପ୍ରାୟ ସତୁରୀ ପ୍ରକାର ହୋଇଥିବା ଅନୁସନ୍ଧାନରୁ ଜଣାପଡେ । (୬୭) ଓଡିଶାର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ନୟାଗଡ, ଗଞ୍ଜାମ, କୋରାପୁଟ,ରାୟଗଡା, ମାଲକାନଗିରି ଜିଲ୍ଲା ମାନଙ୍କରେ ଅଧିକ ପରିମାଣରେ ଏମାନେ ଦେଖାଯାନ୍ତି । ବହୁ ପ୍ରାଚୀନ କାଳରୁ କୃଷିକର୍ମକୁ ପ୍ରଧାନ ଜୀବିକା ଭାବରେ ଗ୍ରହଣ କରୁଥିଲେ । ସଂପ୍ରତି କେତେକ ପରିବର୍ତ୍ତନ ହୋଇଥିଲେ ମଧ ମୌଳିକ ଧର୍ମ ପରିତ୍ୟାଗ କରିନାହାଁନ୍ତି ।

ଜଗନ୍ନାଥ ଧର୍ମକୁ ଶବର ସଂସ୍କୃତିର ପ୍ରଭାବ ଅତୁଳନୀୟ । ଶବରଙ୍କ ନୃତ୍ୟକୁ ଶାବରୀ ନୃତ୍ୟ ନାମରେ ଗ୍ରହଣ କରାଯାଇଥିବାର ଉଲ୍ଲେଖ ''ନାଟ୍ୟମନୋରମା''ରୁ ଉପଲବ୍ଧ ହୁଏ -

ନୃତ୍ୟନ୍ତି ଶବରା ଯତ୍ର ରାୟହୋ ନିଜଭାଷୟା
ତଦୀଦଂ ଶାବରୀ ନୃତ୍ୟମିତାହୁ ନୃତ୍ୟକୋବିଦଃ ।। (୬୮)

ଯେଉଁ ନୃତ୍ୟରେ ଶବରମାନେ ନିଜ ଭାଷାରେ ଗୀତଗାଇ ନାଚ କରନ୍ତି- ତାହାକୁ ଶାବରୀ ନୃତ୍ୟ କହନ୍ତି । ନାଟ୍ୟମନୋରମାର ରଚନା (୧୬୯୩-୧୭୨୦) ବେଳକୁ ଶବର ନୃତ୍ୟ ଜନପ୍ରିୟ ହୋଇଥିବା ମନେହୁଏ । ଦଣ୍ଡନାଟର ଅଂଶ ବିଶେଷ ଏହି ଶବର-ଶବରୁଣୀ ନୃତ୍ୟକୁ ଓଡିଶୀ ନୃତ୍ୟର ପ୍ରାକ୍-ରୂପ ଭାବରେ ପରୀକ୍ଷା କରାଯାଇପାରେ ।

ଦଣ୍ଡନାଟର ଶବର, ଶବରୀ ତନ୍ତ୍ରଶାସ୍ତ୍ରର ସରହପାଦ ବା ଶବରୀଶ୍ୱରଙ୍କ ଅନୁରୂପ । ଶବରୀଶ୍ୱର ବା ଶବର ଏହି ଜାତିର ଲୋକ ଥିଲେ । ଶବରୀର ବର୍ଣ୍ଣନା 'ଚର୍ଯ୍ୟାଗୀତିକା'ରେ ଦେଖିବାକୁ ମିଳେ-

ଉଁଚା ଉଁଚା ପାବତ ତହିଁ ବସଇ ଶବର ବାଳୀ
ମୋରଙ୍ଗୀ ପିଚ୍ଛ ପରହିତ ଶବରୀ ଗିବତ ଗୁଞ୍ଜରୀମାଳୀ (୬୯)

ଏଠାରେ ପାର୍ବତୀୟ ଶବର ଜାତି ସମ୍ପର୍କରେ ବର୍ଣ୍ଣନା କରାଯାଇଥିବା ମନେ ହୁଏ । ପତ୍ର ଶଉରା, ଶଉରାଣୀ ସଦୃଶ ଶବରୀମାନେ ଜୁଡାରେ ପାନିଆ ସାଙ୍ଗକୁ ଫୁଲପେଣ୍ଡା, ମୟୁରପିଞ୍ଛ, କଉଡିଖଞ୍ଜାମାଳୀ ପ୍ରଭୃତି ଜଙ୍ଗଲ ଜାତ ଅଳଙ୍କାର ପରିଧାନ କରିଥାନ୍ତି । ଏଥିରୁ ମନେହୁଏ ଶବର ଜାତି ପ୍ରାକୃତିକ ଅଳଙ୍କାର ପ୍ରିୟ । ଦଣ୍ଡନାଟ ମାଧମରେ ଅନୁଧାନ କଲେ ଜଣାଯାଏ ଶବରଜାତି ବେଶପୋଷାକ ଓ କେଶ ପ୍ରସାଧାନ ପ୍ରତି ବିଶେଷ ସଜାଗ ଥିଲେ । ସେଥି ମଧରେ ପାନିଆ ଶବର ଜାତିର ଏକ ଆଦରଣୀୟ ବସ୍ତୁ । ବିଶେଷତଃ ଶବରୀମାନେ ଶୋଭାବର୍ଦ୍ଧକ ପଦାର୍ଥ ଭାବରେ ପାନିଆ ବ୍ୟବହାର କରୁଥିଲେ । ଏସବୁ ପଦାର୍ଥକୁ ଉପଜୀବ୍ୟ କରି ଦଣ୍ଡନାଟରେ ଶବରମାନେ ମୟୂରପୁଚ୍ଛ ଏବଂ ଶବରୁଣୀମାନେ ସୌନ୍ଦର୍ଯ୍ୟ ବର୍ଦ୍ଧକ ପାନିଆକୁ ସ୍ମାରକୀ ରୂପେ ଗ୍ରହଣ କରନ୍ତି । ଏ ସମସ୍ତ ପାରମ୍ପରିକ ବସ୍ତୁର ସୂଚନା ଚର୍ଯ୍ୟାପଦରୁ ମିଳୁଥିବାରୁ ଦଣ୍ଡନାଟକୁ ଶାବର ସାଂସ୍କୃତି ପ୍ରଭାବିତ କରିଥିବା ସ୍ପଷ୍ଟ ହୁଏ । ଶବରମାନଙ୍କର ବେଶଭୂଷା,ଚାଲିଚଳନ ଓ ଆଚାର ବ୍ୟବହାର ସମ୍ପର୍କରେ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା(୧୭୩୮)ଙ୍କ ରଚିତ 'ଲଳିତଲୋଚନା' କାବ୍ୟରେ ଏକ ସୁନ୍ଦର ବର୍ଣ୍ଣନା ଦେଖିବାକୁ ମିଳେ-

ମୁଣ୍ଡରେ କେଶ ଝୁଣ୍ଟରେ ଝରି
ଚୂଳନ୍ତୁ ଆଉ ଭାଉନ୍ତୁ ଯେ,
ପାନିଆଁ ସଙ୍ଗେ ସେ ନିଆଁ
ଧରା ମୁନିଆ ଖୋସି ଛାଉନ୍ତୁ ଯେ ।
ଢାଙ୍କର ପକ୍ଷୀ ତାଙ୍କର ଶିରେ
ବାଙ୍କରେ ବେଣୀ ଢାହାର ଯେ

ନାଗଙ୍ଗ ଫୁଲ ସେ ସଙ୍ଗତରେ
କା କର୍ଣ୍ଣେ କଣ୍ଠିକୁ ହାରା ଯେ
ଦଣ୍ଡ ତ କେହୁ ମଣ୍ଡିତ କରି
ସୁରଙ୍ଗ ଗୁଞ୍ଜ ଫଳରେ ଯେ
ତିଳକ କାହା ଫଳ କରତା
ମାଟିରେ ନାନା ରୀତିରେ ଯେ ।
ଗଳାରେ ନାନା ଫଳରେ ମାଳ
ବରକାଦି ଗରଗଡ ଯେ,
କାଛକୁ ପିନ୍ଧି ପଚ୍ଛକୁ ବାନ୍ଧି
ହେଟି କେ କରି ଲାଙ୍ଗୁଡ ଯେ ।
(୧୨ଶ ଛାନ୍ଦ)

ସମତଳବାସୀଙ୍କ ସଂସ୍ପର୍ଶରେ ଆସି କାଳକ୍ରମେ ଶବର ନିଜକୁ ନିୟୋଜିତ କରିଛି ଶିବଙ୍କ ନିକଟରେ । ଶୈବଧର୍ମକୁ ସମ୍ମାନ ଜଣାଇଛି । ସ୍ୱଧର୍ମ ପରିତ୍ୟାଗ କରିନାହିଁ କିନ୍ତୁ ଶିବଭକ୍ତ ହୋଇଛି । ଅଥଚ ଦଣ୍ଡନାଟରେ ଶିବଭକ୍ତ ଶବର ଜଣେ ଶିକାରୀ ଭାବରେ ଦେଖା ଦେଇଛି । ଧନୁଶର ଓ ଟାଙ୍ଗିଆ ତାହାର ପ୍ରଧାନ ଅସ୍ତ୍ର । ଶିରପାରେ ବିଭିନ୍ନ ପକ୍ଷୀର ପର ସଂଯୋଜିତ । ମୁଖମଣ୍ଡଳରେ କଳା, ଧଳା, ନାଲି ରଙ୍ଗର ଚିତା, ଶବରୁଣୀର ମଧ ତାହା ଏତାଦୃଶ ରୂପ । ସଭ୍ୟ ସମାଜର ଲୋଲୁପ ଦୃଷ୍ଟିରୁ ନିଜକୁ ଏଡାଇବା ପାଇଁ ଏହି ପନ୍ଥା ଗ୍ରହଣ କରିଛି । ଶବର ପକ୍ଷୀ ବ୍ୟବସାୟ କରେ । ଜଙ୍ଗଲରୁ ସଂଗୃହୀତ ପକ୍ଷୀକୁ ଶବରୁଣୀ ଗ୍ରାମ ଓ ସହରରେ ବିକ୍ରି କରି ଲବ୍ଧ ଅର୍ଥରେ ନିଜ ତେଲ ଲୁଣର ସଂସାର ଚଳାଏ । ଏହା ଛଡା ଜଙ୍ଗଲରୁ ଆଣିଥିବା ସୁସ୍ୱାଦୁ ଖଜୁରୀକୋଳି ଓ ବରକୋଳି ମଧ ସେ ବିକ୍ରି କରେ -

ଆସ ସୁଜନେହେ
କିଣିନେବପରା କୋଳି, ଆସ ସୁଜନେ ହେ ।
ପଣତ ଘୋଡାଇ ଯତନେ ରଖିଛି
ଦେଖିଲେ ହେଉ କାଉଳି । ( ସଂଗୃହୀତ)

ଶବରୁଣୀ ଶବରକୁ ପ୍ରତ୍ୟେକ କାର୍ଯ୍ୟରେ ସହଯୋଗ କରେ । ଅତି ଭଲ ପାଏ । ତେଣୁ ଶବର ଶବରୁଣୀ ସମ୍ପର୍କ ନିବିଡ । ପ୍ରାଣପ୍ରିୟଠାରୁ ଦୂରେଇ ରହିବା ଇଚ୍ଛା ନଥିଲେ ମଧ ପେଟ ପୋଷିବା ପାଇଁ ଯିବାକୁ ପଡିବ ଅନ୍ୟ ସ୍ଥାନକୁ -

ଶବର- କହୁଛିଲୋ ପ୍ରାଣେଶ୍ୱରୀ
କାଲି ଯାଉଛି ମୁଁ ବିଦେଶ କରି

ଢିସ ବିଚାରୀ, ନଦେବୁ ଗୋରୀ, ମୋତେ ପାଶୋରୀ ।
ଢହି ଆସୁଛି ଗୋ, ରହି ଆସିବି ମୁଁ ଦିନ ଚାରି ॥

ଶବରୁଣୀ- ଖଟାଧରି ଢଲେ ଗାର
ଖଟିବାର ହେବ ଦିନ ପନ୍ଦର
ଖୁରୀଏ ମୋର, ପାଣୁ ଅଟର, ହେଲେ ନାଗର,
ଯନ୍ତ୍ର ହେବିଚି ହେ, ଝୁରି ମରିବି ଏଥର ॥

ଶବର- ଗୁଣମଣି ମୋର ଘେନ
ଗଲେ ତୋହପାଇଁ ଭୂଷଣମାନ
ଗଢ଼ି ଯତନ, ଆଣିବି ଧନ, ନୁହଁ ବିମନ,
ଗେଇ ବାଣୀରେ ଗୋ, ମୋତେ ହସି ଢହ ସୁ-ବଚନ ॥

ଶବରୁଣୀ- ଘରୁ ଯେତେବେଳେ ଯିବ
ଘଡ଼ି ଘଡ଼ିଢ ମୋ ବରଷ ହେବ
ଘୋର ପ୍ରଭାବ, ଛୀବନ ନେବ, ଢାମ ଦଣ୍ଡିବ ।
ଘାଣ୍ଟି ହେବିଚି ହେ ମୋର ଭୂଷଣରୁ ଢିସ ଲାଭ । (ସଂଗୃହୀତ)

ଉଭୟଙ୍କ କଥୋପକଥନ ପଦ୍ୟ ଧର୍ମୀ ଏବଂ ଚଉତିଶା ଶୈଳୀରେ ରଚିତ । ଏହାଛଡା ଗୀତ ଗୁଡିକର ସହଜ ସ୍ୱାଭାବିକତା ପୁଣି ଅନ୍ତର ଭାବର ରସପ୍ରାଚୁର୍ଯ୍ୟ ଏହା ହିଁ ତାର ବିଶେଷତ୍ୱ ।

ଦାରିଦ୍ର୍ୟତା, ନିମ୍ନ ଶ୍ରେଣୀର ଭୂଷଣ କହିଲେ ଅତ୍ୟୁକ୍ତି ହେବ ନାହିଁ। ସେଥିପାଇଁ ପରିବାର ମଧରେ ଅଶାନ୍ତି, କଳହ ଲାଗି ରହେ। ଏହାର ପରିସମାପ୍ତି କେବେ ଘଟିନାହିଁ। ଶବର ସମାଜରେ ମଧ ଏହା ପ୍ରତିଫଳିତ -

ଶବରୁଣୀ- ତୋ ବୁପା ବୁଡ଼ା ବଡ଼ାଇରେ ଶବର
ତୋ ବୁପା ବୁଡ଼ା ବଡ଼ାଇ,
ଖାଇବାକୁ ଘରେ ନାହିଁ ସଡ଼ାଇ ଶବରରେ,
ଢେତେ ତୁ ଢହୁ ବଡ଼ାଇ, ଶବରରେ ॥
ଶବର- ଗାଢେ ପଣିଆ ଶିଆଳ ଲୋ ଶବରୀ
ଗାଢେ ପଣିଆ ଶିଆଳ,
ଦୁଇହାତେ ମାଡ ମାରିବି ତୋତେ, ଶବରୀ ଲୋ
ପଳାଇବୁ ବାପ ଘର, ଶବରୀ ଲୋ ॥ (୭୦)

ଏହି ଆଙ୍ଗିକ ଓ ବାଦ୍ୟତାଳ ଧର୍ମୀ ନୃତ୍ୟରେ ଆଧୁନିକ ପ୍ରଭାବରୁ ଦର୍ଶକଙ୍କ ମନୋରଞ୍ଜନ ସକାଶେ ଗୀତ ସଂଯୋଜନା କରାଯାଇଛି । ଏଥିପାଇଁ ଗ୍ରାମ୍ୟ କବିମାନଙ୍କର ସମସ୍ୟାଧର୍ମୀ ଗୀତ ରଚନା ଓ ଅବଦାନ ଅନସ୍ୱୀକାର୍ଯ୍ୟ । ଦଣ୍ଡନାଟରେ ପୂଜା କିମ୍ବା ନିଷ୍ଠା ସହ ସମ୍ପର୍କ ନଥିବାରୁ ଶବର ଶବରୁଣୀ ନୃତ୍ୟ ବର୍ଷର ଅନ୍ୟ ସମୟରେ ଦେଖିବାକୁ ମିଳେ । ବିଶେଷତଃ ଯାନି, ଯାତ୍ରା ଏବଂ ଦଶହରା ଉତ୍ସବରେ ଦକ୍ଷିଣ ଓଡିଶାରେ ଏହାର ପ୍ରଚଳନ ବହୁଳ । ଦଣ୍ଡନାଟରେ କଳାକାରଙ୍କ ବ୍ୟତୀତ ଏହି ସହଜ, ସରଳ ନୃତ୍ୟ ଅନ୍ୟ ସମୟରେ ଅନ୍ୟମାନଙ୍କ ଦ୍ୱାରା ଅକ୍ଳେଶରେ ଅନୁସୃତ । ଏଥି ସକାଶେ କୌଣସି ଗୀତ ବା ଜଗଜ୍ଜମାଳିର ପ୍ରୟୋଜନ ନାହିଁ ।

ଏହି ନୃତ୍ୟରେ କେବଳ ଢୋଲ ଓ ମହୁରୀ ବ୍ୟତୀତ ଅତିରିକ୍ତ ବାଦ୍ୟ ଭାବରେ 'ଚାଙ୍ଗୁ' ବ୍ୟବହୃତ ହୁଏ ।

## ବାଇଧନ/ଭାଇଧନ

'ବାଇଧନ' ଦଣ୍ଡନାଟର ଗୌଣ ଚରିତ୍ର । ଏହାର ଭୂମିକା ଅନେକ ଦଣ୍ଡନୃତ୍ୟରେ ନଗଣ୍ୟ । କେବଳ ସମ୍ବଲପୁର ଓ ଢେଙ୍କାନାଳ ଅଞ୍ଚଳରେ ସ୍ଥାନେ ସ୍ଥାନେ ପରିଦୃଷ୍ଟ । ପଶ୍ଚିମ ଓଡିଶାରେ ଏହାକୁ 'ଭାଇଧନ' କହନ୍ତି । ଏହାର ଜନ୍ମ ବୃତ୍ତାନ୍ତ ସମ୍ପର୍କରେ ଅନେକ ମତ ରହିଛି । ଏହି ରହସ୍ୟମୟ ଚରିତ୍ରର ଉପଯୋଗ ମଧ୍ୟ ଆବଶ୍ୟକ ଅନୁସାରେ ହୁଏ । ତେଣୁ ଏହି ଚରିତ୍ରକୁ ବାଦ୍ ଦେଲେ ମଧ୍ୟ ପରିବେଷଣରେ କୌଣସି କ୍ଷତି ହୁଏ ନାହିଁ । ଏଥିରେ ଯେଉଁ ଗୀତ ଗାନ କରାଯାଏ, ସେଥିରେ 'ବାଇଧନ' ପଦ ବାରମ୍ବାର ଘୋଷା ହେଉଥିବାରୁ ଏହାର ନାମ 'ବାଇଧନ' କରାଯାଇଛି। ବାଇଧନ ବିଭିନ୍ନ ପୁରାଣ, ଶାସ୍ତ୍ର ଓ ସାହିତ୍ୟ ଚର୍ଚ୍ଚା କରେ ଏବଂ ଉପଦେଶ ଦିଏ । ବାଇଧନ ଭାଟ, ଗଳ୍ପସାଗର, ଗାୟକ ପ୍ରଭୃତି ଭୂମିକା ନିର୍ବାହ କରେ । ଗୀତ ଓ ନୃତ୍ୟ ମାଧ୍ୟମରେ ବିଭିନ୍ନ ଦାର୍ଶନିକ, ଆଧାତ୍ମିକ ତଥ୍ୟ ଅବତାରଣା କରି ଲୋକଙ୍କୁ ଦିଗ୍‌ଦର୍ଶନ ଦିଏ ।

ବାଇଧନ ଅବିବାହିତ । ଦଣ୍ଡ ପରମ୍ପରାନୁସାରେ ବାଇଧନ ଜଣେ ଗନ୍ଧର୍ବ । କୌଣସି ଅପରାଧରୁ ସେ ନପୁଂସକରେ ପରିଣତ ହୋଇଛି । ତେଣୁ ତେଣୁ 'ସଖ୍ୟ'ଭାବ ତା'ଠାରେ ପରିସ୍ଫୁଟିତ । ନାରୀ ସମାଜଠାରୁ ଦୂରେଇ ରହେ । ବିଶ୍ୱାସ କରେ ଦଣ୍ଡନାଟରେ ନିଜକୁ ନିୟୋଜିତ କରି ଶିବାରାଧନା କଲେ ମୁକ୍ତି ପାଇବ । ଦଣ୍ଡନାଟର ଏହି ଏକକ ଚରିତ୍ର ଶିବଙ୍କ ଗୁଣଗାନ କରେ । କିନ୍ତୁ ଆଉ କେତେକ ପୁରୁଖା ଦଣ୍ଡଭୋକ୍ତାଙ୍କ ମତରେ ବାଇଧନ ହେଉଛି ଅଭିଶପ୍ତ 'କନ୍ଦର୍ପ', ଶିବଙ୍କ ସ୍ତୁତି ଗାନ କରିବା ତାହାର ଏକମାତ୍ର କାର୍ଯ୍ୟ । ବାଇଧନ ଦଣ୍ଡନାଟରେ ଅତିରିକ୍ତ ଚରିତ୍ର ଏବଂ ଅତିରିକ୍ତ ଭୋକ୍ତା । ସରଳ ବେଶ ପୋଷାକରେ ସେ ଦୁଇମୁଠା ମୟୂରଚନ୍ଦ୍ରିକା ଧରି ଅଭିନୟ କ୍ଷେତ୍ରକୁ ଆସେ । ନୃତ୍ୟ ସମୟରେ ସେହି ଚନ୍ଦ୍ରିକାଗୁଡିକୁ ଅପୂର୍ବ ଭଙ୍ଗୀରେ ସଞ୍ଚାଳନ କରେ ।

ଦଣ୍ଡନାଟର ଏହି ପାରମ୍ପାରିକ ବାଇଧନର ନୃତ୍ୟ ଏବଂ ଭଗବଦ୍ ପ୍ରଚାର ଶୈଳୀ, ପାଲାକୁ ପ୍ରଭାବିତ କରିଥିବା ମନେହୁଏ । ''ଦଣ୍ଡକୁ ଶିବଙ୍କ ପ୍ରତୀକ ରୂପେ ଆଶ୍ରୟକରି ଅସଂଲଗ୍ନଭାବେ ବିଭିନ୍ନ ବିକ୍ଷିପ୍ତ ଇତର ଚରିତ୍ର ବେଶ ହୋଇ ନୃତ୍ୟଗୀତ ମାଧମରେ ଭଗବଦ୍ ବିଶ୍ୱାସ ପ୍ରଚାର କରାଯାଉଥିଲା । ତନ୍ମଧ୍ୟରୁ ବିଶେଷଭାବେ ବାଇଧନ/ବୀଣାକାର (ଅଭିଶପ୍ତ କନ୍ଦର୍ପ) ଚରିତ୍ର ବିଶେଷ ବ୍ୟାଖ୍ୟାକାରୀ ଥିଲେ, ବୁଦ୍ଧଙ୍କ ପରେ ଏହି ସଂସ୍କୃତିର ଏକ ନୂତନ ସଂସ୍କରଣଭାବେ । 'ପାଲି' ପାଲାରେ ପରିଣତ ହୋଇଥିବ କିନ୍ତୁ ଏପରି ଗୋଟିଏ ଅତି ଚମତ୍କାର ସାମଗ୍ରିକ ପ୍ରଚାର ମାଧମ, ନୃତ୍ୟ ପ୍ରଧାନ ହୋଇ ପାରିଥାନ୍ତା, ସଙ୍ଗୀତ ପ୍ରଧାନ ହୋଇପାରିଥାନ୍ତା, ଅଭିନୟ ପ୍ରଧାନ ହୋଇପାରିଥାନ୍ତା'' ।(୭୧)

ଏଥିରୁ ସ୍ପଷ୍ଟମନେ ହୁଏ ପାଲା, ଦଣ୍ଡନାଟର ପରବର୍ତ୍ତୀ ଅନୁସରଣ ଧର୍ମୀ ବିଦଗ୍ଧ ନୃତ୍ୟକଳା । ବାଇଧନ/ବିଣାକାର ଚରିତ୍ର ପାଲା, ଦାସକାଠି, ଗାହାଣ, ସମ୍ପ୍ରଦା ପ୍ରଭୃତି ଗୋଷ୍ଠୀ ନୃତ୍ୟର ଆଦିମରୂପ ଏଥିରେ ସନ୍ଦେହ ନାହିଁ । ବାଇଧନହାତରେ ଯେଉଁ ଦୁଇମୁଠା ମୟୂରଚନ୍ଦ୍ରିକା ଧରିଥାଏ, ତାହା ପାଲା ଗାୟକର ହାତରେ ଥିବା ଚାମର ସହ ସମ୍ପର୍କ ରକ୍ଷା କରେ । ଉଭୟ ମୟୂରଚନ୍ଦ୍ରିକା ମୁଠି ଓ ଚାମର ଆବଶ୍ୟକତାନୁସାରେ ନାଟ୍ୟ ସାମଗ୍ରୀ ହୋଇଯାଏ ।

## ବୀଣାକାର

ଗଞ୍ଜାମ ଦଣ୍ଡନାଟ ପରମ୍ପରାରେ ବୀଣାକାର ହେଉଛି ଈଶ୍ୱର ଏବଂ ତାହାର ପତ୍ନୀଦ୍ୱୟ ହେଉଛନ୍ତି- ପାର୍ବତୀ ଓ ଗଙ୍ଗା । କିନ୍ତୁ ନୟାଗଡ ଓ ଢେଙ୍କାନାଳ ଅଞ୍ଚଳରେ ସେ ହେଉଛି କାମଦେବ ଏବଂ ତାହାର ସ୍ତ୍ରୀ ରତିଦେବୀ । ବିଭିନ୍ନ ଅଞ୍ଚଳରେ ତାହାର ବିଭିନ୍ନ ବ୍ୟାଖ୍ୟା ରହିଛି । କିନ୍ତୁ ବୀଣାକାରୁଆଣୀ ନାଚ ଗଞ୍ଜାମ ଦଣ୍ଡନାଟରେ ସମ୍ପ୍ରତି ବିରଳ ।

ବାମ ହାତରେ ଧରିଥିବା ବୀଣାକାରର ଧନୁ ହେଉଛି ପୁଷ୍ପଧନୁ ଏବଂ ଏଥିରେ ସାତଗୋଟି ଘଣ୍ଟି ସଂଯୁକ୍ତ । ଡାହାଣ ହାତର ବେତ୍ର ହେଉଛି ଶର (ଫୁଲଶର) । ଧନୁରେ ଛିଟକେନା ଏବଂ ମୟୂରଚନ୍ଦ୍ରିକା ବନ୍ଧା ଯାଇଥାଏ । ଏବଂ ଏହା ୩୨ ଗୋଟି ଛୋଟ ଘାଗୁଡି ଦ୍ୱାରା ସୁଶୋଭିତ, ବାଁ ହାତରେ ଧରି ଏହାକୁ ଝଂକୃତ କଲେ ଏଥିରୁ ସୁନ୍ଦର ଶବ୍ଦ ସୃଷ୍ଟି ହୁଏ ।

ପାଟଖୋଲ୍ଲା ସଦୃଶ ବୀଣାକାର ଦଣ୍ଡନାଟର ଗୁରୁତ୍ୱପୂର୍ଣ୍ଣ ଚରିତ୍ର । ବୀଣାକାର କାମଦେବ ହେବା ସମ୍ପର୍କରେ ବିଶିଷ୍ଟ ଦଣ୍ଡକବି କାର୍ତ୍ତିକ ଦାସ କହନ୍ତି-

କାଶୀ କ୍ଷେତ୍ରରେ କନ୍ଦର୍ପ ଯେ ଥିଲା
ମହାଦେବ ଅଗ୍ନି ଜନମ ହୋଇଲା

ସେହୁ ବୀଣାକାର ଶୁଣ ସୁଜନ
ବଂଶୀଧରି କରେ ହେଲେ ଜନମ
କାହୁଆଣୀ ରତି,
ସପ୍ତଘଣ୍ଟି ଧନୁ ଯଜ୍ଞ ଉତ୍‌ପତି ।

ବୀଣାକାରର ବୀଣା ଧନୁ ଭଳି । ଗୋଟାଏ ଧନୁକୁ ବୀଣା ଆଖ୍ୟା ଦେବା ସମ୍ପର୍କରେ ସମସ୍ତେ ନୀରବ ଓ ଅନୁଧ୍ୟାନ ସାପେକ୍ଷ । ଏହି ରହସ୍ୟମୟ ବୀଣାରେ ସାତଗୋଟି ଘଣ୍ଟି ସଂଯୁକ୍ତ ହୋଇଥିବା ଢେଙ୍କାନାଳ ଓ ନୟାଗଡ ଅଞ୍ଚଳରେ ଦେଖାଯାଉଥିବାବେଳେ ଗଞ୍ଜାମର ଦଣ୍ଡନାଟ ପରମ୍ପରାରେ କେବଳ ୩୨ ଗୋଟି ଘୁଙ୍ଗୁର ବୀଣାଦଣ୍ଡରେ ସଂଲଗ୍ନ ଥାଏ । ସମ୍ପ୍ରତି କେତେକ ଦଣ୍ଡନାଟରେ ଉଭୟ ସାତଗୋଟି ଘଣ୍ଟି କ୍ଷୁଦ୍ର ଏବଂ ୩୨ ଗୋଟି ଘୁଙ୍ଗୁର ବୀଣାରେ ଶୋଭା ପାଉଥିବା ଲକ୍ଷ୍ୟଣୀୟ । ଗଞ୍ଜାମର ଦଣ୍ଡାଭୋକ୍ତାଙ୍କ ମତରେ ବ୍ରହ୍ମାଙ୍କ ମହାଗାୟତ୍ରୀ ଯଜ୍ଞରୁ ଉତ୍ପନ୍ନ ବାଉଁଶରେ ବୀଣାଦଣ୍ଡ ପ୍ରସ୍ତୁତ ହୋଇଥିଲା । ଏହା ୩୮ ଅଙ୍ଗୁଳ, ୪ ଗୋଟି ଘଣ୍ଟି ଏବଂ ୩୨ ଗୋଟି ଘୁଙ୍ଗୁର ବିଶିଷ୍ଟ ।

ବୀଣାକାରର ପୋଷାକ ଆଡମ୍ବରହୀନ । କିନ୍ତୁ ଶିରରେ ଲୁଗାର ଏକ ପଗଡି ବାନ୍ଧେ ଏବଂ ପଗଡି ଉପରେ ମୟୂରଚନ୍ଦ୍ରିକା ଓ ଗୋଟିଏ ଝୁଲ ସଂଲଗ୍ନ ଥାଏ । ଦଣ୍ଡ ପରମ୍ପରାରେ ଏହି ଝୁଲର ତିନିପ୍ରକାର ଅର୍ଥ ରହିଛି । (୧) ଈଶ୍ୱର ଓ ପାର୍ବତୀ, ବୀଣାକାର ଏବଂ ବୀଣାକାରୁଆଣୀ ରୂପରେ ଚଢେୟାକୁ ଦଣ୍ଡବିଦ୍ୟା ନୃତ୍ୟ, ଗାନ ମାଧମରେ ପ୍ରଦାନ କଲେ । ଶିବଙ୍କ ନୃତ୍ୟ ସମୟରେ ଶିରେ ସୁଶୋଭିତ ଜଟା ମଧ୍ୟସ୍ଥ ଗଙ୍ଗାଦେବୀଙ୍କ ମୁଖରୁ ଜଳ ନିର୍ଗତ ହୋଇ ସଭାର ବିଭିନ୍ନ ଭାଗରେ ପଡନ୍ତେ ତାହା 'ଝୁଲ' ପ୍ରାୟେ ଝଲକି ଉଠିଲା । ସେହି ଜଳ ଭକ୍ତମାନଙ୍କ ଶରୀର ସ୍ପର୍ଶ କରିବା ଫଳରେ ସେମାନେ ସମସ୍ତ ପାପରୁ ମୁକ୍ତି ଲାଭ କଲେ । (୨) ଈଶ୍ୱରଙ୍କ ଭୂଷଣ ମଧ୍ୟରେ ନାଗ ଅନ୍ୟତମ । ଈଶ୍ୱର, ପାର୍ବତୀ ଓ ଗଙ୍ଗା; ବୀଣାକାର ଓ ଦୁଇ କାରୁଆଣୀ ରୂପରେ ଦଣ୍ଡବିଧି ଗାନ କରିଥିଲେ । ଏହି ମଧୁର ଗାନରେ ବିମୋହିତ ହୋଇ ନାଗମାନେ ଫଣା ଟେକି ଗର୍ଜନ କରି ଶିବଙ୍କ ଶରୀର ଶୋଭା ବର୍ଦ୍ଧନ କଲେ । ଏହା 'ଝୁଲ' ଭଳି ମନେ ହେଲା । (୩) ଜଟାଧାରୀ ଶିବ ବୀଣାକାର ରୂପରେ ତାଣ୍ଡବ ନୃତ୍ୟ କରୁଥିବା ବେଳେ ଜଟାମାନ ଶିରରେ 'ଝୁଲ' ପ୍ରାୟ ଦେଖାଗଲା । ଜଟାରୁ ନିର୍ଗତ ସୁବାସ ବିକଶିତ ହେବା ଯୋଗୁଁ ଭକ୍ତଙ୍କ ପାପ ଓ ଦୁଃଖ ବିମୋଚନ ହେଲା । ଏହିପରି ଗଙ୍ଗା, ନାଗ ଓ ଜଟା ନାମରେ ତିନିପ୍ରକାର ଝୁଲ ଦେଖାଯାଏ ।

ଦଣ୍ଡଦଳ ପ୍ରାତଃ ସମୟରେ ଯଜମାନ ଗୃହ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ଗୃହ ଦ୍ୱାର ସମ୍ମୁଖସ୍ଥ କୁମ୍ଭ ଓ ଦୀପ ନିକଟରେ ବୀଣାକାର ପ୍ରଥମେ ବନ୍ଦନା ଗାନ କରେ-

ପ୍ରଥମେ ବନ୍ଦଇଁ ଆନନ୍ଦେଶ୍ୱରଙ୍କୁ
ଦ୍ୱିତୀୟେ ସର୍ବ ମଙ୍ଗଳା,
ତୃତୀୟେ ବନ୍ଦନା ବିଘ୍ନରାଜ ପଦେ ହେ
ଚତୁର୍ଥେ ମାତଃ ଶାରଦା ।।
ପଞ୍ଚମେ ବନ୍ଦନା ନନ୍ଦୀ ଭୃଙ୍ଗୀଟୀଙ୍କୁ
ଷଷ୍ଠରେ ଯେ ମହାକାଳ,
ସପ୍ତମେ ବନ୍ଦନା ଶିବଗଣ ପାଦେ ହେ
ଅଷ୍ଟମରେ କ୍ଷେତ୍ରପାଳ ।।
ନବମେ ବନ୍ଦନା ନବଗ୍ରହ ପାଦେ
ଦଶମରେ ବିଶ୍ୱ ଦେବା
ଏକାଦଶରେ ମୁଁ ବନ୍ଦନା କରୁଛି ଯେ,
ଅଷ୍ଟ ବେତାଳ ପ୍ରତିଭା ।
ଦ୍ୱାଦଶେ ବନ୍ଦନା କରୁଛି କାମନା,
ପୁରୁଷୋତ୍ତମ ମଣ୍ଡଳେ,
ଦାରୁବ୍ରହ୍ମ ମୂର୍ତ୍ତି କୈବଲ୍ୟ ମୁକତି ହେ
ଫର ଫର ବାନା ଖେଳେ ।।

• • • •

ଭାଷିଲେ ଆନନ୍ଦ କବିଚନ୍ଦ୍ର
ସର୍ବ ବନ୍ଦନା ହେଲା ସଂପୂର୍ଣ୍ଣ,
ପାର୍ବତୀ ଦେବୀଙ୍କ ଚରଣ ସେବାରେ ହେ
ଆନନ୍ଦରେ ଯାଉ ଦିନ ।। (ସଂଗୃହୀତ)

ଦଣ୍ଡନାଟର ପ୍ରାରମ୍ଭ ଓ ଶେଷ ମଧ୍ୟରେ ବାଣାକାରର ଭୂମିକା ନିହିତ । ଦଣ୍ଡ ବନ୍ଦନା ପରେ ଉପବାସର ବିଧିବିଧାନ ଗୀତ ମାଧ୍ୟମରେ ଯଜମାନ ସମ୍ମୁଖରେ ସେ ପ୍ରକାଶ କରେ ଏବଂ ଆତିଥ୍ୟ ଗ୍ରହଣ ପୂର୍ବକ ଏକ ଦଣ୍ଡ ପତାକା ଅର୍ପଣ କରେ । ତାହାର ପରାମର୍ଶରେ ପାଟଭୋକ୍ତା ସମେତ ସମସ୍ତେ ପୂର୍ବ ନିରୂପିତ ସ୍ଥାନକୁ ପ୍ରସ୍ଥାନ କରନ୍ତି । ଦରକାର ପଡିଲେ ସେ ପୁନର୍ବାର ଆସି ଯଜମାନଙ୍କୁ ଆବଶ୍ୟକ ପରାମର୍ଶ ଦିଅନ୍ତି । କେତେକ ଦଣ୍ଡ ଦଳରେ ବାଣାକାର ପାଖେ ପାଖେ ଜଣେ ଭୋକ୍ତା ଓଢଣା ଭଳି ଗୋଟିଏ ଗାମୁଛା ମସ୍ତକରେ ଘୋଡାଇ ସହଯୋଗୀ ଭୂମିକା କରେ । ଏହାକୁ ବାଣାକାରୁଆଣୀ କହିଥାନ୍ତି ।

ପ୍ରାତଃ ବନ୍ଦନା ବ୍ୟତୀତ ଧୂଳିଦଣ୍ଡ ଓ ସନ୍ଧ୍ୟାର ଅଗ୍ନି ଦଣ୍ଡ ପ୍ରାରମ୍ଭରେ ମଧ୍ୟ ବାଣାକାର ଗୋଟାଏ ଗୋଟାଏ ବନ୍ଦନା ଗାନ କରି ଦଣ୍ଡର ଉଦ୍ଦେଶ୍ୟ ପ୍ରଦାନ କରେ । ଏଥିରୁ ଧୂଳି ଦଣ୍ଡ ଓ

ଅଗ୍ନି ଦଣ୍ଡର ଆବଶ୍ୟକତା ସମ୍ପର୍କରେ ସୂଚନା ମିଳେ । ଦଣ୍ଡନାଟ ଦଳର ଅନ୍ୟ ବିଶେଷତ୍ୱ ହେଲା ଯଜମାନର ଗୃହୋଦ୍ଦେଶ୍ୟରେ ଯାତ୍ରା ସମୟରେ ଯେ କୌଣସି ଦେବଦେବୀଙ୍କ ମନ୍ଦିର ଦେଖାଗଲେ ସେଠାରେ ବୀଣାକାର ସେହି ଦେବ/ଦେବୀଙ୍କ ଉଦ୍ଦେଶ୍ୟରେ ଜଣାଣ/ବନ୍ଦନା ଗାନ କରେ । ଏପରିକି ଚଉରା ଦେଖିଲେ ମଧ ତୁଳସୀଙ୍କ ଉଦ୍ଦେଶ୍ୟରେ ଗାନ କରାଯାଏ । ଏଥିରେ ସର୍ବ ଦେବଦେବୀଙ୍କୁ ସମ୍ମାନ ପ୍ରଦାନ ଉଦ୍ଦେଶ୍ୟ ନିହିତ । ପ୍ରତ୍ୟେକ ବନ୍ଦନା ଶେଷରେ ଭୋକ୍ତାମାନେ ହୁଳ ହୁଳି ଦିଅନ୍ତି । କାରଣ ଭୋକ୍ତାମାନେ ଯୋଗ ସାଧନା ବଳରେ ଦେବୀଙ୍କ ସମକକ୍ଷ ହେବାବେଳେ କେତେକ ନାରୀ ସୁଲଭ ଆଚରଣ ପ୍ରଦର୍ଶନ କରିବା, ତନ୍ମଧ୍ୟରୁ ହୁଳହୁଳି ଏକ ପ୍ରମୁଖ ସଙ୍କେତ ।

ବୀଣାକାର ଦଣ୍ଡନାଟରେ ଅନ୍ୟ ଏକ ସୂତ୍ରଧର । ପ୍ରତ୍ୟେକ ବନ୍ଦନା ଓ ନାଟ୍ୟାରମ୍ଭ ସୂଚନା ଏବଂ ପ୍ରାରମ୍ଭିକ କାର୍ଯ୍ୟ ସମ୍ପାଦନ କରେ । ପ୍ରଭା/କାଳୀକା, ନନ୍ଦୀ, ଈଶ୍ୱର ପାର୍ବତୀ ପ୍ରଭୃତୀଙ୍କ ଅଭିନୟର ସେ ଯୋଗସୂତ୍ରକାରୀ । ସୁଆଙ୍ଗରେ ଅନୁଷ୍ଠିତ ସମସ୍ତ ପୌରାଣିକ ଆଖ୍ୟାନରେ ସେ ପ୍ରମୁଖ ସୂତ୍ରଧର । ଦଣ୍ଡନାଟରେ ସଂଖ୍ୟାଧିକ ଦର୍ଶକ ଅଶିକ୍ଷିତ ଓ ନିରକ୍ଷର ହୋଇଥିବା ଯୋଗୁଁ ବୀଣାକାର ଭୂମିକା ଏପରି କରାଯାଇଥିବା ମନେ ହୁଏ । ବୀଣାକାରର ଗୀତଗାନ ଓ ସଂସ୍କୃତ ଶ୍ଲୋକ ଉଚ୍ଚାରଣ ପ୍ରକ୍ରିୟାରେ ଅନେକ ବ୍ୟତିକ୍ରମ ରହୁଥିଲେ ମଧ ତାହାକୁ ସଂଶୋଧନ କରିବା ଆବଶ୍ୟକ ହୁଏ ନାହିଁ । ନିରକ୍ଷରତା ଏହାର ପ୍ରଧାନ କାରଣ ।

କେତେକ ଦଣ୍ଡନାଟରେ ଆବଶ୍ୟକତା ଦୃଷ୍ଟିରୁ ମନୋରଞ୍ଜନ ସକାଶେ ବୀଣାକାର ଓ କାରୁଆଣୀର ଏକ ଉପକଥା ସଂଯୋଜିତ ହୁଏ । ଏଥିରେ ମଧ ଗ୍ରାମ୍ୟ-ସମସ୍ୟା ଏବଂ ପାରିବାରିକ କଳହ ଓ ଅଭିମାନ ମୁଖ୍ୟତଃ ସ୍ଥାନ ପ୍ରକାଶ ପାଇଥାଏ --

ବୀଣାକାର- ବିଭାବେଦୀ ମୂଳେ, କରିବା ନିୟମ
ଦେଲୁ ପାଶୋରିଲୋ,ଚନ୍ଦ୍ରମା ମୁହିଁ ଗୋରୀ ।।
ମତେ ତୁ ମନରୁ ଦେଲୁ ପାଶୋରିଲେ
ଚନ୍ଦ୍ରମା ମୁହିଁ ଗୋରୀ । ।

କାରୁଆଣୀ- ଦଶଦୋଷ କ୍ଷମା କରିବା ପ୍ରମାଣ
ଦେଇ ପାଶୋରି ହେ, ମୋ ହୃଦ ପ୍ରାଣେଶ୍ୱର
ମୋର କି ଦୋଷ ଦେଖିଣ କଲ ଅଡରହେ
ମୋ ହୃଦ ପ୍ରାଣେଶ୍ୱର ।। (୭୨)

ସୁଆଙ୍ଗ ବା ଯାତ୍ରା ଶେଷରେ ସେ ସବିନୟେ ଯଜମାନଠାରୁ ମେଲାଣି ନିଏ । ଏହି ବିଦାୟକାଳୀନ ଗୀତରେ ମଧ ଦଣ୍ଡନାଟର ବିଶେଷତ୍ୱ ପ୍ରତିପାଦିତ ହୁଏ -

ଶୁଣ ଶୁଣ ଆହେ ହେ ଦିବ୍ୟଜନ
କହିବି ଥୋକାଏ ସୃଷ୍ଟିର ଜ୍ଞାନ ।।

* * *

କାଳିକା ଅଟନ୍ତି ଯେ ଅଦ୍ୟାଶକ୍ତି
ଯାରା ବ୍ରହ୍ମାଣ୍ଡକୁ ଆବୋରିଛନ୍ତି ।।
ସୃଷ୍ଟି ଅଟେ ତାଙ୍କର ଖେଳଘର
ଆମେ ସବୁ ଅଭିନେତ୍ରୀ ସେଥିରେ ।।
ଆମେ ଅଭିନୟକୁ ଶେଷ କରି
ଚଳୁ ସର୍ବେ ପାପ ପୁଣ୍ୟକୁ ଧରି ।। (୭୩)

* * * *

ଅଭିନୟ ସହ ଧର୍ମର ସୁସଂପର୍କ ସହ ଦଣ୍ଡନାଟର ବିଦାୟକାଳୀନ ମେଲାଣି (ଗୀତ) ଅତ୍ୟନ୍ତ ହୃଦୟସ୍ପର୍ଶୀ । ଦୀର୍ଘ ଏକ ଦିନର ମାୟା, ମମତା ଯେପରି ସେମାନଙ୍କୁ ବାନ୍ଧି ରଖିଥିଲା । ତଥାପି ଅନ୍ୟ ଗୃହକୁ ଯିବାକୁ ପଡିବ, ଅନ୍ୟ ଏକ ଯଜମାନର ଅତିଥି ହେବା ସକାଶେ । ତେଣୁ ଗୀତ ମାଧ୍ୟମରେ ମେଲାଣି ଅର୍ଥ ଭିକ୍ଷା କରନ୍ତି-

କହୁଅଛି ଯୋଡିକର
କର ମେଲାଣି ଆମକୁ ସତ୍ୱର ।
ଆହେ କାମନାଧାରୀ
ଯିବୁ କେତେ ପଥ ଦୂର ।।
କରନାହିଁ ବିଳମ୍ବ
କର ବିଦାକୀ ସତ୍ୱର,
କୃପଣଙ୍କ ପରି ହେ
କିମ୍ପାଇ ହୁଅ ଅଧିର ।। (୭୪)

* * * * *

ମେଲାଣି ସ୍ୱରୂପ ପୂର୍ବ ବରାଦ ମୁତାବକ ଅର୍ଥ ଗ୍ରହଣ କରି ଅନ୍ୟତ୍ର ଯାଆନ୍ତି । ଦଣ୍ଡନାଟ ଆୟୋଜନ, ଅଭିନୟ ଏବଂ ଦର୍ଶନ କରିବା ଦ୍ୱାରା ସମସ୍ତ ପାପରୁ ମୁକ୍ତି ଲାଭ ହୋଇଥାଏ ବୋଲି ବୀଣାକାର ଗୀତ ମାଧ୍ୟମରେ ପ୍ରତିପାଦିତ କରିଦିଏ ।

*

# ମେରୁ

ଦଣ୍ଡନାଟର ଅନ୍ତିମ ଦିବସକୁ ମେରୁ କୁହାଯାଏ । ମେରୁ ଉତ୍ସବ ସବୁ ସ୍ଥାନରେ ହୁଏ ନାହିଁ । ନଦୀ ବା ନାଳର ଗତିପଥ ଯେଉଁ ସ୍ଥାନରେ ଉତ୍ତର ଦିଗକୁ ମୁହାଁଇଥିବ, ସେହି ସ୍ଥାନ ଏହି ଉତ୍ସବ ପାଇଁ ନିରୁପିତ ହୁଏ । କାରଣ ଶିବ-ପାର୍ବତୀଙ୍କ ଆସ୍ଥାନ ଉତ୍ତର ଦିଗରେ ଅବସ୍ଥିତ । ଭୋକ୍ତାମାନେ ବିଭିନ୍ନ ଗ୍ରାମ ଓ ସହର ପରିଭ୍ରମଣ କରି ଫେରି ଆସିଥିବା ଯୋଗୁଁ ବ୍ରତ ଶେଷରେ ଈଶ୍ବର ଓ ପାର୍ବତୀଙ୍କ ସମସ୍ତ ଦଣ୍ଡନିଶାଣୀ ପୁନର୍ବାର ହୋମରେ ଶୁଦ୍ଧି କରାଇ ମହାଦେବଙ୍କ ମନ୍ଦିରରେ ଅବସ୍ଥାପିତ କରାନ୍ତି ବା ପରିସରସ୍ଥ କୌଣସି ସ୍ଥାନରେ ପୋତି ଦିଅନ୍ତି । ଏହାଦ୍ୱାରା ପବିତ୍ରତା ସୁରକ୍ଷିତ ରହିବା ବିଶ୍ବାସ ରହିଛି ।

ମେରୁଖୁଣ୍ଟି ବେଲ କାଠରେ ପ୍ରସ୍ତୁତ । କୁମ୍ଭାର ଦ୍ୱାରା ଅଣାଯାଇଥିବା ଏହି ଖୁଣ୍ଟିକୁ ମେରୁ କୁଣ୍ଡର ଉଭୟ ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ଦୁଇହାତ ଗଭୀରରେ ପୋତାଯାଏ ଏବଂ ଅନ୍ୟ ଏକ କାଠ ଦୁଇଖୁଣ୍ଟର ଅଗ୍ରଭାଗ ସହ ସଂଯୁକ୍ତ ହୁଏ ।

ପରମ୍ପରାନୁସାରେ ମେରୁ ମଣ୍ଡପର ଉଚ୍ଚ ୨୯ ଅଙ୍ଗୁଳି ଏବଂ ଏହା ଐଶାନ୍ୟ ମୋଡ ହେବ । ଏହା ସମ୍ମୁଖରେ ହୋମ କୁଣ୍ଡ ସ୍ଥାପିତ ହୋଇ ତାହାର ଲମ୍ବ, ପ୍ରସ୍ଥ ଓ ଗଭୀର ୧୬ ଆଙ୍ଗୁଳି ମାପରେ ପ୍ରସ୍ତୁତ ହୁଏ । କେତେକ ଭୋକ୍ତା ଦଣ୍ଡନାଟରେ ମେରୁ ମଣ୍ଡପ ପ୍ରସ୍ତୁତ ନକରି ହୋମକୁଣ୍ଡ ମାଧ୍ୟମରେ ସମସ୍ତ ନୀତିନିୟମ ପରିଚାଳନା କରନ୍ତି । ଆଉ କେତେକ ସ୍ଥାନରେ ସ୍ଥାୟୀ ମେରୁମଣ୍ଡପ ମହାଦେବ ମନ୍ଦିର ନିକଟରେ ଥିବା ଦେଖାଯାଏ । ମେରୁସ୍ଥାନ କଞ୍ଚା କାଠ ଓ ବାଉଁଶରେ ଛାମୁଣ୍ଡିଆ ଦ୍ୱାରା ଆବୃତ ଏବଂ ଏଥିପାଇଁ ଆମ୍ବ, ପିଜୁଳି, ଖଜୁରୀ ଓ ଅଁଳା କାଠ ଓ ତାଳପତ୍ର ବ୍ୟବହୃତ ହୁଏ । ଛାମୁଣ୍ଡିଆ ଚାମୁଡାଳ ଦ୍ୱାରା ଆଚ୍ଛାଦିତ ହେବା ପରମ୍ପରା ଅନୁମୋଦିତ ଓ ଶୁଭସୂଚକ ।

ସମସ୍ତ ପ୍ରକାର ପ୍ରସ୍ତୁତି ପର୍ବ ଶେଷ ହେବା ପରେ ହୋମ କାର୍ଯ୍ୟ ଆରମ୍ଭ ହୁଏ । ପାଟଭୋକ୍ତାର ଏକାଗ୍ର ଦୃଷ୍ଟି ସକାଶେ କାଳୀପ୍ରଭାଙ୍କୁ ହୋମକୁଣ୍ଡର ବିପରୀତ ପାର୍ଶ୍ୱରେ ୧୩ ହାତ ଦୂରରେ ସ୍ଥାପନ କରାଯାଏ । ମନ୍ଦାର ଫୁଲ ମାଳରେ ପ୍ରଭାଙ୍କୁ ବିମଣ୍ଡିତ କରନ୍ତି। କାରଣ ମନ୍ଦାର ଫୁଲକୁ ଭ୍ରମର ସ୍ପର୍ଶ କରେନାହିଁ । ଅନ୍ୟାନ୍ୟ ପୁଷ୍ପ ଭ୍ରମର ଦ୍ୱାରା ଅପବିତ୍ର ହୋଇଥିବା ଯୋଗୁଁ ଏପରି ପରିକଳ୍ପନା କରାଯାଇଛି । ଏହା ବ୍ୟତୀତ ସ୍ଥଳ ବିଶେଷରେ ଅପରାଜିତା, କେତକୀ ପ୍ରଭୃତି ଦେବୀଙ୍କର ପ୍ରିୟ ପୁଷ୍ପ ମଧ୍ୟ ଅର୍ପଣ କରାଯାଏ । ବ୍ରାହ୍ମଣ ପୂଜକ/ପୁରୋହିତ ଷୋଡଶ ଉପଚାରରେ ପୂଜା ଆରମ୍ଭ କରନ୍ତି । ପାଟଭୋକ୍ତା ମୁଖ୍ୟ ପୁରୋଧା ଆସନ ଗ୍ରହଣ କରେ ।

ପୁରୋହିତ ଅଗ୍ନି, ଶିବ, ପାର୍ବତୀ ଓ କାଳୀଙ୍କର ଆରଧନା କରନ୍ତି । ହୋମପରେ ଶିବଙ୍କ ପୁଷ୍ପମାଳା ଓ ଗୌରୀ ବେତ ମେରୁ ଖୁଣ୍ଟରେ ଝୁଲାଇ ଦିଆଯାଏ କିମ୍ବା ରଜ୍ଜୁ ଦେହରେ ସ୍ପର୍ଶ କରି

ଦିଅନ୍ତି ଏବଂ ହୋମ କୁଣ୍ଡରେ ବାରମ୍ବାର ମୁଠାକୁ ମୁଠା ଝୁଣା ଅର୍ପଣ କରି ଅଗ୍ନି ପ୍ରଜ୍ୱଳିତ କରନ୍ତି । ତାପରେ ପାଟଭୋକ୍ତା ପୁନର୍ବାର ସ୍ନାନ କରି ଦିଅଁ ଦର୍ଶନ କରେ ଏବଂ ଫେରିଆସେ ମେରୁମଣ୍ଡପ ନିକଟକୁ । ସେହି ଓଦା ବସ୍ତ୍ରରେ ହିଁ ପାଟଭୋକ୍ତାକୁ ସମସ୍ତଙ୍କ ପକ୍ଷରୁ ମେରୁଖୁଣ୍ଟିରେ ଝୁଲାଇ ଦିଆଯାଏ । ତାଙ୍କର ଦୁଇଗୋଡକୁ ମେରୁଖୁଣ୍ଟରେ ବନ୍ଧାଯାଏ ଏବଂ ଶିରୋଦେଶ ଅଗ୍ନିକୁଣ୍ଡ ଉପରେ ଝୁଲି ରହେ । ଅନ୍ୟ ଭୋକ୍ତାମାନେ ଅଗ୍ନି କୁଣ୍ଡ ମଧ୍ୟରେ ଝୁଣା ଓ ଗୁଗୁଳ ନିକ୍ଷେପ କରନ୍ତି । ଏହିପରି ତେରମୁଠା ତେରଥର ପକାଯାଏ । ସେହି ଅଗ୍ନିଶିଖା ପାଟଭୋକ୍ତାର ମସ୍ତକକୁ ବାରମ୍ବାର ସ୍ପର୍ଶ କରୁଥାଏ । ସମବେତ ଦର୍ଶକ ଓ ଭୋକ୍ତା 'କଳାରୁଦ୍ର ମଣିକି ଭଜ ହେ' ମନ୍ତ୍ର ଧ୍ୱନିରେ ହୋମ ସ୍ଥଳକୁ ପ୍ରକମ୍ପିତ କରନ୍ତି । ଘଣ୍ଟ ଓ ବାଦ୍ୟ ଧ୍ୱନି ପରିବେଶକୁ ବେଶ୍ ଗମ୍ଭୀର କରେ । ସମସ୍ତେ ନିଜ ନିଜର ମାନସିକ ଏବଂ ଲକ୍ଷ୍ୟ ପୂରଣ ପାଇଁ ଏହି ସମୟରେ ଏକାଗ୍ର ଚିତ୍ତରେ କାମନା/ଧ୍ୟାନ କରୁଥାଆନ୍ତି ।

ମସ୍ତକକୁ ଅଗ୍ନି ସ୍ପର୍ଶ କରୁଥିଲେ ହେଁ ପାଟଭୋକ୍ତାକୁ ଏହି କଷ୍ଟ ବିଶ୍ୱାସ ଓ ଏକନିଷ୍ଠ ଭକ୍ତି ଯୋଗୁଁ ବାଧେ ନାହିଁ । ପାଟଭୋକ୍ତାର ନାକରୁ ତିନିଟୋପା ରକ୍ତ ଅଗ୍ନିକୁଣ୍ଡରେ ପଡିବା ଯାଏଁ ଅଗ୍ନିକୁ ପ୍ରଜ୍ୱଳିତ କରାଯାଉଥାଏ । ଏହି କାର୍ଯ୍ୟ ସମ୍ପନ୍ନ ହେବା ପରେ ଝୁଣା ଦିଆଯାଏ ନାହିଁ ଏବଂ ବନ୍ଧନ ମୁକ୍ତ ହୁଏ ।

ସେହି ଅଗ୍ନି କୁଣ୍ଡଉପରେ ଝୁଲୁଥିବା ଅବସ୍ଥାରେ ପାଟଭୋକ୍ତାକୁ ନାନା ପ୍ରକାର ସ୍ୱପ୍ନାଦେଶ ହୁଏ । ଏହି ଆବିଷ୍ଟ ଅବସ୍ଥାରେ ସେ ଯାହା କହେ, ତାହା ସତ୍ୟରେ ପରିଣତ ହୁଏ ବୋଲି ଜନସାଧାରଣ ବିଶ୍ୱାସ କରନ୍ତି ।

ପାଟଭୋକ୍ତା ମେରୁକାଠ ଉପରେ ବସି ଖୁଣ୍ଟରେ ବନ୍ଧାଯାଇଥିବା ଆମ୍ବ,ପିଜୁଳି, ଅଂଳା ଓ ଖଜୁରୀ କୋଳି ମେରୁବ୍ରତାଧାରୀଙ୍କ ଉପରକୁ ପୋପାଡନ୍ତି । ଦଣ୍ଡ ପରମ୍ପରାରେ ଏସବୁ ଫଳର ବିଶେଷତ୍ୱ ଅଛି । ଆମ୍ବ ସନ୍ତାନ ଲାଭ, ପିଜୁଳି ଶୁଭଫଳ, ଅଂଳା ଧନପ୍ରାପ୍ତି ଏବଂ ଖଜୁରୀକୋଳି ଅଶୁଭ ଫଳ ପ୍ରାପ୍ତ ହୁଏ । ଏହାପରେ ସମସ୍ତ ଭୋକ୍ତା ହୋମର ପଞ୍ଚାମୃତ ଦ୍ୱାରା ପ୍ରଲେପିତ ହୋଇ ହୋମଭସ୍ମ କପାଳରେ ଧାରଣ କରନ୍ତି । ଏହା ଦ୍ୱାରା ସମସ୍ତ ଶୁଭଫଳ ପ୍ରାପ୍ତ ହୁଏ ବୋଲି ସେମାନଙ୍କ ଦୃଢ ବିଶ୍ୱାସ ।

ସମସ୍ତ ଦଣ୍ଡ ଭୋକ୍ତା କାଳୀଙ୍କ ପ୍ରଭା ବା ଛତ୍ରଛାୟା ତଳେ ଆଶ୍ରୟ ନେଇ ୧୩ଦିନ କାଳ ମା'ର ସନ୍ତାନ ସଦୃଶ ଏକତ୍ର ରହନ୍ତି । ପ୍ରତ୍ୟହ ୧୬ ପ୍ରକାର ଦଣ୍ଡ ଏବଂ ଦଣ୍ଡବ୍ରତ ପାଳନ କରି ମେଷ ମାସାନ୍ତ ଦିନ (ବେତେକ ସ୍ଥାନ ସଂକ୍ରାନ୍ତି ଦିନ) ମେରୁ ପର୍ବରେ ଅଗ୍ନି ପରୀକ୍ଷା

ଦେଇଥାନ୍ତି । ଏହାକୁ କେତେକ ସ୍ଥାନରେ 'ଝାମୁ' କହିଥାନ୍ତି । ପରଦିନ ମା'ଙ୍କ ଶେଷ ପାକ କରି ପ୍ରସାଦ ସେବନ ସହ ଯେ ଯାହାର ଗୃହକୁ ଫେରିବା ଉଦ୍ଦେଶ୍ୟରେ ପ୍ରସ୍ତୁତ ହୁଅନ୍ତି । ଏହି ଶେଷ ପାକକୁ ଦଣ୍ଡ ପରମ୍ପରାରେ 'କୁଳ ଭୋଜି' କୁହାଯାଏ ।

ପ୍ରତ୍ୟେକ ଭୋକ୍ତା ନିଜ ନିଜ ଶୁଦ୍ଧ କ୍ରିୟା କରିଥାନ୍ତି ।  ସମସ୍ତ ବିଷୟାଭିଳାଷ ତ୍ୟାଗ କରି ବ୍ରତରେ ଅଂଶ ଗ୍ରହଣ କରୁଥିବା ଯୋଗୁଁ ସେମାନେ ସଂସାରରେ ମୃତପ୍ରାୟ ଜୀବନ ବିତାଇ ଥାଆନ୍ତି । ଏହି ଦିନମାନଙ୍କରେ ରୁଦ୍ରଙ୍କ ବ୍ରତ ସହ ରୁଦ୍ର-ଉପବୀତ ଧାରଣ କରି ଈଶ୍ୱର-ପାର୍ବତୀଙ୍କ ଭକ୍ତ ରୂପରେ ରୁଦ୍ର ଲୋକରେ ରୁଦ୍ରଗଣଙ୍କ ସହ ନିଜକୁ ବିନିଯୋଗ କରିଦେଇଥିବା ମନେ କରନ୍ତି ।  ସଂକ୍ରାନ୍ତି ପରଦିନ ଉପବୀତକୁ ନଦୀ ବା ଜଳାଶୟରେ ବିସର୍ଜନ କରି, କ୍ଷୌର ଶୌଚାଦି ହୋଇ ମହାଦେବଙ୍କ ପାଦୋଦକ ସେବନ ପରେ ସେମାନେ ପୁନଃଜୀବନ ଲାଭ କଲେ ବୋଲି ମନେ କରନ୍ତି ।  ଚମ୍ପାବରକୁ ଏହି ସମୟରେ ଦାହ କରି ଦିଆଯାଏ । ଶୁଦ୍ଧିକ୍ରିୟା ପରେ ସମସ୍ତ ନୀତିନୀୟମ ଶେଷ କରି ଯେଉଁ ଆହାର ଗ୍ରହଣ କରନ୍ତି, ତା'କୁ ଛାଡଖାଇ କୁହାଯାଏ । ଏହା ଗଞ୍ଜାମରେ ଛାଡଖାଇ ଓ ଉତ୍ତର-ଓଡିଶାରେ 'ଲକ୍ଷ୍ମଣ ଭୋଜନ' ନାମରେ ପରିଚିତ । ଏହି ଛାଡଖାଇ ଆମିଷଯୁକ୍ତ । ଏହା କାର୍ତ୍ତିକବ୍ରତାଧାରୀଙ୍କ 'ଛାଡଖାଇ'  ଅନୁରୂପ ।

କେତେକ ଦଣ୍ଡନାଟ ପରମ୍ପରାରେ କାମନା ଗୃହ-ସ୍ଥିତ ଖୁଣ୍ଟକୁ ମେରୁ ଭାବରେ ଗ୍ରହଣ କରାଯାଏ । ଏଥିରୁ ମନେହୁଏ, ଯେଉଁ ଗ୍ରାମରେ ନଦୀ ବା ନାଳରେ ଉତ୍ତର-ବାଙ୍କ ନଥିବ ସେଠାରେ ଏପରି ବ୍ୟବସ୍ଥା ହେବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ପୁରୀ ଓ ଢେଙ୍କାନାଳ ଜିଲ୍ଲାରେ ମେରୁପର୍ବ ଯେ କୌଣସି ଜଳାଶୟ ନିକଟରେ ପାଳନ କରାଯାଏ । ଏଠାରେ ମେରୁକୁ ଦେବତା ସଦୃଶ ପୂଜା କରି, ପୂଜା ପ୍ରରେ ମେରୁଖୁଣ୍ଟକୁ ବିସର୍ଜନ କରିଥାଆନ୍ତି ।

'ମେରୁ 'ସମ୍ପର୍କରେ ବହୁ କଥା ଶୁଣିବାକୁ ମିଳେ । ଯେପରି -

ମେରୁଖୁଣ୍ଟି 'ଫାଶିଖୁଣ୍ଟି' ସଦୃଶ । ଏହାକୁ ମେରୁ- ଫାଶିଖୁଣ୍ଟ ମଧ୍ୟ କୁହାଯାଇପାରେ । ଗୁରୁତର ଦୋଷରେ ସାବ୍ୟସ୍ତ ବ୍ୟକ୍ତିଙ୍କୁ ଫାଶୀ ଦଉଡି ସାହାଯ୍ୟରେ ଝୁଲାଇ ମାରି ଦିଆଯାଏ । କିନ୍ତୁ ଦଣ୍ଡ ପରମ୍ପରାନୁଯାୟୀ ସମସ୍ତଙ୍କୁ ପାପମୁକ୍ତ କରିବା ପାଇଁ  ପାଟଭୋକ୍ତା ଏଥିରେ ଝୁଲିଥାଏ  ।

୰ ଲକ୍ଷ୍ମୀନାରାୟଣ ସାହୁଙ୍କ ମତରେ, ''ଆମ୍ଭେମାନଙ୍କର ଆଦ୍ୟ ଅଧିବାସ ମେରୁ ବା ସୁମେରୁକୁ ସ୍ମରଣ କରାଇଦେବା ପାଇଁ ଏହି ପ୍ରଥା ପ୍ରଚଳିତ କିମ୍ବା ଏହି ପ୍ରଥା ପୂର୍ବରୁ ଆଜି ପର୍ଯ୍ୟନ୍ତ ଚାଲି ଆସିଛି ଏବଂ ମେରୁ ଶବ୍ଦଟି ସେହି ପୂର୍ବରୁ  ଆଜି ପର୍ଯ୍ୟନ୍ତ ରହି ଆସିଅଛି''।(୭୫)

ଭୌଗଳିକ ଦୃଷ୍ଟିରୁ ଆମର ଉତ୍ତର ଦିଗରେ ସୁମେରୁ ଅବସ୍ଥିତ । ଦଣ୍ଡନାଟର ମେରୁ ପର୍ବ ମଧ୍ୟ ଉତ୍ତର ଦିଗସ୍ଥ ନଦୀ ବା ନାଳ କୂଳରେ ଅନୁଷ୍ଠିତ ହୁଏ । ଏହା ଉତ୍ତର ଦିଗରେ ଥିବା କୈଳାଶାଧିପତିଙ୍କ ଆସ୍ଥାନକୁ ସୂଚିତ କରେ । ଏହାକୁ ସ୍ମରଣ ରଖିବା ପାଇଁ ମେରୁପର୍ବ ପାଳନ କରାଯାଉଥିବା ମନେ ହୁଏ ।

ଭାରତୀୟ ପରମ୍ପରା ଓ ଲୌକିକ ପ୍ରଥାରେ ମେରୁପର୍ବତ କହିଲେ ହିମାଳୟକୁ ବୁଝାଏ । ହିମାଳୟ ମଧ୍ୟରେ ଶିବଙ୍କ ଆସ୍ଥାନ ରହିଛି । ତେଣୁ ଶିବଙ୍କୁ ଆବାହାନ କରିବା ଉଦ୍ଦେଶ୍ୟରେ ମେରୁ ପର୍ବ ପାଳନ କରାଯାଉଥିବା ବିଶ୍ୱାସ ।

ଦଣ୍ଡନାଟରେ ମେରୁ ପ୍ରସଙ୍ଗ ଆଲୋଚନା କଲାବେଳେ 'ମେରିଆ' ଶବ୍ଦ ସ୍ମୃତି ପଥକୁ ଆସିଥାଏ । ବଳିପାଇଁ ଉଦ୍ଦିଷ୍ଟ କାଠକୁ ଲୌକିକ ଭାଷାରେ ମେରୁ କହନ୍ତି । ମେରୁ କାଠରେ ବଳି ଦିଆଯାଉଥିବାରୁ ମେରିଆ ଏବଂ ତାହାର ପରିବର୍ତ୍ତିତ ରୂପ ଦଣ୍ଡନାଟରେ ମେରୁ ହୋଇଥିବା ଅନୁମାନ କରାଯାଇପାରେ ।

ପଶ୍ଚିମ ଓଡିଶାରେ ମେରୁପର୍ବ ମାର୍ଗଶିର ମାସରେ ଅନୁଷ୍ଠିତ ହୁଏ । ଏହାକୁ ସ୍ଥାନୀୟ ଭାଷାରେ 'କାଦୋଯାତ୍ରା' କହନ୍ତି । 'କାଦୋଯାତ୍ରା'ଆଦିବାସୀ ପରମ୍ପରାରୁ ଗୃହୀତ । ଜମିରୁ ପ୍ରଚୁର ଫସଲ ଆମଦାନୀ ଉଦ୍ଦେଶ୍ୟରେ ନିଷ୍ଠା ଓ ନିୟମ ପାଳନ ପୂର୍ବକ ମେରୁ ଦେବତାଙ୍କ ନିକଟରେ ଏ ଅଞ୍ଚଳର ଲୋକମାନେ ପଶୁବଳୀ ଦେଇଥାନ୍ତି । ଏହା ଆଦିବାସୀମାନଙ୍କର ପାରମ୍ପରିକ ପର୍ବ ହୋଇଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଏହା ସାଧାରଣ ଜନଜୀବନକୁ ପ୍ରଭାବିତ କରିଅଛି । ସମ୍ପ୍ରତି ଅନେକ ଦେବୀ ପୀଠରେ ଥିବା ମେରୁ ଖୁଣ୍ଟି ବା ଦେବୀଙ୍କ ପ୍ରତୀକାତ୍ମକ ଖୁଣ୍ଟିରେ କୁକୁଡା, ଛେଳି, ଇତ୍ୟାଦି ବଳିଦିଆଯାଉଥିବା ଏକ ପାରମ୍ପରିକ ପ୍ରଥା ।

ଏସବୁ ଦୃଷ୍ଟିରୁ ମେରୁ ଦଣ୍ଡନାଟର ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ । ଏଣୁ ଦଣ୍ଡନାଟକୁ କେହି କେହି ମେରୁପର୍ବ କହିଥାନ୍ତି ।

*

# ଦଣ୍ଡନାଟର ସାହିତ୍ୟିକ ମୂଲ୍ୟ

ଦଣ୍ଡ ସହ ତନ୍ତ୍ର ସାହିତ୍ୟର ସମ୍ପର୍କ ଥିବା ପୂର୍ବରୁ କୁହାଯାଇଛି । ତନ୍ତ୍ର ସହ ଶକ୍ତି ପୂଜାର ସମ୍ମିଶ୍ରଣ ପରବର୍ତ୍ତୀ କାଳରେ ଘଟିଛି ।

ଦଣ୍ଡନାଟର ନିୟମାବଳୀ ସମ୍ପର୍କରେ କୌଣସି ପୁସ୍ତକ କିମ୍ବା ପାଣ୍ଡୁଲିପି ନାହିଁ । ଏହା ଲୋକ ମୁଖର ପରମ୍ପରା ଅନୁଯାୟୀ ନିୟମ ସମ୍ପର୍କରେ ଶିକ୍ଷାଦାନ କରାଯାଇଥାଏ । କିନ୍ତୁ ସୁଆଙ୍ଗ ଓ ଅନ୍ୟାନ୍ୟ ଗୀତ ସମ୍ପର୍କରେ ଅନେକ ପ୍ରକାଶିତ ପୁସ୍ତକ ଏବଂ ଅପ୍ରକାଶିତ ପାଣ୍ଡୁଲିପି ମିଳେ । ଦଣ୍ଡନାଟରେ ଥିବା ଅନେକ ଲୋକଗୀତ, ଲୋକସାହିତ୍ୟ ଭୁକ୍ତ ହୋଇଥିଲେ ମଧ୍ୟ ତାହାର ମୂଲ୍ୟ ଅନେକ । ଏହାକୁ କୌଣସି ବିଶିଷ୍ଟ କବି ଲେଖି ନାହାନ୍ତି । ଗ୍ରାମର ନିରକ୍ଷର ଲୋକ ହେଉଛନ୍ତି ଏହାର ଦିଗ୍‌ଦର୍ଶକ । ଏମାନଙ୍କ ସାହିତ୍ୟ ଯେ କୌଣସି ବିଶିଷ୍ଟ କବିଙ୍କ ସହ ସମକକ୍ଷ ହୋଇପାରେ କେବଳ ଅନୁଶୀଳନ ସାପେକ୍ଷ । ଏମାନଙ୍କ ଢଗଢମାଳୀ, ଗୀତ ପ୍ରଭୃତି ପରମ୍ପରାନୁକ୍ରମେ ଦଣ୍ଡନାଟରେ ଦୀର୍ଘଦିନ ଧରି ବସା ବାନ୍ଧିଛି । ଏହି ସାହିତ୍ୟର ବାହୁଲ୍ୟ ନାହିଁ, ଅତିରଞ୍ଜନ ନାହିଁ କିନ୍ତୁ ଲୋକ ହୃଦୟରୁ ସୃଷ୍ଟି ହୋଇ ଏହା ଜନତାଙ୍କ ହୃଦୟରେ ଅଭିଷିକ୍ତ । ଗ୍ରାମ୍ୟ ମୁକ୍ତମଞ୍ଚ (Open stage) ଏମାନଙ୍କ ଚାରଣ ଭୂମି । ଗ୍ରାମର ଜନସାଧାରଣ ଏ ସବୁର ପ୍ରକୃତ ରସିକ ।

ଦଣ୍ଡନାଟ ଆଙ୍ଗିକ ନୃତ୍ୟ-ବିଶେଷ । ଶାରୀରିକ ଦଣ୍ଡ ଗ୍ରହଣ ଏହାର ପ୍ରଧାନ ଅବଲମ୍ବନ । ମନୋରଞ୍ଜନ ସକାଶେ ନାଟ ଓ ସୁଆଙ୍ଗ ପରବର୍ତ୍ତୀ ସମୟରେ ସଂଯୋଜିତ ହୋଇଛି । ବୌଦ୍ଧ ଧର୍ମର ଅବକ୍ଷୟ ଏବଂ ଶୈବ ଧର୍ମର ଉତ୍‌ଥାନ କାଳରେ ଓଡିଶାରେ ବହୁ ତନ୍ତ୍ର-ଶାସ୍ତ୍ର ଲେଖାଯାଇଥିବା ଜଣାଯାଏ । ବଜ୍ରଯାନରେ ଅନେକ ପ୍ରଭାବ ଦଣ୍ଡନାଟ ମଧ୍ୟରେ ଦେଖିବାକୁ ମିଳେ । ଭୋକ୍ତାମାନଙ୍କର ଅନେକ ଅଲୌକିକ ସାଧନା ଏହାର ଉଦାହରଣ ମାତ୍ର । ବ୍ରଜଯାନୀମାନଙ୍କର ଆଚାର ପଦ୍ଧତି ବା ପୂଜା ଆରଧନା ନୀତି ଯେପରି ଅତିଗୋପନୀୟ ଏବଂ ତାନ୍ତ୍ରିକମତ ସମାଚ୍ଛନ୍ନ, ସେହିପରି ଦଣ୍ଡନାଟର ପୂଜା - ପଦ୍ଧତି ସମସ୍ତଙ୍କ ପାଇଁ ଅଗୋଚର । ବ୍ରଜଯାନୀମାନଙ୍କର ଆରାଧ୍ୟ ଦେବତା ମଧ୍ୟରେ ବୁଦ୍ଧ ଏବଂ ବୋଧିସତ୍ତ୍ୱ ମାନଙ୍କର ମୂର୍ତ୍ତି ପୂଜା ଥିଲେ ମଧ୍ୟ ସେମାନେ ଶକ୍ତିଙ୍କର ଆରଧନା କରୁଥିଲେ । ସାଂସାରିକ କ୍ରିଡାରେ ରତଥାଇ କେବଳ ଏହି ଦେବତାମାନଙ୍କର ପୂଜା କରି ନିର୍ବାଣ ଆଶା ରଖୁଥିଲେ । ସେହିପରି ଭୋକ୍ତାମାନେ ଶିବପାର୍ବତୀଙ୍କ ପୂଜା କରୁଥିଲେ ମଧ୍ୟ ଶକ୍ତି (କାଳୀ)ଙ୍କ ନିକଟରେ ନିଜକୁ ସମର୍ପଣ କରି ମୁକ୍ତି ମାର୍ଗ ଖୋଜନ୍ତି । ଏଥିଯୋଗୁଁ ଭୋକ୍ତାମାନଙ୍କର ପ୍ରଭାବ ଗ୍ରାମାଞ୍ଚଳର ଲକ୍ଷ ଲକ୍ଷ ଜନତାଙ୍କ ହୃଦୟକୁ ପ୍ରଭାବିତ କରିଛି ।

ଭାରତରେ ଶୈବ ଓ ବୈଷ୍ଣବ ଧର୍ମର ବହୁ ପ୍ରଚାର ଏବଂ ରାଜପୃଷ୍ଠ ପୋଷକତା ଫଳରେ ବ୍ରଜଯାନ ଶେଷରେ ଲୁପ୍ତ ହେଲେ ମଧ୍ୟ ବୌଦ୍ଧଧର୍ମୀଙ୍କ ଦେବୀ 'ତାରା'ଙ୍କୁ ଦୁର୍ଗାରୂପରେ ଗ୍ରହଣ

କରି ହିନ୍ଦୁମାନେ ସଂପ୍ରତି ପୂଜା କରୁଅଛନ୍ତି । 'ଦଶମହାବିଦ୍ୟା' ମଧ୍ୟରେ 'ତାରା' ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିଅଛନ୍ତି ।

ତନ୍ତ୍ର-ଯୁଗରେ ବୌଦ୍ଧଧର୍ମାବଲମ୍ବୀ ଇନ୍ଦ୍ରଭୂତି ଖ୍ରୀ: ୭୧୭ ରେ 'ଜ୍ଞାନସିଦ୍ଧି' ସମେତ ୨୩ ଖଣ୍ଡ ପୁସ୍ତକ ଲେଖିଛନ୍ତି । ଏହା ବ୍ୟତିତ ସେ ବଜ୍ରଯାନର ଜଣେ ଶ୍ରେଷ୍ଠ ପ୍ରବକ୍ତା । ପ୍ରାଚୀନ ତନ୍ତ୍ରଶାସ୍ତ୍ର ଅନୁସାରେ ତନ୍ତ୍ର, ମନ୍ତ୍ର ଓ ଯନ୍ତ୍ର ତିନିଭାଗରେ ବିଭକ୍ତ । ଯନ୍ତ୍ର ମନର ଶରୀର, ମନ୍ତ୍ର ହେଉଛି ଦେବତା ଏବଂ ତନ୍ତ୍ର ଶିବ-ପାର୍ବତୀଙ୍କ କଥୋପକଥନ । ଏହାର ସୂଚନା ଦଣ୍ଡ-ସୁଆଙ୍ଗର ହର-ପାର୍ବତୀଙ୍କ ଅଭିନୟ ପର୍ଯ୍ୟାୟରେ ଦେଖିବାକୁ ମିଳେ । ବଳରାମ ଦାସଙ୍କ 'ଛତିଶ ଗୁପ୍ତ ଗୀତା' ମଧ୍ୟ ତନ୍ତ୍ର-ସାହିତ୍ୟକୁ ପ୍ରତିନିଧିତ୍ୱ କରୁଥିବା କେହି କେହି କହନ୍ତି ।

ଦଣ୍ଡନାଟକୁ ପ୍ରାଚୀନ ନାଟ୍ୟସାହିତ୍ୟର ଦିଗ୍‌ଦର୍ଶକ ଭାବେ ଗ୍ରହଣ କରାଯାଇପାରେ । ପ୍ରାକ୍-ନାଟ୍ୟଶୈଳୀ (Pre Dramatic form)ଏଥିରେ ଲୁକ୍‌କାୟିତ ରୂପେ ରହିଛି । ଏହା ବିଭିନ୍ନ ସମୟରେ ନାଟ୍ୟ-ସାହିତ୍ୟକୁ ଦିଗ୍-ଦର୍ଶନ ଦେଇଛି । ସାଂପ୍ରତିକ ନାଟକମାନଙ୍କରେ ଏହାର ପ୍ରତିରୂପ ଲକ୍ଷ୍ୟ କରାଯାଇପାରେ ।

ସୁଆଙ୍ଗ ଅନ୍ତର୍ଗତ ସମସ୍ତ ଚରିତ୍ର ପ୍ରତ୍ୟେକ ସ୍ତରରେ କିଛି ନା କିଛି କୌତୁକ ସୃଷ୍ଟି କରୁଥାନ୍ତି । ଏ ପରିପ୍ରେକ୍ଷିରେ ଦଣ୍ଡନାଟରେ ଥିବା ଦୁଇଟି ସ୍ତର ଉପରେ ଆଲୋକପାତ କରାଯାଇପାରେ । ପ୍ରଥମ ସ୍ତର ହେଲା ଆଦିମ । ଯେଉଁଥିରେ ସଂଳାପ, ସଙ୍ଗୀତବିହୀନ ମୂକାଭିନୟ ଥାଏ । ଏହା ବିଶେଷତଃ ଅନୁକରଣଧର୍ମୀ, ବିଭିନ୍ନ ଲୋକଙ୍କର ଅଙ୍ଗଭଙ୍ଗୀ ଓ ପଶୁପକ୍ଷୀମାନଙ୍କର ଚାଲିଚଳଣ ଓ ସ୍ୱଭାବକୁ ଅନୁକରଣ କରାଯାଏ । ଦ୍ୱିତୀୟ ସ୍ତର ହେଲା, ପୁରାଣ ରଚନା ଓ ପାଠ । ଏହା ଫଳରେ ଦଣ୍ଡନାଟରେ ଦୃଶ୍ୟ -ରୂପ (scene-form) ସହ କଥ୍ୟ-ରୂପ ( dialogue form) ମିଶି ନୂତନତ୍ୱ ଲାଭ କଲା । ମୌଳିକତାକୁ ବଜାୟ ରଖି ଅନେକ ଦଣ୍ଡକବି ବିଭିନ୍ନ ପ୍ରକାରର ବିଷୟ ସେଥିରେ ଯୋଗ କରି ନିଜର ସାହିତ୍ୟିକ ଓ କବିପ୍ରତିଭା ସୃଷ୍ଟି କରିଛନ୍ତି । ତାହା ମଧ୍ୟ ବିଭିନ୍ନ ରାଗରାଗଣୀ ପରିପୂର୍ଣ୍ଣ ।

ଦଣ୍ଡନାଟ ମୁଖ୍ୟତଃ ଗ୍ରାମ୍ୟ-ସାହିତ୍ୟ ହେଲେହେଁ ସେଥିରେ ବେଦ, ଉପନିଷଦ, ରାମାୟଣ ଓ ମହାଭାରତର ପ୍ରଭାବ ସୁସ୍ପଷ୍ଟ । ରାମାୟଣ, ମହାଭାରତର ମର୍ମସ୍ପର୍ଶୀ କାହାଣୀକୁ ଦଣ୍ଡକବି ନିଜସ୍ୱ ଭାଷାରେ ପ୍ରତିପାଦିତ କରି ସହସ୍ର ସହସ୍ର ଜନତାଙ୍କ ହୃଦୟକୁ ବିମୋହିତ କରିଛନ୍ତି । ପ୍ରତ୍ୟେକ ଚରିତ୍ରକୁ ଟାଣି ନେଇଛନ୍ତି ଗ୍ରାମ୍ୟ-ଜୀବନ ସ୍ତରକୁ । ସେହି ମହାନ୍ ଚରିତ୍ର ମାନଙ୍କରେ ଗ୍ରାମ୍ୟ ଜୀବନର ପ୍ରତିଛବି ସୁସ୍ପଷ୍ଟ । ରାମ ନରେଶ ତ୍ରିପାଠୀଙ୍କ ଭାଷାରେ, ''ଗ୍ରାମ୍ୟଗୀତି ବା ଲୋକଗୀତ ପ୍ରକୃତିର ଉଦ୍‌ଗାର । ଏଥିରେ ଅଳଙ୍କାର ନାହିଁ, କେବଳ ରସ ଅଛି; ଛନ୍ଦ ନାହିଁ, ଲୟ ଅଛି, ଲାଳିତ୍ୟ ନାହିଁ, ମାଧୂର୍ଯ୍ୟ ଅଛି । ସ୍ତ୍ରୀ ପୁରୁଷର ହୃଦୟ ସିଂହାସନରେ

ବସି ପ୍ରକୃତି ଗୀତ ଗାଏ । ''(୭୬) ଦଣ୍ଡନାଟରେ ଥିବା ଗୀତ ଗୁଡ଼ିକରେ ମଣିଷର ପ୍ରାଥମିକ ଚିତ୍ରାବଳୀ ପ୍ରତିଫଳିତ, ଯେଉଁଥିରେ ମଣିଷ ନିଜର ଲାଳସା, ବାସନା, ପ୍ରେମ, ଘୃଣା, ଆନନ୍ଦ ବିଷାଦ ତଥା ସାମାଜିକ ମାନ୍ୟ ଧାରଣାରୁ ଉପରକୁ ଆସି ପାରିନାହିଁ । ''ଏଠାରେ ମଣିଷ ନିଜ ଅନ୍ତରର ଉଦ୍‌ଗତ ଭାବନାର ପରିପ୍ରକାଶରେ କୃତ୍ରିମ ଶିଷ୍ଟାଚାରର ଜୁଆଳୀକୁ କାନ୍ଧରୁ ଓଟାରି ଫିଙ୍ଗି ଦେଇଛି । ଗ୍ରାମ୍ୟଗୀତ ମସ୍ତିଷ୍କର ଧ୍ୱନି ନୁହେଁ, ହୃଦୟର ବାଣୀ ।''(୭୭)

ଦଣ୍ଡ ଗୀତରେ କିଛି ଅଛପା ନାହିଁ । ମଣିଷର ତଥା ସମାଜର ସମସ୍ୟା ସେଥିରେ ମୁକ୍ତ ଭାବେ ପରିପ୍ରକାଶ ହୋଇଛି । ସଂପ୍ରତି ଆମେ ଯାହାକୁ ସମସ୍ୟାମୂଳକ ନାଟକ (Problematic play) କହୁ, ତାହା ଦଣ୍ଡନାଟରେ ବହୁ କାଳରେ ପ୍ରତିଫଳିତ । ଦଣ୍ଡନାଟର କବି ଯାହା ଦେଖିଛନ୍ତି, ଯାହା ଅନୁଭବ କରିଛନ୍ତି, ତାହା କଳାକାରଙ୍କ ମୁଖରେ କୁହାଇବାରେ ପଛଘୁଞ୍ଚା ଦେଇନାହାଁନ୍ତି । ସେଥି ମଧ୍ୟରେ ସ୍ୱାମୀର ବଦ୍‌ଗୁଣ ସ୍ତ୍ରୀ ଦର୍ଶକଙ୍କୁ କହିବାରେ ପଶ୍ଚାଦ୍‌ପଦ ନୁହେଁ କିମ୍ବା ସ୍ତ୍ରୀର ଯେତେକ ଖରାପ ପ୍ରକୃତି ତାହା ପ୍ରକାଶ କରିବାକୁ ସ୍ୱାମୀ ତିଳେମାତ୍ର କୁଣ୍ଠା ବୋଧ କରିନାହିଁ ।

ତଥାପି ଦର୍ଶକର ପ୍ରାଣକୁ ରସାସିକ୍ତ କରିବାକୁ ଦଣ୍ଡକବି ଯଥାସାଧ୍ୟ ଚେଷ୍ଟା କରିଛନ୍ତି । ସମସ୍ୟା ଏବଂ କଳହ ପ୍ରଭୃତି ଦୃଶ୍ୟମାନଙ୍କ ମଧ୍ୟରୁ ସାମୟିକ ମୁକ୍ତି ପ୍ରଦାନ ପାଇଁ ଆଳଙ୍କାରିକ ଗୀତ ମଝିରେ ମଝିରେ ଦଣ୍ଡକବି ଚଢ଼େୟା ମୁଖରେ ପ୍ରଦାନ କରିଛନ୍ତି-

ତୋରୂପ ଲାବଣ୍ୟଠାଣୀ ଆହାରେ ନବ ତରୁଣୀ
ହୁରିମରେ ତୋର ଗୁଣଘୃଣି,
ବୀଣାହୀଣା ତୋର ବାଣୀ ବଚନ ହୋଡ଼ିକ ଛିଣି
ଫାଟି ଯାଉଅଛି ଛାତି ପୂଣିରେ ।।
(ବାଲେଶ୍ୱରରୁ ସଂଗହୀତ)

ବିରହ ରସ ପ୍ରଭୃତି ବିଭିନ୍ନ ବର୍ଣ୍ଣନାରେ ଦଣ୍ଡକବି ରୀତିଯୁଗର କବିଙ୍କ ସହ ସମକକ୍ଷ ହୋଇ ପାରିବେ । ପ୍ରତିଭା ଅଛି, ପୂଜା ନାହିଁ । ଦର୍ଶକଙ୍କ ଘନ ଘନ ତାଳି ମଧ୍ୟରେ ପ୍ରତିଭାଧର ଦଣ୍ଡକବି ଯେପରି କାଳଗର୍ଭରେ ଲୁଚି ଯାଉଛି ।

ଉତ୍ତର ବାଲେଶ୍ୱରରେ ହେଉଥିବା ଦଣ୍ଡନାଟ/ଝାମୁରେ ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ ରହିଛି । ଏହି କଠିନ ପ୍ରଶ୍ନୋତ୍ତର ବିଭିନ୍ନ ପୁରାଣ ସାହିତ୍ୟରୁ ସଂଗୃହୀତ । ସମସ୍ତ ଦଣ୍ଡଭୋକ୍ତା ଦୁଇଦଳରେ ବିଭକ୍ତ ହୋଇ ପରସ୍ପରକୁ ଏହି କଠିନ ପ୍ରଶ୍ନ ପଚାରି ଉତ୍ତର ଆଦାୟ କରନ୍ତି । ଏଥିରେ ବଙ୍ଗଳା 'ଶିବେର ଗାଜନ'ର ପ୍ରଭାବ ସ୍ପଷ୍ଟ । ଉଦାହରଣ ସ୍ୱରୂପ-

ଭାଗବତ ଚାରିଯର କାହୁଁ ଜାତ ହେଲା,
କେତେ ସ୍ତ୍ରୀ କେତେ ମୃଣ ପୁରୁଷ ହୋଇଲା ?
ଦ୍ରୌପଦୀ ସତ୍ୟଯୁଗରେ କେଉଁଠାରେ ଥିଲେ
କାହାଶାପେ ଦୌପଦୀ ହେ ପଞ୍ଚ ଭର୍ତ୍ତା କଲେ ?
ସୀତା କିମାଇଁ ରହିଲେ ଶିଶପାମୂଳରେ
ସେ ବୃକ୍ଷ କି ତପ କରିଥିଲା ଯେ ପୂର୍ବରେ ?
ଇତ୍ୟାଦି, ଇତ୍ୟାଦି ।

ଏ ପ୍ରକାର ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ ଦକ୍ଷିଣ ଓଡିଶାରେ ସଂପ୍ରତି ବିଲୁପ୍ତ । କିନ୍ତୁ ପ୍ରାକ୍-ସ୍ୱାଧିନ କାଳରେ ଥିବାର ପ୍ରମାଣ ମିଳେ-

ପ୍ରଶ୍ନ- କହୁଛି ପ୍ରଶନ ଦିଅ ଉତ୍ତର
କହିଛନ୍ତି ଯାହା ଦୁର୍ଗାକୁ ହର
କହବେ ଜନ୍ମିଅଛି ଦ୍ୱି-ଯୋନିରୁ
କେ ଜନ୍ମ ମାତା ନାହିଁ ପିତାଠାରୁ ଯେ
କେ ଅବିବାହୀରୁ ଜନ୍ମ
କେ ପିତା ନଥାଇ ଦେବସ୍ୱର ଭାଇଯେ
ବୋହୁ ସଂଯୋଗୁ ଉତ୍ପନ୍ନ ।।

ଉତ୍ତର- କହୁଛି ଶୁଣ ତୋ ପଚରା ରୀତି
ଦ୍ୱି-ଯୋନିରୁ ଜରାସନ୍ଧ ଉତ୍ପତ୍ତି
ପିଅରଠାରୁ ମାନଧାତା ଜାତ
ହେମାବନା ଅବିବାହୀ ଥିଲା ତ ଯେ
କର୍ଣ୍ଣ,ବ୍ୟାସ, ହନୁମାନ
'ଅଙ୍ଗଦ ସହିତେ ଏ ଚାରୋଟି ଲୋକ ଯେ
ଅବିଭା ମାତାରୁ ଜନ୍ମ ।। (୨୮)

ସେହିପରି ଆନନ୍ଦ କବିଚନ୍ଦ୍ର ବିରଚିତ 'ଦଣ୍ଡନାଟ'ରେ ଚଢେୟାଣୀର ଆତ୍ମ ପରିଚୟ ଚଉତିଶା ଶୈଳୀରେ ବର୍ଣ୍ଣିତ-

କ' ଅକ୍ଷରେ ମୋ ନାମ କମଳା,
ଖ'ଅକ୍ଷରେ ମୁଁ ଖଞ୍ଜନ ଡୋଳା।
ଗ' ଅକ୍ଷରେ ମୁଁ ଗଜଗମନା,
ଘ'ଅକ୍ଷରେ ମୁଁ ଘନଜଘନା ।
ଙ' ଅକ୍ଷରେ ମୋ ନାମଟି ଙମା,
ଚ' ଅକ୍ଷରେ ମୋ ନାଁ ଚନ୍ଦ୍ରମା ।

ଛ' ଅକ୍ଷରେ ମୁଁ ଛନଦତରା ।
ଛ' ଅକ୍ଷରେ ମୁଁ ଛଡିତ ହୀଘା ।
*  *  *  *

ପଶ୍ଚିମ ଓଡିଶାରେ ହେଉଥିବା ଦଣ୍ଡ ସୁଆଙ୍ଗରେ ଆଞ୍ଚଳିକ ଭାଷାର ପ୍ରୟୋଗ ହୋଇଥିଲେ ମଧ୍ୟ ତାହା ଉଚ୍ଚଶ୍ରେଣୀୟ । ଭରତଚନ୍ଦ୍ର ବିଶିଙ୍କ 'ବସ୍ତ୍ରଚୋରୀ'ଦଣ୍ଡାଭିନୟରେ ଏହା ଲକ୍ଷ୍ୟ କରାଯାଇପାରେ-

ଗୋଟି ଗୋଟି ହୋଇ ବ୍ରଜ ଯୁବତି
ଗୋପପୁର ବାଣ୍ଟେ କରନ୍ତି ଗତି ।
ଗେହ୍ଲା...କେ ବୋଲେ ଚନ୍ଦ୍ରବଦନା
ଗଲେ ...ସହୁଛି କେତେ ଗଞ୍ଜନା ଗୋ ।
ଗିରସ୍ତ ମୋହର ମନ୍ଦ
ଗାଳି ଦେଉଥାଇ ଏଡେ ମୂର୍ଖବାୟୀ
ଆଉ ଦୁଷ୍ଟ ମୋ ଶାଶୁ ନଣନ୍ଦ ॥

ଏପରି ଉକ୍ତି ପ୍ରତ୍ୟୁକ୍ତି ମଧ୍ୟରେ ମିଶ୍ରଣ ଘଟିଛି ଆଞ୍ଚଳିକ ପଶ୍ଚିମ ଓଡିଶାର ଭାଷା ଲୋକପ୍ରିୟ ହେବା ଉଦ୍ଦେଶ୍ୟରେ-

ବଡ ବଏମାନ୍ କାଲିଆ ପିଲା
ବାଟ ଜୁଗି ମତେ ଦେଖୁଥିଲା,
ମୋର ଦରମ୍‌ଟା ଏହ୍‌ଦି ଡିଲା
ହାବ୍‌ଡେ ପଡିଲିଁ ଯାଇ ॥
ହସି ଆସି ମୋର ମାଠିଆ ଯୁରା
ଲୁଟେଇ ନେଲା ପଡର୍ ଦୁର୍ହା,
ମତେ ଗୁଟେ ଡାର ଥିଲା ନୁରା
ଗୁନ୍‌ବାର ଲାଗି ଦାଇଁ॥ (୭୯)

ଦଣ୍ଡନାଟ୍ୟ ଲୋକନୃତ୍ୟ ପର୍ଯ୍ୟାୟଭୁକ୍ତ ହେଲେ ହେଁ ତାହାର ସାହିତ୍ୟିକ ଅବଦାନ ସ୍ୱୀକାର୍ଯ୍ୟ । ଦଣ୍ଡ ସାହିତ୍ୟକୁ ଯେଉଁମାନେ ରୂପାୟନ କରିଛନ୍ତି ସେମାନେ ହେଲେ ଚିନ୍ତାମଣି, ଶିବବାଙ୍କ, ଦେବାର୍ଚ୍ଚନ, ବିଦ୍ୟାଧର, ଗୋବିନ୍ଦ ନୀଳାମ୍ବର, ଭରତ ଚନ୍ଦ୍ର ବିଶି, ଯୋଗୀନ୍ଦ୍ର ମଲ୍ଲିକ, ସନ୍ନ୍ୟାସୀ ନାୟକ, ଶ୍ରୀନିବାସ, ଆନନ୍ଦ କବିଚନ୍ଦ୍ର, ଆନନ୍ଦ ଭୂୟାଁ, ନୀଳକଣ୍ଠ ପଟ୍ଟନାୟକ, ରଘୁନାଥ ପଟ୍ଟନାୟକ, ରଙ୍ଗନାଥ ଦାଶ, ନୀଳମ୍ବର ମିଶ୍ର ପ୍ରମୁଖ ପ୍ରଧାନ । ଏମାନେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଅଞ୍ଚଳର ଦଣ୍ଡଗୁରୁ ରୂପେ ପ୍ରସିଦ୍ଧ । ବର୍ତ୍ତମାନ ସୁଦ୍ଧା ଏମାନଙ୍କ ରଚିତ ନାଟ୍ୟାଭିନୟ ଦଣ୍ଡ ପରମ୍ପରାରେ ଅନୁସୃତ ।

# ଭାଷା

ଦଣ୍ଡନାଟରେ ଭାଷା କଥିତ ଓଡିଆ । ଏଥିରେ ରହିଛି ଆଞ୍ଚଳିକ ଶୁଦ୍ଧ ଓ ଅଶୁଦ୍ଧ ଭାଷାର ମିଶ୍ରିତ ରୂପ । ସଂପ୍ରତି ଓଡିଶାରେ ତିନିପ୍ରକାର ଭାଷାର ପ୍ରଭାବ ସୁସ୍ପଷ୍ଟ । ଦକ୍ଷିଣ ଓଡିଶାର ଦଣ୍ଡନାଟରେ ତେଲୁଗୁ, ପଶ୍ଚିମ ଓଡିଶାର ଦଣ୍ଡନାଟରେ ହିନ୍ଦୀ ଏବଂ ଉତ୍ତର ଓଡିଶାର ଦଣ୍ଡନାଟରେ ବଙ୍ଗଳା ଭାଷାର ପ୍ରଭାବ ଦେଖିବାକୁ ମିଳେ । ଦଣ୍ଡ ସୁଆଙ୍ଗ ବ୍ୟତୀତ ଅନ୍ୟାନ୍ୟ ଅଭିନୟର କୌଣସି ଲିଖିତ ପୁସ୍ତକ ବା ପାଣ୍ଡୁଲିପି ନାହିଁ । ଏହା ହିଁ ଦଣ୍ଡନାଟରେ ଲୁକ୍କାୟିତ ରହସ୍ୟ । ତଥାପି ବର୍ଷ ବର୍ଷ ଧରି ଏହା ଲକ୍ଷ ଲକ୍ଷ ନିରକ୍ଷର ଜନତାର ହୃଦୟରେ ଉଦ୍ଭାବିତ । ଦଣ୍ଡନାଟର ନୃତ୍ୟରେ ଯେଉଁ ସବୁ ଲୌକିକ ଗୀତ ପରିବେସିତ ହୁଏ, ତାହାର ବିଷୟ ବସ୍ତୁ ସାଧାରଣ ଜୀବନରେ ପ୍ରତିଛବି ଏଥିରେ କୌଣସି ଗୋପନୀୟ ତଥ୍ୟର ରହସ୍ୟମୟ ପରିପ୍ରକାଶ ଘଟିନାହିଁ । ଜୀବନର ମୂଲ୍ୟବୋଧ ଏଥିରେ ସଂପୂର୍ଣ୍ଣ ପ୍ରତିଫଳିତ । ଏହାର ଭୋକ୍ତାମାନେ ଯାହା ଦେଖିଛନ୍ତି ବା ଅନୁଭବ କରିଛନ୍ତି ତାହାର ସ୍ୱାଭାବିକ ପରିପ୍ରକାଶ ଧୂଳିଦଣ୍ଡ ପର୍ଯ୍ୟାୟରେ ପରିସ୍ଫୁଟିତ କରିଛନ୍ତି । ତେଣୁ ଏହାର ଭାଷା ଗ୍ରାମିଣ । ତଥାପି ଦର୍ଶକର ମନୋରଞ୍ଜନ ସକାଶେ ପଡୋଶୀ ରାଜ୍ୟର ଭାଷା ବେଳେ ବେଳେ ଏଥିରେ ବ୍ୟବହୃତ ହୋଇଥିବା ଦେଖାଯାଏ । ଉଦାହରଣ ସ୍ୱରୂପ -

ଜମାଦାର ଆସନ୍ତି ଢେଢେ ରଙ୍ଗରେ
　　ଆସନ୍ତି ଢେଢେ ରଙ୍ଗରେ ।
ଦାନୁବ୍ବଲ ଘେନିଣ ସଙ୍ଗରେ ..... ଜମାଦାର ।(ଘୋଷା)
ଶନି ଚଡାଇ ନଳିରେ ଆସେ ପାର ପଟୁଆରେ
ଦାୟିଦି ପଟାରି ଦି ପ୍ରସଙ୍ଗରେ..... ଜମାଦାର ।
ଏଡୁ ପ୍ରତି ପାଇବାକୁ ନିଇପାଦି କୁମ୍ବାକୁ
ଢେଙ୍ଗରେ ରୋଇଛି ଇଡୁ ଡଙ୍ଗାରେ .....ଜମାଦାର ।
(ସଂଗୃହୀତ)

ଏଥିରେ ସ୍ଥାନୀୟ ଭାଷା ସହ ତେଲୁଗୁ ଭାଷା ସଂଯୋଜିତ । ସେହିପରି ସାପୁଆ କେଳା ଗୀତରେ ବଙ୍ଗଳା ଓ ହିନ୍ଦୀ ଭାଷାର ପ୍ରଭାବ ଦେଖିବାକୁ ମିଳେ-

ଆହେ ହେ । ସାପୁଆ ମେ ଦୋଟି ଭାଇ
ଫୁଙ୍କି ନାଗେଶ୍ୱର ହାଲେ ଧୀର ଧୀର
ଦୋଟି ବାହୁ ଦୋହଲାଇ
　　ଭାଷାତେ ତେଇଙ୍ଗିଆ
ଜଟିତେ ଜଙ୍ଗିଆ ମଘାଚେ ହିନ୍ଦୁ ବୋମାଇ
ଖାଉମେ ତୋପଉ ଦାହାମେ ତୋଡର

କରତେ କଙ୍କଣ ଭାର
ନଗରୀ କୈଳାସ ହାମାର ନିଜ ଦେଶ
ନନ୍ଦାଶ୍ରୀ ଗୁରି ଗୋସାଙ୍କ ।। (ସଂଗୃହୀତ)

ଦଣ୍ଡନାଟରେ ଏପରି ଗୌଣ ଚରିତ୍ରର ଭାଷା ବ୍ୟତୀତ ଦେବ ଚରିତ୍ରରେ ମଧ୍ୟ ତ୍ରିଭାଷୀ (ହିନ୍ଦୀ,ବଙ୍ଗଳା ଓ ଓଡିଆ ) ପ୍ରୟୋଗ କରାଯାଇଛି । ଈଶ୍ୱରଙ୍କ ଆଗମନ ପ୍ରସଙ୍ଗରେ ଏହି ତ୍ରିଭାଷୀ ଗୀତ ଲକ୍ଷ୍ୟ କରାଯାଇପାରେ -

ନାଚେ ନାଚେରେ । ସାନନ୍ଦିତ ପଶୁପତି ।ପଦା
ନାରଦ ଶାରଦ ଯୋ ଗୁନ୍ ଗାବେ
କମ୍ବୁରା ବୀଣା ବଜାବେ ।
ମାତା ପାର୍ବତୀ ଆରତୀ ଗାବେ
ଔର ବାଜେ ମୃଦଙ୍ଗା ଦେଖାନି
ବଲେଦଂ ସଙ୍ଗିନୁ ବଲେ ହୁଁ
ଘୁମୁରା ବାଜେ ଘୁମ୍ ଘୁମ୍ ଘୁମ୍ ଘୁମ୍ ।।
ଯୋଗ୍ନି ଭୈରବୀ ସଙ୍ଗୀତ ଗାବେ
ଦାଣ୍ଡିକ ତାନ ଉଠାବେ ।
ଡ୍ରଡ୍ର ବିନାୟକ ଦିକ୍ ଦିକ୍ ଗାବେ
ସର୍ପ ଗାଦେ ଫୁ ଫୁ,
ଦେଖାନେ ଦାଲେ ଦୁମ୍ ଦୁନ୍ଦୁଭି ବାଜେ ଦୁମ୍ ।
ଡମ୍ବରୁ ବାଜେ ଡିଡ୍ ଡିଡ୍ ଡିଡ୍ ଡିଡ୍ ଡୋଲ
ଝଞ୍ଜର ଘନ୍ ଘନ୍ ବାଜେ ତାଲ ବାଜେ ଝମ୍ ଝମ୍
ନାମ ଉଚନ ଦବିଚନ୍ଦ୍ର ନଚାବେ
ଧାଦକ ଶିବଗଣ ସାଙ୍ଗ
ଦେଖନେ ଦାଲେ ଦୁମ୍ ଦୁନ୍ଦୁଭି ଦୁମ୍
ବାଜେ ଦୁମ୍ ଦୁମ୍ ଦୁମ୍ ଦୁମ୍ ।।
(ସଂଗୃହୀତ )

ହିନ୍ଦୀ, ବଙ୍ଗଳା ଓ ଓଡିଆ ଭାଷାରେ ମିଶ୍ରିତ ଗୀତ ମନୋରଞ୍ଜନ ଧର୍ମୀ ଏବଂ ଦୁର୍ଲଭ । ଏଥିରୁ ମନେହୁଏ କବିଙ୍କର ବହୁଭାଷା ସମ୍ପର୍କୀୟ ଜ୍ଞାନ ।

ଆବଶ୍ୟକତାନୁଯାୟୀ ବାଣାକାରର ସଂସ୍କୃତ ଶ୍ଳୋକ ଉଚ୍ଚାରଣ ଶ୍ରୁତି କଟୁ ହେଲେ ହେଁ ତାହା ଦଣ୍ଡନାଟରେ ବିଧିବଦ୍ଧ ସଂଶୋଧନ କରାଯାଇପାରେ ନାହିଁ । ଭୋକ୍ତାମାନେ ଅଭିନୟ ସମୟରେ ଯେଉଁ ଉକ୍ତି ପ୍ରତ୍ୟୁକ୍ତିମୂଳକ ଗୀତଗାନ କରନ୍ତି ସେଥିରେ ସ୍ଥାନୀୟ ଭାଷାର ପ୍ରୟୋଗ

କରନ୍ତି । ପ୍ରତ୍ୟେକ ଗ୍ରାମ୍ୟ-କବିମାନଙ୍କର ଗ୍ରାମ୍ୟଭାଷା (Typical language) ସମ୍ବଳିତ ଗୀତ ଧୂଳିଦଣ୍ଡରେ ଗାନ କରାଯାଏ । ଏଥିରେ ଅନେକ ଢଗ ଢମାଳି ଓ ଲୋକ ପ୍ରବଚନର ବ୍ୟବହାର ଏହାକୁ ସରସ ଓ ହୃଦ୍ୟ କରିଥାଏ । ଉଦାହରଣ ସ୍ୱରୂପ-

କହିଲେ କି ପ୍ରତେ ଯାଉରେ ମନୁଆ
କହିଲେ କି ପ୍ରତେ ଯାଉ
ବନସ୍ତରେ ଗାଈ ବହାକୁ ହରାଇ
ବାଘୁଣୀ ଆଣେ ଅଟାଇ ।
ଚିଙ୍କିଚି ହେଲା ଆମ୍ବଶୁଳ ଦାଟା
ଚାଲୁଣିକି ହେଲା ଜ୍ୱର
ଟୋକେଇ ଦୁଏଇ ବାପଘର ଗଲେ
ଝାଞ୍ଜୁଣି ଜଗିଛି ଘର ॥

ଦଣ୍ଡନାଟରେ ଗଉଡ ଉପାଖ୍ୟାନକୁ-

ତୁତୁକୁଣୀ ରାଇତୋର
ମାଣ୍ଡିଆ ଖାଉଛୁ । କାଉଛି ଘର,
ଚଡେୟା ଭାଇରେ, ଟଳାରି ଭାଙ୍ଗିଲା ମୋର ॥
ବେଳ ଉଚ୍ଛୁର ହେଲାଣି
ଭୋକ ଶୋଷରେ ମୋ ପ୍ରାଣଗଲାଣି
ମୋର ବାୟାଣୀଲୋ, ଆଣିଦୁ ଘୋଟଣା ପାଣି ॥
ଶାଳୀ ମୋର ରୂପବତୀ
ପୁରୁଷ ଦେଖିଲେ ମାରଇ ଆଖି
ମୋର ବାୟାଣୀ ଲୋ, ନହେବୁ ତା ସାଙ୍ଗ ସାଥି ॥
(ସଂଗୃହୀତ)

ଦଣ୍ଡନାଟର ଭାଷା ସରଳ ଓ ରସପୂର୍ଣ୍ଣ ଏବଂ ଏହାର ଭାଷା ପାତ୍ରମୁଖୀ । ସାକ୍ଷର, ନିରକ୍ଷର ସଂଖ୍ୟାଧିକ ଦର୍ଶକଙ୍କୁ ଯେପରି ଆନନ୍ଦ ପ୍ରଦାନ କରପାରିବ ସେଥିପାଇଁ ଦଣ୍ଡକବି ସତତ ଚେଷ୍ଟିତ । ଗ୍ରାମରେ ମୁସଲମାନ, ଖ୍ରୀଷ୍ଟିଆନ, ବଙ୍ଗାଳୀ, ତେଲୁଗୁ ଭାଷାଭାଷୀ ବସବାସ କରୁଥିବା ଯୋଗୁଁ ସେମାନଙ୍କ ଭାଷା ମଧ ଦଣ୍ଡନାଟରେ ପ୍ରତିଫଳିତ । ଅନେକ ଇଂରାଜୀ ଶବ୍ଦର ବିକୃତ ଉଚ୍ଚାରଣ ସଂଯୋଜନା ଯୋଗୁଁ ହାସ୍ୟ ପରିବେଶ ସୃଷ୍ଟି କରେ । ଦଣ୍ଡନାଟରେ ଯଦିଓ ଅନେକ ଆଦିବାସୀ ଚରିତ୍ର ସ୍ଥାନିତ, ତଥାପି ସେମାନଙ୍କ ଭାଷା ସେହି ପରିମାଣରେ ଦୃଷ୍ଟି ଗୋଚର ହୁଏ ନାହିଁ । ନାଟ ପରିମାର୍ଜିତ ହେବାବେଳେ କିମ୍ବା ଗ୍ରାମାଭିମୁଖୀରୁ ସହରାଭିମୁଖୀ ହେବା ବେଳେ ଏପରି ହୋଇଥିବା ସମ୍ଭବ । ଚଢେୟା, ଚଢେୟାଣୀ, ପତ୍ରଶବରା, ପତ୍ରଶବରାଣୀ, ଶବର, ଶବରୁଣୀ

ପ୍ରଭୃତି ଚରିତ୍ରମାନେ ମାର୍ଜିତ ଗ୍ରାମ୍ୟ କଥିତ-ଭାଷା ବ୍ୟବହାର କରନ୍ତି । କିନ୍ତୁ ଫୁଲବାଣୀ, କୋରାପୁଟ ଓ କଳାହାଣ୍ଡି ଆଦିବାସୀ ବହୁଳ ଜିଲା ହୋଇଥିବାରୁ ଏହି ଜିଲାମାନଙ୍କରେ ଦଣ୍ଡନାଟର ଚରିତ୍ରମାନଙ୍କଠାରେ ଆଦିବାସୀ ଓ ସ୍ଥାନୀୟ ଭାଷାର ପ୍ରାବଲ୍ୟ ଅଧିକ ଥାଏ । ବାସ୍ତବତଃ ଆଞ୍ଚଳିକ ସ୍ତରରେ ଦଣ୍ଡନାଟର ଭାଷା ଭିନ୍ନ ଭିନ୍ନ । ଅଭିନୟ ଓ ପରିବେଷଣ ମଧ୍ୟ ବିଭିନ୍ନ ପ୍ରକାରର । ତେଣୁ ଦଣ୍ଡନାଟକୁ ଗୋଟିଏ ମାପ କାଠିରେ ତଉଲିବା ସମ୍ଭବ ନୁହେଁ । ପ୍ରକୃତରେ ଏହାର ଭାଷା ଗ୍ରାମୀଣ ।

*

## ଦଣ୍ଡନାଟରେ ରସ

ଦଣ୍ଡନାଟର ମୁଖ୍ୟରସ ହେଲା, ହାସ୍ୟ । ହାସ୍ୟ ଉଦ୍ରେକ ସକାଶେ ନାଟ । ନାଟ ପରିବେଷଣ ଏକ ସ୍ୱତନ୍ତ୍ର କଳା । ଧୂଳିଦଣ୍ଡ ଓ ସୁଆଙ୍ଗ ପରିବେଷଣ ସମୟରେ ବିଭିନ୍ନ କୌତୁକପୂର୍ଣ୍ଣ ଅଙ୍ଗଭଙ୍ଗୀ ଓ ଅନାବିଳ ମଧୁର ସରସ ଗୀତ ଗାନକରି ଏହା ସମ୍ପାଦିତ ହୋଇଥାଏ । ଗୀତ ବା ସଙ୍ଗୀତର ଅର୍ଥ ବା ପ୍ରସ୍ତାବକୁ ଦଣ୍ଡ କଳାକାର ଅଭିନୟ ମାଧ୍ୟମରେ ଦର୍ଶକ ନିକଟରେ ପହଞ୍ଚାଏ । ଅଭିନୟ ଏକ ଆଚରଣ । ପରେ ଏହା 'କଳା' ନାମ ଧାରଣ କରିଛି । ଯାହାର ପ୍ରଭାବ ଗୁଣବୋଧ ବା ଦ୍ରଷ୍ଟା ଉପରେ ଅନୁଭୂତ ହୁଏ, ତାହା ମଧ୍ୟରେ ରସ ସଂଚାର କରିବାରେ ସହାୟକ ହୋଇଥାଏ ।

ସଂସ୍କୃତରେ ରସ ଅର୍ଥ ଆସ୍ୱାଦ୍ୟ (ଆସ୍ୱାଦନ) ବା ସ୍ୱାଦ ଗୋଚର । ଆସ୍ୱାଦ ଯୋଗ୍ୟ ଅନୁଭୂତି ହିଁ ରସ । ଯେପରି ମଧୁର, ତିକ୍ତ, ଖଟା, କଟୁ , କଷାୟ, ଲବଣ ପ୍ରଭୃତିର ମିଶ୍ରଣରେ ପ୍ରସ୍ତୁତ ଖେଚୁଡି ଅନ୍ନକୁ ଆସ୍ୱାଦନ କରି ଆନନ୍ଦ ଅନୁଭବ କରନ୍ତି । ସେହିପରି ଆଙ୍ଗିକ, ବାଚିକ, ଆହାର୍ଯ୍ୟ ଅଭିନୟ ଦ୍ୱାରା ଅଭିନୀତ ଭାବକୁ ଦର୍ଶକ ଅନୁଭବ କରେ । ଦଣ୍ଡନାଟ ଆଙ୍ଗିକ ଅଭିନୟ ଯୁକ୍ତ କିନ୍ତୁ ସୁଆଙ୍ଗରେ ବାଚିକ ଓ ଆହାର୍ଯ୍ୟ ଅଭିନୟ ମୁଖ୍ୟ ସ୍ଥାନ ଗ୍ରହଣ କରେ । ସଂପ୍ରତି ଦଣ୍ଡନାଟରେ ଏହାର ସଙ୍ଗମ ଦେଖିବାକୁ ମିଳେ । ଏହା ହିଁ ନାଟ୍ୟରସ । ଏପରି ବ୍ୟଞ୍ଜନା ଦ୍ୱାରା ରସବୋଧ ହୋଇଥାଏ ଏବଂ ଆଭାସ ଓ ଇଙ୍ଗିତ ମାଧ୍ୟମରେ ଆସ୍ୱାଦଯୋଗ୍ୟ ଭାବ ପ୍ରକାଶ କରିବା ହିଁ ବ୍ୟଞ୍ଜନା ଶକ୍ତିର ବୈଶିଷ୍ଟ୍ୟ । ଏହା ବଭାବ, ବ୍ୟଭିଚାରୀ ଭାବ ତଥା ସାତ୍ତ୍ୱିକ ଭାବ ଦ୍ୱାରା ହିଁ ଅଭିବ୍ୟକ୍ତ ହୋଇଥାଏ । 'ଦଶରୂପକମ୍'ରେ ତେଣୁ କୁହାଯାଇଛି -

ବିଭାବୈରନୁଭାବୈଶ୍ଚ ସାତ୍ତ୍ୱିକୈ ର୍ବ୍ୟଭିଚାରିଭିଃ ।
ଆନୀୟମାନଃ ସ୍ୱାଦ୍ୟତ୍ୱଂ ସ୍ଥାୟୀ ଭାବୋ ରସଃ ସ୍ମୃତଃ ॥(୮୦)

ରସ ସମ୍ପର୍କରେ ସଂସ୍କୃତ ଆଳଙ୍କାରିକମାନେ ବିସ୍ତୃତ ଆଲୋଚନା କରିଛନ୍ତି । କିନ୍ତୁ ଏଠାରେ ନବରସ ମଧ୍ୟରୁ 'ହାସ୍ୟରସ' ଦଣ୍ଡନାଟ ପ୍ରସଙ୍ଗରେ ଆଲୋଚନା କରାଯାଇଛି ।

ଦଣ୍ଡନାଟରେ ଚଢେୟା, ଚଢେୟାଣୀ, ଶବର ଓ ଶବରୁଣୀ ପ୍ରଭୃତି ଚରିତ୍ରମାନଙ୍କର ପରସ୍ପର କଳହ ଏବଂ ଅଦ୍ଭୁତ ସମାଧାନ ହାସ୍ୟ ସୃଷ୍ଟି କରେ । ଏହାଛଡା କଥିତ ଭାଷାରେ କେତେକ ଅରୁଚିକର ଅସଭ୍ୟ ଭାଷାର ପ୍ରୟୋଗ, ହାସ୍ୟ ପରିବେଶ ସୃଷ୍ଟି କରୁଥିବା ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ଦଣ୍ଡନାଟରେ ଏକ ଚିରାଚରିତ ଧାରା । ଅନେକ ବିଶିଷ୍ଟ ବ୍ୟକ୍ତିମାନଙ୍କର ଅଙ୍ଗଭଙ୍ଗୀକୁ ବିକୃତ ଅନୁକରଣ ବାସ୍ତବିକ ହାସ୍ୟୋଦ୍ଦୀପକ । ଏଣୁ 'ନାଟ୍ୟଶାସ୍ତ୍ର'ରେ କୁହାଯାଇଛି -

ବିପରୀତାଙ୍କ ଙ୍କାରୈର୍ବି କୃତାଚାରାଭିଧାନବେଶୈଶ୍ଚ
ବିକୃତୈ ରଙ୍ଗବିକାରୈର୍ହସତୀତି ରସଃ ସ୍ମୃତୋ ହାସ୍ୟଃ ।
ବିକୃତା କାରୈର୍ବାକ୍ୟୈରଙ୍ଗ ବିକାରୈଶ୍ଚ ବିକୃତବେଶୈଶ୍ଚ
ହାସୟତି ଜନଂ ଯସ୍ମାତ୍ତସ୍ମାଜ୍ଜ୍ଞେୟୋ ରସୋ ହାସ୍ୟଃ ।।(୮୧)

ଏହା ବ୍ୟତୀତ 'ସାହିତ୍ୟ ଦର୍ପଣ'ରେ ହାସ୍ୟରସ ସମ୍ପର୍କରେ ଯାହା ଉଲ୍ଲେଖ ରହିଛି ତାହା ମଧ୍ୟ ଦଣ୍ଡନାଟ ପାଇଁ ପ୍ରଯୁଜ୍ୟ ହୋଇପାରେ -

ବିକୃତାକାର ବାରାବେଷ ଚେଷ୍ଟାଦେଃ କୁହାକାଦ୍ ଭବେତ୍ ।
ହାସ୍ୟୋ ଦାସସ୍ଥାୟିଭାବଃ ଶ୍ୱେତଃ ପ୍ରଥମଦୈବତଃ ।।
ବିକୃତାକାରବାକ୍‌ଚେଷ୍ଟଂ ଯମାଲମ୍ବ୍ୟ ହସେଜ୍ଜନଃ ।
ଅନଭାବୋଽକ୍ଷି ସଙ୍କୋଚ-ବଦନ ସେରତାଦୟଃ ।।
ନିଦ୍ରାଲସ୍ୟାବହିତ୍ଥାଦ୍ୟା ଅତ୍ର ସ୍ୟୁ ବ୍ୟଭିଚାରିଣଃ ।
ତଦତ୍ରାଲମ୍ବନଂ ପ୍ରାହୁସ୍ତଚେଷ୍ଟୋଦ୍ଦୀପନଂ ମତମ୍ ।। (୮୨)

ବିକୃତ ବଚନ, ବେଶ ଓ ଅଙ୍ଗଭଙ୍ଗୀରୂପ କାର୍ଯ୍ୟ କଳାପ ଯାହାର ଏପରି ଯେଉଁ କୁହୁକ (ନର୍ତ୍ତକ) ତାଠାରୁ ଏହି କାବ୍ୟର ଉପଲକ୍ଷଣ, ଅତଏବ କାବ୍ୟଶ୍ରବଣରୁ ମଧ୍ୟ ହାସ୍ୟରସର ଉତ୍ପତ୍ତି । ହାସ ହେଉଛି ଏହାର ସ୍ଥାୟୀଭାବ ଏବଂ ଏହାର ବର୍ଣ୍ଣ ଶ୍ୱେତ । ପ୍ରମଥ (ଶିବଗଣ) ଏହାର ଦେବତା । ଯେଉଁ ବିକୃତ ଆକାର ବଚନ, ବିକୃତ ଅଙ୍ଗଭଙ୍ଗୀ କରୁଥିବା ଲୋକକୁ ଦେଖି ଲୋକେ ହସନ୍ତି ତାହା ଆଲମ୍ବନ ବିଭାବ । ସେପରି ଲୋକର ଚେଷ୍ଟା ଉଦ୍ଦୀପନ । ଆଖି ସଙ୍କୋଚ, ବଦନ ବିକାଶ ପ୍ରଭୃତି ଏହାର ଅନୁଭାବ, ନିଦ୍ରା ,ଆଳସ୍ୟ, ଆକାର, ଗୋପନ ପ୍ରଭୃତି ବ୍ୟଭିଚାରୀ ଭାବ ।

ଏ ଦୃଷ୍ଟିରୁ ଧୂଳିଦଣ୍ଡ ପର୍ଯ୍ୟାୟରେ କୌଣସି ପୁରୁଷ ବା ଯୁବକ, ସ୍ତ୍ରୀ ବା କନ୍ୟା ବେଶଯୁକ୍ତ ହୋଇ ଆଗମନ ବେଳେ ଅଳଙ୍କାର ଓ ଶାଢ଼ୀକୁ ବିପର୍ଯ୍ୟସ୍ତ ଭାବରେ ପିନ୍ଧିବା, ବିକୃତନାମ (ଯଥା- ଋପବତୀ, ମାଣିଆମା, ହଗୁରା-ପ୍ରଭୃତି ) ଉଚ୍ଚାରଣ, କଥାବାର୍ତ୍ତାବେଳେ ସ୍ୱର ପରିବର୍ତ୍ତନ, ଚାଲିରେ ଅଙ୍ଗାଙ୍ଗ କମ୍ପନ (ଆଲମ୍ବନ ବିଭାବ), ଅସଫଳ ଚେଷ୍ଟା (ଉଦ୍ଦୀପନ) ଏବଂ ଅଦ୍ଭୁତ ବେଶ (ଅନୁଭାବ), କାର୍ଯ୍ୟରତ ଅବସ୍ଥାରେ ଆଳସ୍ୟ ଓ ନିଦ୍ରା ପ୍ରଦର୍ଶନ (ବ୍ୟଭିଚାରଭାବ) ବେଶ୍ ହାସ୍ୟୋଦ୍ଦୀପକ । ଧୂଳିଦଣ୍ଡ ସମୟରେ କ୍ଷୁଦ୍ର-ନାଟକର ଗୀତକୁ ବିକୃତ ଗାନ ଦ୍ୱାରା ଦର୍ଶକକୁ ମନୋରଞ୍ଜନ ପ୍ରଦାନ କରେ । ଏହା ଅରୁଚିକର ହେଲେ ହେଁ ପଶ୍ଚାତରେ ରହିଛି ପଲ୍ଲୀ ଜୀବନର ଏକ ଏକ ସମସ୍ୟାଜନିତ ପ୍ରତିଛବି । ନିକୋଲ୍‌ଙ୍କ ଭାଷାରେ,"ହାସ୍ୟ ସମ୍ପୂର୍ଣ୍ଣ ଭାବେ ସମାଜରୁ ଉଦ୍ଭବ, ସମାଜ ପାଇଁ ଅନୁପ୍ରେରିତ । ହାସ୍ୟରସ ବା ଏହାର ଯେ କୌଣସି ବିଭାଗ କୌଣସି ଗୋଟିଏ ଅସ୍ୱାଭାବିକ ପ୍ରକୃତି ବା ବିକାରଗ୍ରସ୍ତ ମନୋବୃତ୍ତି ବିରୁଦ୍ଧରେ ପ୍ରତ୍ୟକ୍ଷ ଭାବରେ ପ୍ରଯୁଜ୍ୟ ହେବା ପାଇଁ ଉଦ୍ଦିଷ୍ଟ । ଅସାମାଜିକତା ହିଁ ହାସ୍ୟରସର ଶରବ୍ୟ ଓ ଗୋଟିଏ ଅଂଶବିଶେଷ ।" (୮୩)

ଦଣ୍ଡ ସୁଆଙ୍ଗ ଅପେକ୍ଷା ଧୂଳିଦଣ୍ଡ ପର୍ଯ୍ୟାୟରେ ଅଭିନୀତ ଗୀତରେ ଅନେକ ଅରୁଚିକର, ଅଶ୍ଳୀଳ ଭାଷା ପ୍ରୟୋଗ କରାଯାଇ ହାସ୍ୟରୋଳ ସୃଷ୍ଟି ହୋଇଥାଏ । ଏଥିରେ ଥାଏ ପଲ୍ଲୀ ସମାଜର ନଗ୍ନ ଚିତ୍ର-

ଯାଉଛି, ଝିଅ ଶଶୁର ବାଡି ଯାଉଛି
ବାରବର୍ଷ ହେଲା,ଝିଅ ଆସିଥିଲା ଘରଡା ଛାଡି ।।
ଗର୍ଭରେ ଧରିଛି, ପେଟରେ ଧରିଛି ସନ୍ତାନ ଚାରି ।।
ଝିଅଲୋ, ତୋର କରମହୀନ
ଦୁଇ ଦିଅରରେ ନଗଲା ଦିନ- ଝିଅଲୋ ।। (୮୪)

ଗୀତର ପଦକୁ ଅନୁଧାନ କଲେ ସାମ୍ପ୍ରତିକ କାଳରେ ଏପରି ଘଟୁଥିବା ଅସମ୍ଭବ । କିନ୍ତୁ ସମାଜର ନିମ୍ନ ବର୍ଗରେ ଅନେକ ବ୍ୟଭିଚାର ରହିଥିବା ବିରଳ ନୁହେଁ । ସେହିପରି 'ଦିଅର-ଭାଉଜ' କଳି ପ୍ରସଙ୍ଗ ଦଣ୍ଡନାଟର ସବୁଠାରୁ ଲୋକପ୍ରିୟ । ଉଦାହରଣ ସ୍ୱରୂପ -

ଦିଅର ସୁଆଉପଣ ଆଉ ଢାହିଁକି
ଦରବୁଢା ଉଭଡଳା ଲଜ୍ୟା ନାହିଁକି ?
ଧାଙ୍କ ତୋର ଡାଦନ, ଧାଙ୍କ ତୋ ସୁନ୍ଦରପଣ
ଧାଙ୍କଡ ଭାଦୁଡା ଡଳା ହେଉ ବାଉଡି ।। (୮୫)

ଏଥିରେ ଉଲ୍ଲେଖ ଥିବା ରଇଜଲା, ଭାକୁତା, ଜଳା ଶବ୍ଦମାନ ଗ୍ରାମ୍ୟ ସ୍ତ୍ରୀ ସମାଜର କଥିତ ଭାଷା । ଏଠାରେ ଦାରିଦ୍ର୍ୟତାର ସ୍ପଷ୍ଟ ଚିତ୍ର ମିଳୁଥିବାରୁ ହାସ୍ୟ ଭାବ ସୃଷ୍ଟି କରେ ।

ଦଣ୍ଡନାଟର ପ୍ରତ୍ୟେକ ପର୍ଯ୍ୟାୟରେ ହାସ୍ୟୋଦ୍ଦୀପକ ଦୃଶ୍ୟ, ବ୍ୟଙ୍ଗବିଦ୍ରୂପ, ଗ୍ରାମ୍ୟ ଜୀବନର ଚାଲିଚଳନ ଓ ରୀତିନୀତିର ପରିଚୟ ମିଳେ । ସମସ୍ତ ପ୍ରକାର ଦୁଃଖ, ଯନ୍ତ୍ରଣାକୁ ଈଶ୍ୱରଙ୍କ ପରୀକ୍ଷା କହି ଭୋକ୍ତାମାନେ ହସରେ ଉଡାଇ ଦିଅନ୍ତି । ଫଳରେ ଦଣ୍ଡ ଜନିତ ଯନ୍ତ୍ରଣାରୁ ସାମୟିକ ବିଶ୍ରାମ ଓ ଶାନ୍ତି ମିଳେ ।

*

## ଗ୍ରାମ୍ୟ ଜୀବନର ଚିତ୍ର

ଗ୍ରାମ୍ୟ ଜୀବନ ମୁଖ୍ୟତଃ ତିନି ଭାଗରେ ବିଭକ୍ତ ; ଯଥା- କର୍ମ (work), ବିଶ୍ରାମ (Rest), ଏବଂ ଅବସର ବିନୋଦନ (Recreation) । ଏହି ତିନୋଟିରୁ ଗୋଟିଏ ଅଭାବ ହେଲେ ଜୀବନ ହୁଏ ଦୁର୍ବିସହ । ପ୍ରତ୍ୟେକ ମଣିଷ ଜୀବନରେ କାର୍ଯ୍ୟ ଓ ବିଶ୍ରାମର ଆବଶ୍ୟକତା ସହ ରହିଛି ଅବସର ବିନୋଦନ ବା ମନୋରଞ୍ଜନ, ଯାହା ଶ୍ରମ ସଙ୍ଗେ ଚାଲିଥାଏ, ତାହା ହିଁ ଶ୍ରେଷ୍ଠ ବିନୋଦନ ରୂପେ ଗୃହୀତ । ଏହା ଦଣ୍ଡନାଟରେ ବହୁପରିମାଣରେ ଦେଖିବାକୁ ମିଳେ ।

ଧୂଳିଦଣ୍ଡ ଅଭିନୟ ମଧ୍ୟରେ ଜମିରେ ହଳବୁଲାଇବା, ପାଣି ଦେବା, ତଳି ପକାଇବା, ଧାନ କଟା, ମନ୍ଦିର ନିର୍ମାଣ କାର୍ଯ୍ୟ ଚାଲିଥିବା ସମୟରେ ଗୀତ ଓ ନୃତ୍ୟ ମଧ ଚାଲିଥାଏ । ଏହାହିଁ ମଣିଷର ଶ୍ରମ ବିନୋଦନ । ଏହି ଗୀତ ଗୁଡିକ ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ଜୀବନର ସ୍ତରକୁ ଉନ୍ନତ କରିବାରେ ସହାୟକ ହୋଇଥାଏ । ଦଣ୍ଡନାଟର ଭୋକ୍ତା ଏହି ୧୩ ଦିନ ବ୍ୟତୀତ ଅନ୍ୟ ସମୟରେ ଚାଷୀ, ମୂଲିଆ, ହଳିଆ ବା ଶଗଡିଆ । ଏମାନଙ୍କ ଭାବାବେଗରୁ ଆପେ ଯେଉଁ ଗୀତ ସୃଷ୍ଟି ହୁଏ, ତାହା ହିଁ ଦଣ୍ଡ ନାଟରେ ଅଭିନୟ ମଧ୍ୟରେ ପ୍ରତିଫଳିତ ।

ଗ୍ରାମ୍ୟ ସମାଜରେ ଆଶାନିରାଶା, ଆକାଂକ୍ଷା, ହସ, କାନ୍ଦ, ସୁଖ ଦୁଃଖ, ହାସ ପରିହାସ, ବ୍ୟଙ୍ଗ ପ୍ରଭୃତି ଦଣ୍ଡ ନାଟରେ ରୂପାୟିତ ହେବା ସଙ୍ଗେ ସଙ୍ଗେ ସେହି ଅଞ୍ଚଳରେ ସାଂସ୍କୃତିକ ଜାଗରଣ ଏବଂ ସାମାଜିକ ବିକାଶ ପାଇଁ ସହାୟକ ହୋଇଥାଏ । ଅର୍ଥ ନୈତିକ, ସାମାଜିକ, ଧାର୍ମିକ, ନୈତିକ ଓ କୃଷି ସମସ୍ୟାର ନିଖୁଣ ଚିତ୍ର ଦଣ୍ଡନାଟରେ ଦେଖିବାକୁ ମିଳେ ।

ଦଣ୍ଡନାଟ ଲୋକଜୀବନର ଏକ ଆମୋଦ ଅନୁଷ୍ଠାନ । ଧାନ ଅମଳ ପରଠାରୁ ଅକ୍ଷୀ ତୃତୀୟା ଯାଏଁ ଚାଷୀ ହାତରେ କାର୍ଯ୍ୟ ନ ଥାଏ । ଏହି ସମୟରେ ଭାରତର ପ୍ରତ୍ୟେକ ଅଞ୍ଚଳରେ

ଲୋକନୃତ୍ୟ ଅନୁଷ୍ଠିତ ହୋଇଥାଏ । ଏହା ଅବସର ବିନୋଦନ ହେବା ସଙ୍ଗେ ସଙ୍ଗେ କିଛି ଅର୍ଥ ଉପାର୍ଜନ ହୁଏ । ଦିନରେ ମୂଲ ଲାଗିବା ଏବଂ ଅନ୍ୟାନ୍ୟ କାର୍ଯ୍ୟ ସହ ରାତ୍ରରେ ନାଟ୍ୟାଭ୍ୟାସ, ଗ୍ରାମ୍ୟ ଜନତାର ଜୀବନକୁ ସରସ କରେ । ଦ୍ରାରିଦ୍ର୍ୟର କଷାଘାତ ମଧ୍ୟରେ ଜୀବନକୁ ଯେ ସରସ ସୁନ୍ଦର କରାଯାଇପାରେ, ତାହା ହିଁ ବିଚିତ୍ର । ଅଭାବ ଜନିତ ପରିବେଶରେ ମଧ୍ୟ, ବେଶ ଭୂଷାରେ ସଜ୍ଜିତ ହୋଇ କିଛି ସମୟ ପାଇଁ ଏମାନେ ସମ୍ରାଟ ହୁଅନ୍ତି । କର୍ମ ଜଞ୍ଜାଳ ମଧ୍ୟରେ ନିଜର ଦୁଃଖ କାହାଣୀ ଅନ୍ୟ ନିକଟରେ ପ୍ରକାଶ କରିବାର ଅବସର ଖୁବ୍ କମ୍ । କିନ୍ତୁ କୌଣସି ସମୟରେ ଦଣ୍ଡଭୋକ୍ତା ଦୈନ୍ୟ ଭାବ ପ୍ରଦର୍ଶନ କରି ଧନାର୍ଜନ କରିବାକୁ ଚାହେଁ ନାହିଁ । ଈଶ୍ୱର ପାର୍ବତୀଙ୍କ ଭକ୍ତ ଭାବରେ ସେ ଯଜମାନ ଓ ଦର୍ଶକଙ୍କ ସମ୍ମୁଖରେ ପହଞ୍ଚିଛି କିନ୍ତୁ ଜଣେ ସାଧାରଣ ଚାଷୀ ବା ମୂଲିଆ ଭାବରେ ନୁହେଁ ଏହା ହିଁ ଭୋକ୍ତାଙ୍କ ଉଚ୍ଚାକାଂକ୍ଷା ।

ଏହା ମୁଖ୍ୟତଃ ଭକ୍ତି ଓ ଆନନ୍ଦର ଅନୁଷ୍ଠାନ । ଦୈନନ୍ଦିନ ଲୋକ ଜୀବନର ସୁଖ ଦୁଃଖର କାହାଣୀକୁ ନେଇ ଏହାର ସଂଯୋଜନା । ଜୀବନକୁ ଉନ୍ନତ କରିବାର ଯେଉଁ ପ୍ରଚେଷ୍ଟା ତାହା ଦଣ୍ଡ ନାଟର ଶ୍ରେଷ୍ଠ ଉଦ୍ଦେଶ୍ୟ । ଦଣ୍ଡନାଟରେ ଅଭିନୀତ ବିଷୟ ଏକ ବର୍ଣ୍ଣନୀୟ କାହାଣୀ ନୁହେଁ ବରଂ ଜୀବନକୁ ଏକ ନୂତନ ସନ୍ଦେଶ ତଥା ପ୍ରେରଣା ଦେଇ ଗଢି ତୋଳିବାର ପ୍ରୟାସ ମାତ୍ର । ଶବରର ଜୀବନ ଯାପନ ପ୍ରଣାଳୀର ସ୍ପଷ୍ଟ ଚିତ୍ର ଏଥିରେ ଲକ୍ଷଣୀୟ । ଗାଁ ଗହଳୀରେ ସ୍ତ୍ରୀ ଲୋକଙ୍କ କପାଳ, ଗାଲ ଓ ହାତରେ ଚିତା କୁଟାଇବାରେ ଶବରୁଣୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେ ଏସବୁ କାର୍ଯ୍ୟ କରେ, କିଛି ଅର୍ଥ ବା ଡାଲି ଚାଉଳ ବିନିମୟରେ, ଫଳରେ ତାହାର ସାଂସାରିକ କାର୍ଯ୍ୟ ସମ୍ପାଦନ ହେବା ସଙ୍ଗେ ସଙ୍ଗେ ଶବରର କଷ୍ଟ ଲାଘବ ହୁଏ । ସେ କହେ-

ବକ୍ଷପରେ ଫୁଟିବି ଭ୍ରମର ଯତନରେ
ଦେଳିପୁରେ କାନ୍ଥ ଦୋଳେ ରଦ୍ଧ ପଇଙ୍କରେ
ଦେଖୁଥିବେ ଗୋ ସେତେବେଳେ ମନେ ପକାଇବ ॥
(ବାଲେଶ୍ୱରରୁ ସଂଗୃହୀତ)

ଗ୍ରାମ୍ୟ ସମାଜରେ ଗରୀବ ପରିବାରର ସ୍ୱାମୀ ଓ ସ୍ତ୍ରୀ ଶାରୀରୀକ ପରିଶ୍ରମ କରିବାକୁ ବାଧ୍ୟ । ସେମାନେ ପରସ୍ପର ନିର୍ଭରଶୀଳ । ଉଭୟ ଯେ ଯାହାର କାର୍ଯ୍ୟରେ ସଚେତନ । କିଛି ଅସୁବିଧା ହେଲେ ମାନ, ଅଭିମାନ ଆସେ, ତାହା ଆମେ ଧୂଳିଦଣ୍ଡ ପର୍ଯ୍ୟାୟରେ ଦେଖିବାକୁ ପାଉ -

ପୁରୁଷ - ବେଳ ହେଲା ରୋଠକୁ ଯିବି, ମଣିଆର ମା,
ମୋର ଗାଈ ପଳେଇଲା ଗଳେ ବାନ୍ଧିବି, ମଣିଆର ମା,
ମୋର ଗାଈ ପଳେଇଲା ଝିଅ ମାନକୁ, ମଣିଆର ମା
ତୁ ତ ଘୋଟଣା ଆଣୁନୁ ବାରି ତଳକୁ ମଣିଆର ମା ॥

ସ୍ତ୍ରୀ- ଯାଉଥିଲି ପରା ମାଣ୍ଡିଆ ତୁରା, ମଣିଆର ବାପ
ମୁଣ୍ଡଟାଳ ତୁଣ୍ଡରେ ମାରି, ମଣିଆର ବାପ ॥

ପୁରୁଷ- ତୁ ତ ତୁଛାଟୁ ହେଉଛୁ ପିଲା ସୁଆଗୀ, ମଣିଆର ମା
ତୁ ତ ପିଲା ଧରିଲେ ହେଉଛୁ ରାଗୀ, ମଣିଆର ମା ॥

ସ୍ତ୍ରୀ- ପିଲାଟୁ ହେଲାଣି ଦେଡ଼ ବରଷ, ମଣିଆର ବାପ
ତମେ ଦିନେ ଛାଡି ଦିନେ ଆସ, ମଣିଆର ବାପ ॥ (୮୬)

* * * * * *

ଏହି ପରିପେକ୍ଷାରେ ଗ୍ରାମର ଚୌକିଦାର/ଜମାଦାର ଚରିତ୍ରର ବିଶେଷତ୍ୱ ଲକ୍ଷ୍ୟ କରାଯାଇପାରେ । ଏମାନଙ୍କ ଅଭାବୀ ଜୀବନ ସମସ୍ୟା ବହୁଳ । ଦିନକୁ ଦିନ ଦୈବୀ, ଦୁର୍ବିପାକ, ମହଙ୍ଗା, ମରୁଡି ମଧ୍ୟରେ ଅଭାବ ଜୀବନ ପ୍ରତିଫଳିତ ହୋଇଛି ଚଢେୟା ନୃତ୍ୟ ମାଧ୍ୟମରେ-

ମାସକୁ ଆମର ଥିଲା ଆଠଟଙ୍କା
ପଞ୍ଚାଇତ ଯୋଗୁଁ ବଢିଲା ଅଧିକା ।
ନୋଟିସ ଟାଗିଦା କରି କରି ଆମେ
ଚୀଦନୁ ଗଳୁଣି ସରି । (ବାଲେଶ୍ୱରରୁ ସଂଗୃହୀତ)

ଗ୍ରାମର ଅନ୍ୟତମ ଅଭାବୀ ଚରିତ୍ର ହେଲା- ଜଗାଳି (Watch man) ତାହାର ଦରମା ଯାହା ଦଶଦିନକୁ ନିଅଣ୍ଟ । ଗ୍ରାମବାସୀଙ୍କ ଦାନ, ଦୟା ଉପରେ ସେ ନିର୍ଭରଶୀଳ । ଏପରି କେତେଦିନ ଚଳିବ ? ମାଗଣାରେ ଡାକନ୍ତି । ସମସ୍ତଙ୍କ ଦୁଃଖରେ ସେ ଛିଡାହୁଏ । କିନ୍ତୁ କେହି ତାର ଦାରିଦ୍ର୍ୟ ଜୀବନକୁ କିଛି ମଧ୍ୟ ଲାଘବ କରନ୍ତି ନାହିଁ । ତା'ଜୀବନ ଅଭାବରେ ଘାଣ୍ଟି ହୋଇଯାଏ । ଅନ୍ୟ ବାଟରେ କିଛି କିଛି ଆଦାୟ କରିବା ପାଇଁ ପଛାଏ ନାହିଁ -

ଚଳିଯାଏ ଯେବେ ଦେସୁ
ଖାଇଦିଏ ଭଲେ ଟିସୁ ।
ଲେଖିତା ଅରଚି ଦରଣ ଦାଉଛି
ଯାହାଦେବ ମୋତେ ଦିଅ ହଇଦ ॥
(ଛିଲୁଣ୍ଡି, ଗଞ୍ଜାମରୁ ସଂଗୃହୀତ) ।

ଦଣ୍ଡନାଟରେ ଯେଉଁ ସବୁ ଚରିତ୍ର ଆସେ, ସମସ୍ତେ ଦାରିଦ୍ର୍ୟ ଜୀବନର ଏକ ଏକ ମୂର୍ତ୍ତିମନ୍ତ ପ୍ରତୀକ । କିନ୍ତୁ ଉଚ୍ଚ ସମାଜର ସ୍ୱଚ୍ଛନ୍ଦ ଚରିତ୍ର ଏଥିରେ ଦେଖିବାକୁ ମିଳେ ନାହିଁ ଏବଂ ଏହା ଏପର୍ଯ୍ୟନ୍ତ ଗୃହୀତ ହୋଇପାରିନାହିଁ ।

ଯେଉଁମାନେ ସନ୍ତାନ କାମନା ଉଦ୍ଦେଶ୍ୟରେ ଦଣ୍ଡନାଟ ଆୟୋଜନ କରନ୍ତି, ସେମାନଙ୍କ କାମନା ପୂରଣ ହେବାପରେ ପୁତ୍ର ଜନ୍ମ ହେଲେ, ଦଣ୍ଡାସି/ ଦଣ୍ଡପାଣି/ ଈଶ୍ୱର କିମ୍ବା କନ୍ୟା ଜନ୍ମ ହେଲେ ପାର୍ବତୀ/ଉମା ପ୍ରଭୃତି ନାମ ଦେଇଥାନ୍ତି ।

ଦଣ୍ଡନାଟ କୃଷିଭିତ୍ତିକ ପର୍ବ । କୃଷି କର୍ମର ୧୬ ପର୍ଯ୍ୟାୟକୁ ୧୬ ଭାଗରେ ବିଭକ୍ତ କରାଯାଇ ୧୬ ପ୍ରକାର ଦଣ୍ଡରେ ଦଣ୍ଡଭୋକ୍ତାମାନେ ନିଜକୁ ବିନିଯୋଗ କରନ୍ତି । ଅଭିନୟ ମାଧ୍ୟମରେ କୃଷି କର୍ମ ପ୍ରଦର୍ଶନ କରି ଜନ-ସଚେତନତା ଜାଗ୍ରତ କରିବା ଏହାର ଅନ୍ୟତମ ଲକ୍ଷ୍ୟ ।

ଶିବଙ୍କୁ କୃଷି କର୍ମର ଦେବତା ଭାବରେ ଦଣ୍ଡନାଟରେ ଗ୍ରହଣ କରାଯାଇଛି । ତେଣୁ ଶିବଙ୍କୁ ହଳ ଧରିଥିବାର ଏକଦୃଶ୍ୟ ଜଳେଶ୍ୱର ନିକଟବର୍ତ୍ତୀ ଲଙ୍ଗଳେଶ୍ୱର ଗ୍ରାମର ଶିବମନ୍ଦିରରେ ଦେଖିବାକୁ ମିଳେ । ଯେତେଦୂର ମନେ ହୁଏ, ଏହା ଶାବରୀ ସଂସ୍କୃତିର ପ୍ରଭାବ । ଶବରମାନଙ୍କ ଦ୍ୱାରା ଜଗନ୍ନାଥ 'ନୀଳମାଧବ'ରୂପରେ ପୂଜା ପାଇଥିବା ପୁରାଣ - ପ୍ରସିଦ୍ଧ । ସେହିପରି ଶବର ଜାତିରେ ଫସଲ ଆମଦାନୀ ସମୟରେ କାନ୍ଥ-ବାଡରେ ଅନେକ ଅନେକ ଚିତ୍ର ଅଙ୍କନ କରାଯାଏ । ସେ ସବୁ ଫସଲ ଭିତ୍ତିକ ଚିତ୍ର । କାନ୍ଥର ମଧ୍ୟ ଭାଗରେ 'ଲାବେସଙ୍ଗ'ଙ୍କ (ଧରଣୀ ଦେବତା) ଚିତ୍ର । ତା'ପାଖେ ହଳଧରି ଚାଷ କରୁଥିବା ମଣିଷଟିଏ । ତାହା ପୂର୍ବପୁରୁଷଙ୍କ ସଙ୍କେତ ବୋଲି କେହି କେହି କହନ୍ତି । ତାକୁ ଲାଗି 'ଦେମରାକିତୁଂ'- ଏ ଉତ୍ତମ ଫସଲ ଉତ୍ପାଦନର ଦେବତା । ଠାଏ ଠାଏ ଧାନ କେଣ୍ଡାର ବୋଝ ମୁଣ୍ଡେଇ ଥିବା ସ୍ତ୍ରୀ ଚିତ୍ର ମଧ୍ୟ ତାଙ୍କ ପାଖକୁ ଲେଖାଥିବା ଦେଖାଯାଏ ।''(୮୭) ତେଣୁ ଶବର ଜାତିର ଶ୍ରେଷ୍ଠ ଦେବତା ଦେମରାଙ୍କି ତୁଂ ପରବର୍ତ୍ତୀ ସମୟରେ ଶୈବ ଧର୍ମର ପ୍ରଭାବରୁ ଶିବ ହୋଇଥିବା ସମ୍ଭବ । ଏଣୁ ଦଣ୍ଡନାଟ ପରମ୍ପରାରେ ଶିବଙ୍କୁ କୃଷି କର୍ମର ଶ୍ରେଷ୍ଠ କୃଷକ ଭାବରେ ଗ୍ରହଣ କରାଯାଇଛି । ଏହି କୃଷି କର୍ମର ପ୍ରସାର ଓ ପ୍ରଚାର ସର୍ବସାଧାରଣଙ୍କ ନିକଟରେ ଧୂଳିଦଣ୍ଡାଭିନୟ ମାଧ୍ୟମରେ ଉପସ୍ଥାପନା କରିବା ପାଇଁ ଚେଷ୍ଟା କରାଯାଇଛି । ଧାନଚାଷର ଶୁଭାରମ୍ଭ ସାଧାରଣତଃ ଅକ୍ଷୟତୃତୀୟାଠାରୁ ଆରମ୍ଭ ହେଉଥିବା ଯୋଗୁଁ ତାହା ପୂର୍ବରୁ ଏହା ଅଭିନୟ ମାଧ୍ୟମରେ ଦଣ୍ଡନାଟରେ ପ୍ରଦର୍ଶିତ ହେଉଥିବା ତାତ୍ପର୍ଯ୍ୟପୂର୍ଣ୍ଣ । ସାଂପ୍ରତିକ କାଳରେ ବେତାର ଓ ଦୂରଦର୍ଶନ ମାଧ୍ୟମରେ ଯେପରି କୃଷି ସମ୍ପର୍କୀୟ ଆଲୋଚନା କରାଯାଉଛି, ତାହା ଦଣ୍ଡନାଟର ଅବଦାନ କହିଲେ ଭୁଲ ହେବନାହିଁ ।

✿

# ବାଦ୍ୟ

ଗୀତ ଓ ନୃତ୍ୟରେ ବାଦ୍ୟର ଏକ ପ୍ରମୁଖ ସ୍ଥାନ ଥାଏ । ଭାରତୀୟ ପରମ୍ପରାରେ ଗୀତ ଓ ନୃତ୍ୟ ସହ ବାଦ୍ୟକୁ ସମସ୍ଥାନ ଦିଆଯାଉଛି, ତେଣୁ ଗୀତ, ନୃତ୍ୟ ଓ ବାଦ୍ୟର ସମ୍ମିଶ୍ରଣରେ ସୃଷ୍ଟି ହୋଇଛି ସଙ୍ଗୀତ । କେହି କେହି ଗୀତ ଓ ବାଦ୍ୟକୁ ମଧ୍ୟ ସଙ୍ଗୀତ କହିଥାନ୍ତି । ନାଟ୍ୟମନୋରମାରେ କୁହାଯାଇଛି ----

ଗୀତଂ ବାଦ୍ୟଂ ଚ ନୃତ୍ୟଂ ଚ ତ୍ରୟଂ ସଙ୍ଗୀତ ମୁଚ୍ୟତେ ।
ଗୀତ ବାଦ୍ୟେ ଉଭେ। ଏବ ସଙ୍ଗୀତମିତି କେଚନ ।। ୧/୧୪

ବାଦ୍ୟ ଶବ୍ଦର ବ୍ୟୁତ୍ପତ୍ତି ହେଲା, ବାଦି-ଯ । ଏହାର ଅର୍ଥ ବାଜା । ଯାହା ବଜା ହେବାର ଯୋଗ୍ୟ । ଏହି କ୍ରିୟାର ନାମ ବାଦନ । ସଙ୍ଗୀତ ଶାସ୍ତ୍ରାନୁଯାୟୀ ଯାହା ବାଦନ କରାଯାଏ, ତାହା ବାଦ୍ୟ । କେତେକାଳପରେ ବାଦ୍ୟକୁ 'ଯନ୍ତ୍ର' ଭାବରେ ଗ୍ରହଣ କରାଯାଇ ଆଧୁନିକ କାଳରେ 'ବାଦ୍ୟଯନ୍ତ୍ର' ଶବ୍ଦଟି ଗଢାଯାଇଛି । ବାଦନ କାର୍ଯ୍ୟ ଏକ ସହକ୍ରିୟା ଏବଂ ସଙ୍ଗୀତର ଏକ ଅଂଶ ବିଶେଷ ।

ସମ୍ପ୍ରତି ଦଣ୍ଡନାଟରେ ଆଙ୍ଗିକ ଅଭିନୟର ପ୍ରାଧାନ୍ୟ ରହିଥିଲେ ମଧ୍ୟ ତାହାର ଗୀତ ହେଉଛି ମୂଳ ବୀଜ । ତେଣୁ ଗୀତ ଅନୁସାରେ ବାଦନ ପ୍ରକ୍ରିୟା ଚାଲେ । ଦଣ୍ଡନାଟରେ ବାଦ୍ୟ ଏକ ସହାୟକ କାର୍ଯ୍ୟ ସମ୍ପନ୍ନ କରୁଥିବାରୁ ଗୀତ ଓ ବାଦ୍ୟ ଅନୁସାରେ ତାହାର ନୃତ୍ୟ ପରିକଳ୍ପନା କରାଯାଇଥାଏ । ଏଣୁ ଦଣ୍ଡନାଟରେ ଗୀତ ଓ ନୃତ୍ୟ ମଧ୍ୟରେ ଏହାର ବାଦ୍ୟ ଏକ ସଂଯୋଗକାରୀ ଭୂମିକା ନିର୍ବାହ କରେ । ଏଥିରେ ଆଙ୍ଗିକ ଅଭିନୟ ତୁଳନାରେ ବାଚନିକ କଳାର ପ୍ରଭାବ କମ୍ ରହୁଥିବାରୁ ଏହି ଦୁହିଁଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷା କରେ ଢୋଲ ବାଦ୍ୟ ।

ଏହି ପରିପ୍ରେକ୍ଷୀରେ ଦଣ୍ଡନାଟରେ ମୁଖ୍ୟତଃ ତିନି ଶ୍ରେଣୀର ବାଦ୍ୟ ବ୍ୟବହୃତ ହୁଏ, ତାହାହେଲା ଢୋଲ (ଆନଦ୍ଧ), ମହୁରୀ (ସୁଶୀର) ଏବଂ ଝାଞ୍ଜ ବା କରତାଳ (ଘନ) ବାଦ୍ୟ । ଅତିରିକ୍ତ ବାଦ୍ୟ ଭାବରେ ଘଣ୍ଟ, ଶଙ୍ଖ , କାହାଳୀ ଓ ମୃଦଙ୍ଗ ବ୍ୟବହାର କରନ୍ତି । ଦଣ୍ଡନାଟରେ ସୁଆଙ୍ଗ ବା ଯାତ୍ରା ବ୍ୟତୀତ ଅନ୍ୟ କୌଣସି ଅଭିନୟ ସମୟରେ ଆଧୁନିକ ବାଦ୍ୟଯନ୍ତ୍ର ବ୍ୟବହାର କରାଯାଏ ନାହିଁ ।

ଢୋଲ ଓ ଶିଙ୍ଗା ବାଦ୍ୟର ପ୍ରଚଳନ ବହୁକାଳରୁ । ଶିଙ୍ଗା ବାଦ୍ୟର ଅନୁରୂପ ଆଧୁନିକ 'କାହାଳୀ' । ଉଭୟ ବାଦ୍ୟ ଆଦିବାସୀ ପରମ୍ପରାରୁ ଆନୀତ । ଆଦିବାସୀମାନେ ନୃତ୍ୟପ୍ରିୟ । ଗୀତ ଓ ନୃତ୍ୟ ସେ ଜାତିର ଜୀବନ । ତେଣୁ ସେମାନେ ନୃତ୍ୟ ପାଇଁ ଢୋଲ, ଶିଙ୍ଗା ବ୍ୟତୀତ

ତାମ୍ବୁରା, ଢଗାଦିଙ୍ଗ, କୁରାଂରଫଡ ପ୍ରମୁଖ ବାଦ୍ୟଯନ୍ତ୍ର ମହଳ୍ଭୁଦରଖିଥାନ୍ତି । ଆଦିବାସୀମାନଙ୍କର ପ୍ରିୟ ବାଦ୍ୟ ଢୋଲ, ଶିଙ୍ଗା(ପରବର୍ତ୍ତୀ କାଳରେ କାହାଳୀ) ଦଣ୍ଡନାଟ୍ୟ ପରମ୍ପରାରେ ସଂଯୋଜିତ । ପ୍ରାଚୀନ ଆଦିବାସୀ ଶବର ସଂପ୍ରଦାୟ ସମେତ ଦଣ୍ଡପରମ୍ପରାରେ ଢୋଲବାଦ୍ୟ, କାହାଳୀ, ମହୁରୀ ଏବଂ ଝାଞ୍ଜ ବା କରତାଳ ଶୁଭକାର୍ଯ୍ୟରେ ବ୍ୟବହୃତ ହେଉଥିବା ଯୋଗୁଁ ଅଶୁଭ କାର୍ଯ୍ୟରେ ଏସବୁ (ଯଥା- ମୃତ୍ୟୁ, ମହାମାରି, ହଇଜା, ବସନ୍ତ, ପ୍ରେତାଦି) ବ୍ୟବହାର କରନ୍ତି ନାହିଁ । ଏସବୁ କାର୍ଯ୍ୟ ସକାଶେ ଅନ୍ୟ ବାଦ୍ୟ ବ୍ୟବହୃତ ।

ଫୁଲଗମ୍ଭାରୀ କାଠ ହାଲୁକା ଏବଂ ମଜଭୁତ ହେଉଥିବା ଯୋଗୁଁ ଏଥିରୁ ଢୋଲବାଦ୍ୟର ଖୋଳ ପ୍ରସ୍ତୁତ କରାଯାଏ । ଏହି କାଠର ବର୍ଣ୍ଣ ଶ୍ୱେତ ଓ ଚିକ୍କଣ । ଢୋଲ, 'କଳାପାଟ' ନାମରେ କେତେକ ଅଞ୍ଚଳରେ ପ୍ରଚଳିତ । କଳାପାଟ ଯୋଗିନୀର ନାଦ ଢୋଲ ତାଳ ସଦୃଶ ହୋଇଥିବା ଯୋଗୁଁ କୌଣସି କାରଣ ବଶତଃ ସେ ଗର୍ବରେ ଯାଇ ଫୁଲଗମ୍ଭାରୀ ଗଛରେ ଲୁଚିଥିଲେ । ଦେବୀ କାଳୀ ଯୋଗ ବଳରେ ଜାଣି ସେହି ବୃକ୍ଷକୁ ହାଣୀ କଳାପାଟ -ଯୋଗିନୀକୁ ଧରିଥିବା ଯୋଗୁଁ ଢୋଲର ଅନ୍ୟନାମ 'ଯୋଗ୍ନି କଳାପାଟ' ।

ଢୋଲର ଲମ୍ବ ପାଞ୍ଚପାଆ କିମ୍ବା ଦେଢପୁଖା (ଦେଢହାତ) ହେବ । ସେଥିରେ ୩୮ ବୋଦି ଲାଗିବ । ଢୋଲ ଦ୍ୱାରା ୨୭ ପ୍ରକାର ତାଳ ଏବଂ ୩ ପ୍ରକାର ପୂର୍ଣ୍ଣରାଗର ସଙ୍ଗୀତ ସୃଷ୍ଟି ହୋଇପାରିବ । ଢୋଲର ଉଭୟ ପାର୍ଶ୍ୱସ୍ଥ ଚର୍ମକୁ 'ଚାୟାଁ' ଓ 'ଧାୟାଁ' କୁହାଯାଏ । ଏହାର ପ୍ରସ୍ତୁତ ପ୍ରଣାଳୀ ମଧ୍ୟ ବିଚିତ୍ର । ଖୁରା-ବସନ୍ତ ରୋଗରେ ମୃତ ଗୋରୁ ଚମଡାରେ ଢୋଲର 'ଧାୟାଁ' ପ୍ରସ୍ତୁତ ହୁଏ । ଏହି ଚମଡାକୁ ଆବଶ୍ୟକୀୟ ସଂସ୍କାର କରାଯାଇ ବ୍ୟବହାର କରାଯାଏ । ଗାଲୁଆ ବସନ୍ତରେ ମୃତ ମେଷର ଚମଡାକୁ ସଂସ୍କାର କରି 'ଚାୟାଁ' ପ୍ରସ୍ତୁତ କରାଯାଏ । ଏହାର ଅଭାବରେ ମୃତ ବାନର ବା ବିଲୁଆ ଚମଡାରେ 'ଚାୟାଁ', ନିର୍ମିତ ହୋଇପାରେ । ବୋଦି' (ଯାହା ସାହାଯ୍ୟରେ ଉଭୟ 'ଚାୟାଁ ଓ ଧାୟାଁ ଭିଡାଯାଏ ) ଷଣ୍ଢ ଚମଡାରୁ ପ୍ରସ୍ତୁତ । ଏହାପରେ ଗନ୍ଧର୍ବ ପୂଜା କରି ଢୋଲକୁ ଭିଡିବାକୁ ହୁଏ । ଢୋଲବାଦ୍ୟକୁ ଗନ୍ଧର୍ବଙ୍କ ଦୁନ୍ଦୁଭି ବୋଲି ଗ୍ରହଣ କରାଯାଇଛି ।

ଏହି ଢୋଲବାଦ୍ୟକୁ ଦଣ୍ଡନାଟର ପାଟଢୋଲିଆ (ମୁଖ୍ୟ ତେର ଭୋକ୍ତାଙ୍କ ମଧ୍ୟରୁ ଜଣେ ) ଏବଂ ଅନ୍ୟ ଜଣେ ସହଯୋଗୀ ବାଦନ କରନ୍ତି । ପାଟଢୋଲିଆ ଦୈବୀଚରିତ୍ର ବା ମୁଖ୍ୟଚରିତ୍ରମାନଙ୍କ ପାଇଁ ବାଦନ କଲାବେଳେ ଅନ୍ୟ ଚରିତ୍ରମାନଙ୍କ ସକାଶେ ସହଯୋଗୀ ଢୋଲିଆ ବାଦ୍ୟ ବାଦନ କରିଥାଏ ।

ଢୋଲବାଦ୍ୟର ତାଳ ସକାଶେ ତେନ୍ତୁଳି ଗଛର ଡାଳ କିମ୍ବା ବରଗଛକୁ ପୂଜା କରି ବରଓହଳକୁ ବ୍ୟବହାର କରାଯାଇପାରେ । କେତେକ ଦଣ୍ଡଦଳ କେନ୍ଦୁବେତକୁ ମଧ୍ୟ ଏଥିପାଇଁ ବ୍ୟବହାର କରନ୍ତି । ଢୋଲ ବାଡିର ଲମ୍ବ ଦୁଇମୁଠା ଦୁଇ ଅଙ୍ଗୁଳି ବିଶିଷ୍ଟ ।

ଢୋଲର ବିଭିନ୍ନ ଅଂଶରେ ବିଭିନ୍ନ ଦେବଦେବୀଙ୍କ ଅବସ୍ଥାନ ରହିଛି। ''ଢୋଲସାଗର''ର 'ସ୍କନ୍ଧ ପଟିକା' ଅଂଶରେ ଉଲ୍ଲେଖ ଅଛି-

ସ୍ୱୟଂ ପୁତ୍ରଂ ଭବେ ଢୋଲଂ
ବ୍ରହ୍ମ-ପୁତ୍ରଂ ଚ ଢୋରିକା ।
ପୌନ ପୁତ୍ରଂ ଭବେ ନାଦଂ
ଭୀମ-ପୁତ୍ରଂ ଗଜା ବଲମ୍ ।।
ବିଷ୍ଣୁ-ପୁତ୍ରଂ ଭବେ ପୁଡଂ
ନାଗପୁତ୍ରଂ କୁଣ୍ଡଳିକା ।
କୁରୁମ-ପୁତ୍ରଂ ଢଂ ଦୋଟିକା,
ଗୁଣୀ ପୁତ୍ରଂ କସ୍ଣିକା ।। (୮୮)

ଅର୍ଥାତ୍, ବ୍ରହ୍ମା-ଢୋରିକା, ପବନ-ନାଦ, ଭୀମ-ଗଜାବଲ୍ଲ ବା ବଜାଇବା କାଠି, ବିଷ୍ଣୁ-ପୁଡି, ଗୁଣଜ୍ଞ-କସ୍ଣିକା, କୁରୁମ୍-ସ୍କନ୍ଧପଟିକା, ନାଗପୁତ୍ର-କୁଣ୍ଡଳୀରେ ବାସ କରନ୍ତି । ଏହା ବ୍ୟତୀତ ଢୋଲର ନିର୍ମାଣ କୌଶଳ ଏବଂ ସୃଷ୍ଟି ସମ୍ପର୍କରେ ଅନେକ ତଥ୍ୟ 'ଢୋଲ ସାଗର'ରୁ ମିଳେ । ବ୍ରହ୍ମା,ବିଷ୍ଣୁ, ମହେଶ୍ବର ଏବଂ ପାର୍ବତୀଙ୍କ ଦ୍ୱାରା ଏହି ସୃଷ୍ଟ ଢୋଲ ଭଗବାନ ମହେଶ୍ୱର ପ୍ରଥମେ ଧାରଣ କରି ସୃଷ୍ଟିର ମନୋରଞ୍ଜନ କରିଥିଲେ ।

ଢୋଲର ପ୍ରଚଳନ ଓଡିଶାର ବିଭିନ୍ନ ଲୋକନୃତ୍ୟ ମଧ୍ୟରେ ପ୍ରବେଶ କରିଛି । ଚଇତି ଘୋଡା ବା ଘୋଡାନାଚ , ପାଟୁଆ ନାଚ, ମୋଗଲ ତାମସା, ଝାମୁଯାତ୍ରା ବା ଉଡାଯାତ୍ରା, ଛଉନାଚ, ଲଉଡି/ଲାଉଡି ନାଚ, ରଣପା, ବାଘନାଚ, ପଡିଆଁ (ବାଲେଶ୍ୱର) ଡାଲଖାଇ, ମାୟାଲାବଡ, ଜାମୁଡାଳି, କରମା, ରସରକେଲି, ଦଂଢ଼, ପାଇକ ନାଚ, ଫରୀନାଚ, କେଉଁଝରର ପାଇକାଳୀ, ବଣ୍ଡିନାଚ, ଶବ୍ଦସ୍ୱର, ଧନୁ ଯାତ୍ରା ପ୍ରଭୃତି ଲୋକନୃତ୍ୟରେ 'ଢୋଲ' ବାଦ୍ୟ ବହୁଳ ବ୍ୟବହୃତ ।

'ମର୍ଦ୍ଦଳ' ଖଜୁରୀ ଗଛର ଗଣ୍ଡିରୁ ପ୍ରସ୍ତୁତ ହୁଏ । ଦଣ୍ଡନାଟରେ ଏହାର ପ୍ରୟୋଗ ଗୌଣ ହେଲେ ମଧ୍ୟ ଏହାକୁ ଉପେକ୍ଷା କରାଯାଇ ନପାରେ । ଏହାର ପ୍ରସ୍ତୁତି ପ୍ରଣାଳୀ ସମ୍ପର୍କରେ ଉଲ୍ଲେଖ ଅଛି ।

''ତେତ୍ରିଶ ଅଙ୍ଗୁଳ, ଅଟଇ ମର୍ଦ୍ଦଳ
ବାମ ପାଶ୍ୱେ ଦଶାଙ୍ଗୁଳ ।
ଦକ୍ଷିଣ ଭାଗରେ ରଖି ନବାଙ୍ଗୁଳ
ନିର୍ମାଣ ହଇ ତହାଳ ।।

ମ୍ଲେଚ୍ଛ ଲୋକମାନେ ଜାଣିଲେ ପ୍ରଥମେ
ସେ ବାଦ୍ୟର କଉତୁକ ।
କାମଧେନୁ ଚର୍ମ, ଧନ୍ୟ ତାର କର୍ମ
ଲାଗିଲା ବାଦ୍ୟ ଯାକ ।। (୮୯)

ମର୍ଦ୍ଦଳ ପ୍ରଥମେ ଅସ୍ପୃଶ୍ୟ ଜାତିର ଲୋକେ ବ୍ୟବହାର କରୁଥିବା, ଏଇଥିରୁ ମନେ ହୁଏ । ମର୍ଦ୍ଦଳ ସମ୍ପର୍କରେ 'ନାଟ୍ୟ ମନୋରମା'ର ମତ ହେଉଛି -

ମର୍ଦ୍ଦଳଃ ଖାଦିର ଶ୍ରେଷ୍ଠା ହୀନସ୍ୟାଦ୍‌ଦ୍ୟ ଦାରୁଜଃ
ରକ୍ତଚନ୍ଦନଜୋ ରମ୍ୟୋ ଗମ୍ଭୀରଧ୍ୱନି ରୁଚକୈଃ ।। (୫/୪୫)

ଅର୍ଥାତ୍, ''ଖଇର କାଠ ନିର୍ମିତ ମର୍ଦ୍ଦଳ ଶ୍ରେଷ୍ଠ । ଅନ୍ୟ କାଠ ଏଥି ସକାଶେ ଅନୁପଯୁକ୍ତ । ରକ୍ତଚନ୍ଦନ କାଠରେ ପ୍ରସ୍ତୁତ ମର୍ଦ୍ଦଳରେ ମନୋହର ଧ୍ୱନି ସୃଷ୍ଟି ହୁଏ '' । ମର୍ଦ୍ଦଳ ଲୟରେ ଦେଢହାତ । ବାମପାଖ (ଟାୟାଁ) ୧୨ ଆଙ୍ଗୁଳ ଏବଂ ଡାହାଣ ପାର୍ଶ୍ୱ (ଧାୟାଁ) ୧୧ ଆଙ୍ଗୁଳ ହେବା ଉଚିତ । ମର୍ଦ୍ଦଳ/ମାଦେଳୀ କେତେକ ଦଣ୍ଡନାଟ ଦଳ ଧୂଳିଦଣ୍ଡାଭିନୟ ସମୟରେ ବ୍ୟବହାର କରୁଥିବା ଦେଖାଯାଏ ।

ଦଣ୍ଡନାଟ ବ୍ୟତୀତ ମର୍ଦ୍ଦଳ ଚଇତି ତାମସା (ଭଦ୍ରକ), ଝୁମୁର ନାଟ (ବାରିପଦା, ଢେଙ୍କାନାଳ) କରମା, ଡାଲଖାଇ, ରସରକେଳି ପ୍ରଭୃତି ଲୋକନୃତ୍ୟମାନଙ୍କରେ ବହୁଳ ବ୍ୟବହୃତ ।

ଢୋଲ,ମର୍ଦ୍ଦଳ, ପଖାଉଜ ପ୍ରଭୃତି ଚର୍ମ ଜାତୀୟ ବାଦ୍ୟମାନଙ୍କରେ ଯେଉଁ ପ୍ରଲେପ ଦିଆଯାଏ, ପରମ୍ପରାନୁସାରେ ତାହାକୁ 'ଖରଳି' କୁହାଯାଏ । ଏହାର ପ୍ରସ୍ତୁତି ସମ୍ପର୍କରେ 'ନାଟ୍ୟମନୋରମା'ରେ ଉଲ୍ଲେଖ ଅଛି -

''ବିଭୂତି ଗୈରିକଂ ଭକ୍ତଂ
କେନ୍ଦୁକେନ ଚ ସଂଯୁତମ୍,
ଯଦ୍‌ବା ଚିପିଟକଂ ଦେୟଂ
ଜୀବନୀ ସରବ ମିଶ୍ରିତମ୍ ।
ସହମେକତ୍ର-ପିଷ୍ଟଂ ତଲ୍ଲେପଃ
ଖରଳି ରୁଚ୍ୟତେ'' ।(୫/୫୬)

ଅର୍ଥାତ୍,'ପାଉଁଶ, ଗେରୁ, ଭାତ ବା ଚୁଡ଼ା ଓ ହରିତାକୁ ଏକତ୍ର କରି ଯେଉଁ ପ୍ରଲେପ ଦିଆଯାଏ ତାହାର ନାମ ଖରଳୀ ବା କିରଣ''। ଗ୍ରାମାଞ୍ଚଳରେ ଏହା 'ଖରଳି' ଏବଂ ସହରାଞ୍ଚଳରେ 'କିରଣ' ନାମରେ ପରିଚିତ । ଏହା ବାଦ୍ୟର ଦକ୍ଷିଣ ଭାଗରେ ଦିଆଯାଏ । ବାମ ପାର୍ଶ୍ୱରେ ଉତ୍ତମ

ନାଦ ପାଇଁ ଯେଉଁ ପ୍ରଲେପ ବ୍ୟବହୃତ ହୁଏ, ତାହାକୁ 'ପୂରିକା' କହନ୍ତି । ତାହାର ପ୍ରସ୍ତୁତ ପ୍ରଣାଳୀ ହେଲା-

''ପରିଦାନାମ ଭକ୍ତଭାଦ ନିପିଟଦ୍ଧାନାମନ୍ୟତମେବ
ଜଳପିଷ୍ଟ ଭସ୍ମ ।''
(ନାଟ୍ୟ ମନୋରମା, ପୃ ୧୨୪)

ଭାତ, ଲିଆ ବା ଚୁଡା ଏହି ତିନୋଟି ମଧ୍ୟରୁ ଯେ କୌଣସି ଗୋଟିଏ ପଦାର୍ଥ ସହ ପାଣି ଓ ପାଉଁଶ ମିଶ୍ରଣ କରି ଚକଟିଲେ ପୂରିକା ହୁଏ ।

ଦଣ୍ଡନାଟରେ ଥିବା ଝାଞ୍ଜ, କରତାଳ, ପ୍ରଭୃତି ଧାତୁ ବାଦ୍ୟ 'କଂସା ଧାତୁ' ଦ୍ୱାରା ନିର୍ମିତ । ଏହା ତାଳବାଦ୍ୟର ସହାୟକ ହୋଇ ପାରି ନ ଥାଏ । କୀର୍ତ୍ତନ ବେଳେ ଏହାର କିଛି ସହାୟକ ଭୂମିକା ଥାଏ ।

ଦଣ୍ଡନାଟ ମାଧ୍ୟମରେ ଆଲୋଚନା କଲେ ମନେ ହୁଏ, ନୃତ୍ୟର ଆଦ୍ୟ ଅବସ୍ଥାରୁ ଆନଦ୍ଧ (ଚର୍ମ ନିର୍ମିତ) ଏବଂ ଶୁଷିର ବାଦ୍ୟ (ବାୟୁ ଚାଳିତ) ପ୍ରଚଳନ ହୋଇଛି । ପରବର୍ତ୍ତୀ ସମୟରେ ତତ୍ (ତାରଯୁକ୍ତ) ଓ ଘନ ବାଦ୍ୟ (ଧାତୁ ନିର୍ମିତ) ସୃଷ୍ଟି ହୋଇଥିବା ସମ୍ଭବ ।

ଦଣ୍ଡନାଟରେ ଢୋଲ, ମହୁରୀ ଓ ଝାଞ୍ଜ ବାଦ୍ୟର ପରିଚାଳନା କୌଶଳ ପ୍ରଥମେ ଅସ୍ପୃଶ୍ୟ ଜାତି ମଧ୍ୟରେ ସୀମାବଦ୍ଧ ଥିବା ଦଣ୍ଡ ପରମ୍ପରା ପ୍ରକାଶ କରେ । 'ଢୋଲ' ଦଣ୍ଡନାଟର ମୁଖ୍ୟ ବାଦ୍ୟଯନ୍ତ୍ର । ମହୁରୀ ଓ ଝାଞ୍ଜ ଏହାର ସହାୟକ । ଢୋଲ ବାଦକର ବାଦନ ପ୍ରକ୍ରିୟା ସ୍ୱତନ୍ତ୍ର । ସେ ତାହାର ନିଜସ୍ୱ ଶୈଳୀରେ ତାଳ ସୃଷ୍ଟି କରି ନୃତ୍ୟକୁ ଛନ୍ଦାୟିତ କରେ । ତାହାର ବାଦନ ଶୈଳୀ ପରିମାର୍ଜିତ ହୋଇ ତବଲା, ମୃଦଙ୍ଗ ଓ ପଖାଉଜ ଦ୍ୱାରା ଶାସ୍ତ୍ରୀୟ ମାର୍ଗ ଗ୍ରହଣ କରିଛି ।

ଏହି ନିରକ୍ଷର ବାଦକମାନେ ସଂପ୍ରତି ଦଣ୍ଡନାଟରେ ଅସ୍ପୃଶ୍ୟ ଶ୍ରେଣୀର । ପରମ୍ପରା ଅନୁସାରେ ନିଜକୁ ଦଣ୍ଡନାଟରେ ନିୟୋଜିତ କରିଥାନ୍ତି । ନାଟ ସମୟରେ ସେମାନେ ମୁଣ୍ଡରେ ଝୁଲର ଗୋପବାଡି ବାନ୍ଧି ବିଭିନ୍ନ ଢଙ୍ଗରେ ବାଦ୍ୟ କୌଶଳ ପ୍ରଦର୍ଶନ କରି ନୃତ୍ୟ କରନ୍ତି । ଦଣ୍ଡବାଦ୍ୟ ବାଦନ ଅନ୍ୟ ସମୟରେ ପ୍ରାୟ ନିଷେଧ ।

*

## ବେଶ ଓ ପୋଷାକ

ଦଣ୍ଡନାଟରେ ସମସ୍ତ ବେଶ ପୋଷାକ ସାଧାରଣ । ସମସ୍ତ ଭୋକ୍ତା କଷାୟ ବସ୍ତ୍ର ବା ଗାମୁଛା ୧୫ ଦିନ ଯାଏଁ ପରିଧାନ କରିଥାନ୍ତି ଓ ଗୋଟିଏ ଗୋଟିଏ ଦଣ୍ଡପତକା, ମୟୂର ଚନ୍ଦ୍ରିକାଗୁଚ୍ଛ ଓ ବାଉଁଶବେତ ସେମାନଙ୍କ ନିକଟରେ ରହିଥାଏ । ଧୂଳିଦଣ୍ଡ, ପାଣିଦଣ୍ଡ, ଅଗ୍ନିଦଣ୍ଡ ଏବଂ ବନଦଣ୍ଡ ସମୟରେ କୌଣସି ସ୍ୱତନ୍ତ୍ର ବେଶ ପୋଷାକର ଆବଶ୍ୟକ ହୁଏ ନାହିଁ ।

କିନ୍ତୁ ମଧ ରାତ୍ରରେ ହେଉଥିବା ନନ୍ଦୀ, ଈଶ୍ୱର ପାର୍ବତୀ, ଚଢେୟା ଚଢେୟାଣୀ, ଶବର ଶବରୁଣୀ, ପତ୍ରଶଉରା ପତ୍ରଶଉରାଣୀ ପ୍ରଭୃତି ନୃତ୍ୟରେ ଚରିତ୍ରମାନଙ୍କର ବେଶ ପୋଷାକରେ ସ୍ୱାତନ୍ତ୍ର୍ୟ ଓ ପାରମ୍ପରିକତା ଲକ୍ଷ୍ୟଣୀୟ ।

*

## ଆଧୁନିକ ନାଟକରେ ଦଣ୍ଡନାଟର ଭୂମିକା

ଦଣ୍ଡନାଟ ଭାରତର ସର୍ବପ୍ରାଚୀନ ଅନୁଷ୍ଠାନ ହୋଇଥିବାରୁ ବହୁ ନାଟ୍ୟକଳା ଏହାର ଉପାଦାନ ନେଇ ସମୃଦ୍ଧ । ଅନେକ ଆଦିମ ଉପାଦାନରେ ସମୃଦ୍ଧ ଦଣ୍ଡନାଟ, ପ୍ରାଚୀନ ଓ ଆଧୁନିକ ନାଟ୍ୟ ଜଗତକୁ ଅନେକ ପ୍ରେରଣା ଯୋଗାଇଛି । ଦଣ୍ଡନାଟରେ ଅନ୍ୟତମ ଗାୟକ ବୀଣାକାରର ପ୍ରତିଛବି ପାଲା, ଦାସକାଠି, ଗାହାଣର ଗାୟକମାନଙ୍କଠାରେ ଦେଖାଯାଏ । ଦଣ୍ଡନାଟରେ ଅନ୍ୟତମ ଗୌଣ ଚରିତ୍ର ବାଇଧନର ମୟୂର ଚନ୍ଦ୍ରିକା ଗୁଚ୍ଛ ପାଲାଗାୟକର ଚାମର ସହ ତୁଳନା କରାଯାଇପାରେ ।

ଏହାର ବୀଣାକାର ନାଟକର ସୂତ୍ରଧର । ନାଟକର ସୂତ୍ରଧର ସୂଚନା, ପ୍ରସ୍ତାବନା ବା ନାଟ୍ୟାରମ୍ଭକୁ ଯେପରି ସୁଚାରୁରୂପେ ଉପସ୍ଥାପନା କରେ, ସେହିପରି ଦଣ୍ଡନାଟରେ ବୀଣାକାର ଏହାର ନିୟମ, ବିଷୟ ବସ୍ତୁ ପ୍ରଭୃତି ପ୍ରଥମେ ସୂଚିତ କରେ । ଦଣ୍ଡ ସୁଆଙ୍ଗରୁ ମଧ ଆଧୁନିକ ଯାତ୍ରା ଆବଶ୍ୟକୀୟ ଉପାଦାନ ନେଇ ଗୌରବାନ୍ୱିତ । ତେଣୁ ସୁଆଙ୍ଗକୁ ଯାତ୍ରାର ଜନକ ଭାବରେ ଗ୍ରହଣ କରାଯାଇଥାଏ ।

ଦଣ୍ଡନାଟରେ ଧୂଳିଦଣ୍ଡ ରାସ୍ତା ଉପରେ ଅନୁଷ୍ଠିତ ହେଉଥିବା ଯୋଗୁଁ ଆଜିର 'ପଥପ୍ରାନ୍ତର ନାଟକ'କୁ (Street play) ଏହା ଯଥେଷ୍ଟ ପ୍ରେରଣା ପ୍ରଦାନ କରିଅଛି । ଆଧୁନିକ ଯୁଗର ଅନେକ ନାଟକ ମଧ ବିଭିନ୍ନ ଲୋକ ନୃତ୍ୟର ପ୍ରଭାବରେ ସମୃଦ୍ଧ ।

ଦଣ୍ଡନାଟର ଚଢ଼େୟା, ଚଢ଼େୟାଣୀ, ଶବର ଶବରୁଣୀ, ପତ୍ରଶଉରା ଓ ଶଉରାଣୀ ନାଚ, ଯେ କୌଣସି ଉତ୍ସବ, ଯାତ୍ରା ବା ମେଳାରେ ପ୍ରଦର୍ଶିତ ହୋଇଥାଏ । ଏହି ସବୁ ନୃତ୍ୟ ପାଇଁ ବିଶେଷ ଭାବରେ ତାଳ, ଛନ୍ଦ ଓ ନିୟମର ଆବଶ୍ୟକତା ନଥିବାରୁ ସାଧାରଣ ଜନତାଙ୍କ ପକ୍ଷେ ଅଭିନୟ କରିବାକୁ ଅସୁବିଧା ହୋଇନଥାଏ । ଦଣ୍ଡନୃତ୍ୟ ପରମ୍ପରାରେ ଯଦିଓ ନାରୀ/ ବାଳିକାମାନଙ୍କର ଅଂଶଗ୍ରହଣ ନିଷେଧ ଏବଂ ପରମ୍ପରା ବିରୋଧି, ତଥାପି ଅନେକ ବାଳିକା ଏହି ସବୁ ନୃତ୍ୟକୁ ଅନୁକରଣ କରି ବିଭିନ୍ନ ସମୟରେ ପ୍ରଦର୍ଶନ କରିଥାନ୍ତି । ଦଣ୍ଡନାଟର ଉପରୋକ୍ତ ନାଚମାନ ସଂପ୍ରତି ବିଶ୍ୱଦରବାରରେ ସମ୍ମାନିତ ।

ଶବର ଶବରୁଣୀ ନୃତ୍ୟ 'ଛଉ'ର ଏକ ଅଂଶ ବିଶେଷ । 'ଛଉ'ର ଶବର ନାଚ ବିଶେଷ ପ୍ରସିଦ୍ଧ । ଏହି ଶବରର ମହାବାଳ ବାଘ ଶିକାର ଅଭିନୟ ଶରୀରରେ ରୋମାଞ୍ଚ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆନନ୍ଦ ପ୍ରଦାନ କରେ । ନୃତ୍ୟଟି ସମ୍ପୂର୍ଣ୍ଣ ରୂପେ ଲୌକିକ ପରିବେଶ ଏବଂ ସଂସ୍କୃତି ଆଧାରିତ ଏକକ ନୃତ୍ୟ । ଆରଣ୍ୟକ ଜୀବନର ପ୍ରତିଫଳନ ସ୍ପଷ୍ଟ ପରିଦୃଷ୍ଟ ।

ଦଣ୍ଡନାଟ ପରି ଏକ ନିୟମବଦ୍ଧ ନୃତ୍ୟ ଉତ୍ତର-ବଙ୍ଗର ମାଲ୍‌ଦା ଜିଲ୍ଲାରେ 'ଗମ୍ଭୀରା' ନାମରେ ସୁପରିଚିତ । ଉଭୟ ଗମ୍ଭୀରା ଓ ଦଣ୍ଡନାଟର ସମସ୍ତ ଭୋକ୍ତା ଶିବ ଉପାସକ । ଦଣ୍ଡନାଟର ଅନେକ ନିୟମ ଓ ନୃତ୍ୟ ପରମ୍ପରାକୁ ନେଇ ସମ୍ପ୍ରତି ପଶ୍ଚିମବଙ୍ଗର ଗମ୍ଭୀରା, ଶିବେରଗାଜନ ଓ ନୀଳ ସମୃଦ୍ଧ । ସେଥି ମଧ୍ୟରେ ଶୁଦ୍ର ସମ୍ପ୍ରଦାୟ, ଘଟପ୍ରତିଷ୍ଠା, ସୁଆଙ୍ଗ, ଢୋଲ ଓ କରତାଳ ପ୍ରଭୃତି ବାଦ୍ୟଯନ୍ତ୍ର, ଆଞ୍ଚଳିକ ଗୀତ, ଢଗଢମାଳି, ବ୍ୟଙ୍ଗାତ୍ମକ ବେଶପୋଷାକ ପ୍ରଭୃତି ଏହା ସହ ସାମଞ୍ଜସ୍ୟ ରକ୍ଷାକରେ । ଦଣ୍ଡନାଟର ଧୂଳିଦଣ୍ଡ ସଦୃଶ 'ଗମ୍ଭୀରା ଗୀତରେ ସମାଜନୀତି, ରାଜନୀତି ଓ ଧର୍ମନୀତିର ପ୍ରତିଫଳନ ସ୍ପଷ୍ଟ । ଗ୍ରାମର ନିରକ୍ଷର ଓ ଅର୍ଦ୍ଧଶିକ୍ଷିତ ଲୋକକବିର ଗମ୍ଭୀରା ଗୀତ ମଧ୍ୟରେ ସାମାଜିକ ଦୁର୍ନୀତି ବିରୁଦ୍ଧରେ ପ୍ରତିବାଦ ଦେଖାଯାଇଛି'' । (୯୦)

ଏସବୁ ଲୋକନାଟରେ ଭୋକ୍ତାମାନେ ଶିବଙ୍କୁ କୃଷିର ଦେବତା ଭାବରେ ଗ୍ରହଣ କରିଅଛନ୍ତି । ''ଅନାର୍ଯ୍ୟ ସମାଜରେ ଲୌକିକ ଶିବଙ୍କର କୃଷି କାର୍ଯ୍ୟ ବା ଭିକ୍ଷାବୃତ୍ତି ଅବଲମ୍ବନ କରିବା ଦେଖିବାକୁ ପାଉଛେ । ଏଠାରେ ଶିବ ଉର୍ବରତା ବୃଦ୍ଧିର (Fertile cult) ଦେବତା ଭାବରେ ଗୃହୀତ ଏଥିରେ ଶିବ ରାଷ୍ଟ୍ରର କର୍ଣ୍ଣଧାର ହିସାବରେ ପରିଚିତ ।'' (୯୧) ଦଣ୍ଡନାଟରେ ଶ୍ୟାମା/ ଉଗ୍ର କାଳୀଙ୍କର ପୂଜା ହେବା ବେଳେ 'ନୀଳ' ଗମ୍ଭୀରା ଓ ଶିବେରଗାଜନ ଉତ୍ସବରେ ପୂଜିତ । ଏହି ସମସ୍ତ ପୂଜା କେବଳ ଚୈତ୍ରମାସରେ ହେଉଥିବା ଉଲ୍ଲେଖଯୋଗ୍ୟ । ଦଣ୍ଡନାଟର ମେରୁପୂଜା ଓ ଗାଜନର ଚଡକ ପୂଜା ଏକା ସମୟରେ ଅନୁଷ୍ଠିତ ହୁଏ । ନିୟମ ପାଳନ ସମ୍ପର୍କରେ ବିଶେଷ ପାର୍ଥକ୍ୟ ନାହିଁ । ଏ ସମସ୍ତ ଲୋକନୃତ୍ୟର ଅଭିନେତା ଓ ଅଭିନେତ୍ରୀ ହେଲେ ପୁରୁଷ ।

ଦଣ୍ଡନାଟ କେବଳ ଧର୍ମୀୟ ପରମ୍ପରା ଉପରେ ପ୍ରତିଷ୍ଠିତ । ଧର୍ମକୁ ଆଧାର କରି ଭାରତୀୟ ସଂସ୍କୃତିର ପ୍ରଚାର ଲୋକନୃତ୍ୟର ପ୍ରଧାନ ଉଦ୍ଦେଶ୍ୟ । ଏହି ଦୃଷ୍ଟିରୁ ଦଣ୍ଡନାଟ ସହ ଜାପାନର Noh (ନୋ') ନାଟକ ସାମଞ୍ଜସ୍ୟ ରକ୍ଷା କରେ । ଅବଶ୍ୟ ନୋ' ନାଟ୍ୟ ପରମ୍ପରା ଦଣ୍ଡନାଟରେ ପରବର୍ତ୍ତୀ ଅନୁଷ୍ଠାନ ଏବଂ ବୌଦ୍ଧ ଧର୍ମ ଜଡିତ ।

ଦଣ୍ଡନାଟରେ ଢୋଲ, ମହୁରୀ, କାହାଳୀ, ଝାଞ୍ଜ ପ୍ରଭୃତି ବାଦ୍ୟଯନ୍ତ୍ର ବ୍ୟବହୃତ ହେଉଥିବା ବେଳେ ନୋ' ନାଟକରେ ଡ୍ରମ (Drum) ଓ ବଂଶୀ ବ୍ୟବହାର ହୁଏ । "ଅଭିନୟ କ୍ଷେତ୍ରରେ ନୋ" ନାଟକ ସହିତ ଦଣ୍ଡନାଟର କେତେକ ସାମଞ୍ଜସ୍ୟ ରହିଛି । ଦଣ୍ଡନାଟରେ ନାରୀ ଭୂମିକାର ସଂଖ୍ୟା ପୁରୁଷ ଭୂମିକାର ସଂଖ୍ୟା ସହିତ ପ୍ରାୟ ସମାନ । ବାଇଧନ ବ୍ୟତୀତ ଅନ୍ୟ ସମସ୍ତେ ଯୋଡି ଯୋଡି ହୋଇ ମଞ୍ଚରେ ପ୍ରବେଶ କରନ୍ତି । x x x x କିନ୍ତୁ ନାରୀ ଭୂମିକାରେ ସଂଖ୍ୟାଧିକ ତଥା ବିଶେଷ ପ୍ରୟୋଜନିୟତା ସତ୍ତ୍ୱେ ନାରୀମାନେ ଦଣ୍ଡନାଟରେ ଅଭିନୟ କରନ୍ତି ନାହିଁ । ପୁରୁଷମାନେ ହିଁ ନାରୀ ଭୂମିକାରେ ଅଭିନୟ କରିଥାନ୍ତି । ଶ୍ରମ ମଧ୍ୟ ନୃତ୍ୟପାଇଁ ଅଭିନେତ୍ରୀମାନଙ୍କ ଅପେକ୍ଷା ଅଭିନେତାମାନେ ବୋଧହୁଏ ଉପଯୁକ୍ତ ବିବେଚିତ ହୁଅନ୍ତି । ନୋ' ନାଟକରେ ଏପରି କଷ୍ଟକର ନୃତ୍ୟର ଉପଯୋଗ ନଥିଲେ ମଧ୍ୟ ନାରୀମାନେ ନାରୀ-ଭୂମିକାରେ ଅଭିନୟ କରନ୍ତି ନାହିଁ ।" (୯୨) ତତ୍କାଳୀନ ଭାରତୀୟମାନଙ୍କର ରକ୍ଷଣଶୀଳ ମନୋବୃତ୍ତି ଭଳି ଜାପାନୀମାନଙ୍କର ପାରମ୍ପରିକ ଲୋକନାଟ୍ୟକୁ ମଧ୍ୟ ନାରୀର ପ୍ରବେଶ ଅଧିକାର ଦେଇନାହିଁ ।

ଦଣ୍ଡନାଟରେ ଅନେକ କ୍ଷୁଦ୍ର କାହାଣୀ ଅଭିନୀତ ହୁଏ । ଅନୁରୂପ ଜାପାନୀ ନୋ' ନାଟକର କଳେବର ଅତ୍ୟନ୍ତ କ୍ଷୁଦ୍ର । ଉଭୟ ଦଣ୍ଡ ସୁଆଙ୍ଗ ଓ ଗୀତିକାବ୍ୟର ସଂହତି ଲକ୍ଷଣୀୟ । ଜାପାନର ଏହି ନାଟ୍ୟ ପରମ୍ପରା ଭଳି ଓଡିଶାରେ ଗ୍ରାମାଞ୍ଚଳରେ ବର୍ତ୍ତମାନ ପ୍ରଚଳିତ ପାରମ୍ପରିକ ଦଣ୍ଡନାଟରେ ଅଭିନେତ୍ରୀମାନଙ୍କର ଯୋଗଦାନ ସମ୍ଭବ ହୋଇପାରୁ ନାହିଁ । ଦଣ୍ଡନାଟରେ ପ୍ରତ୍ୟେକ ଚରିତ୍ର, ନୃତ୍ୟ ଓ ଗୀତ ଗାନରେ ଅଭ୍ୟସ୍ତ କିନ୍ତୁ ନୋ' ନାଟକର ଅଭିନେତା ଗାନ କରିନପାରିଲେ ମଧ୍ୟ ବିଶେଷ ଅସୁବିଧା ହୁଏ ନାହିଁ । ଏଥିପାଇଁ କୋରସ୍ (Chorus) ସହଯୋଗ କରନ୍ତି । ଆଜିର ଅଧିକାଂଶ ଦଣ୍ଡନାଟ ଦଳରେ ପାରମ୍ପରିକ ସୁଆଙ୍ଗ ପରିବର୍ତ୍ତେ ଯାତ୍ରା ଆତ୍ମପ୍ରକାଶ କରିଅଛି ଏବଂ ନୂତନ କାହାଣୀର ଅବତାରଣା ହୋଇଛି । ଅନୁରୂପ ନୋ' ନାଟକର ଅଭିନୟ ଓ ପ୍ରସ୍ତୁତିରେ ମଧ୍ୟ ଆଧୁନିକ ରୁଚି ସଂପନ୍ନ ଅଭିନେତା ତଥା ପ୍ରଯୋଜକଙ୍କର ଆର୍ବିଭାବ ଘଟିଛି ।

ଯେ କୌଣସି ଲୋକନୃତ୍ୟର ଆଧୁନିକୀକରଣ ହେବା ବାଞ୍ଛନୀୟ କିନ୍ତୁ ମୌଳିକତା ଧ୍ୱଂସ ହେଲେ ପରମ୍ପରାବୋଧକ ହୁଏ ନାହିଁ । ସମ୍ପ୍ରତି ଦଣ୍ଡନାଟ ସେହି ଦିଗକୁ ଅଗ୍ରସର ହେଉଛି ।

# ପ୍ରଶିକ୍ଷଣ

ପ୍ରତ୍ୟେକ ଲୋକନୃତ୍ୟ ପାଇଁ ପ୍ରଶିକ୍ଷଣର ଆବଶ୍ୟକତା ରହିଛି । କିନ୍ତୁ ଭୋକ୍ତାଙ୍କ ପାଇଁ ପ୍ରଶିକ୍ଷଣ ଦରକାର ହୁଏ ନାହିଁ । ଦଣ୍ଡଭୋକ୍ତା ଦଣ୍ଡନାଟରେ ୧୩ ବର୍ଷ ପାଇଁ ଅଂଶଗ୍ରହଣ କରିବାକୁ ବାଧ । ପ୍ରଥମେ ପ୍ରବେଶ ବେଳେ ସେ ଯେଉଁ ପ୍ରଶିକ୍ଷଣ ନିଏ, ତାହା ପରବର୍ତ୍ତୀ ୧୨ ବର୍ଷ ସକାଶେ ଅପରିବର୍ତ୍ତିତ ରହେ । ଏହି ପରମ୍ପରା ପ୍ରତ୍ୟେକ ଦଣ୍ଡଦଳରେ ପ୍ରଚଳିତ । ପାଟଢୋଲିଆର ବାଦ୍ୟବାଦନ ଏହି ତେର ଦିନ ବ୍ୟତୀତ ଅନ୍ୟ ସମୟରେ ଦଣ୍ଡ ତାଳ ବ୍ୟତୀତ ଅନ୍ୟାନ୍ୟ ନାଚ ପ୍ରଭୃତିର ଆବଶ୍ୟକ ହେଉଥିବାରୁ ତାହାର ବାଦ୍ୟଭ୍ୟାସ ଅବ୍ୟାହତ ରହିଥାଏ ।

ରାତ୍ରରେ ସୁଆଙ୍ଗ ଓ ଯାତ୍ରା ପ୍ରଦର୍ଶନବେଳେ ଯେଉଁ ଅଭିନୟ କରାଯାଏ, ତାହାର ପ୍ରଶିକ୍ଷଣ ପ୍ରତ୍ୟେକ ବର୍ଷ ଦଣ୍ଡନାଟ ଅନୁଷ୍ଠିତ ହେବାର ନିର୍ଦ୍ଧାରିତ ଦିନର ୩/୪ମାସ ପୂର୍ବରୁ ଆରମ୍ଭ ହୁଏ । ଏହି ସମୟରେ ସଙ୍ଗୀତ, ତାଳ ଓ ଛନ୍ଦ ଉପରେ ଆଲୋକପାତ କରାଯାଏ । ଢୋଲ ବାଦ୍ୟର ତାଳେ ତାଳେ କିପରି ନାଚିବାକୁ ପଡିବ ତାହା ପାଟଭୋକ୍ତା ଅଭ୍ୟାସ (Reheursal) କରି ଦେଖାଇଦିଏ ଏବଂ ଅନ୍ୟମାନେ ତାହାକୁ ଅନୁସରଣ କରିନିଅନ୍ତି । ଏହି ସମୟରେ ପାଟଢୋଲିଆର ସହାୟତା ଅତ୍ୟାବଶ୍ୟକ ।

ଯାତ୍ରାଭିନୟ ସକାଶେ ପ୍ରାୟ ଚାରିମାସ ପୂର୍ବରୁ ବିଷୟ ବସ୍ତୁ ନିର୍ବାଚନ କରି ନାଟ୍ୟାଭାସ କରନ୍ତି । ଏହାର କଳାକାର ସାଧାରଣ କୃଷକ, ମୂଲିଆ , ଶଗଡିଆ ଓ ସ୍ୱଳ୍ପ ଶିକ୍ଷିତ ବ୍ୟକ୍ତି । ଗ୍ରାମର ଅଧିକାଂଶ ଯୁବକ ଶିକ୍ଷିତ ହେବା ଫଳରେ ନାଚ ଓ ଯାତ୍ରା ସମ୍ପ୍ରତି ବିଶେଷ ପରିବର୍ତ୍ତିତ । ଏମାନେ ଅଭିନୟରେ ଅଂଶ ଗ୍ରହଣ କରିବା ଯୋଗୁଁ ଯାତ୍ରାର ରୂପ ଯଥାସମ୍ଭବ ପରିବର୍ତ୍ତନ ହୋଇ ସାମ୍ପ୍ରତିକ କାଳରେ ଲୋକପ୍ରିୟ ହୋଇପାରିଛି । ପ୍ରତ୍ୟେକ ଦଣ୍ଡଦଳର ସ୍ୱତନ୍ତ୍ର ସୁଆଙ୍ଗ ଓ ଯାତ୍ରାଦଳ ରହିଅଛି । ଆବଶ୍ୟକ ହେଲେ ଅନ୍ୟ ଦଣ୍ଡଦଳ ସହ ସହଯୋଗ କରନ୍ତି । ପ୍ରତ୍ୟେକ ଦଣ୍ଡ ଓ ଯାତ୍ରାଦଳ ପାଇଁ ସ୍ୱତନ୍ତ୍ର ଅର୍ଥ ବ୍ୟବସ୍ଥା ରହିଅଛି । ଦଣ୍ଡନାଟ ସମେତ ଯାତ୍ରାଦଳର ପ୍ରତ୍ୟେକ ବ୍ୟକ୍ତି ଦିନସାରା ବୃତ୍ତିଗତ ପରିଶ୍ରମ କରିବା ପରେ ସନ୍ଧ୍ୟାରେ ଗ୍ରାମର ଆଖଡା ଗୃହରେ ମିଳିତ ହୁଅନ୍ତି । ଅଭିନୟ ସମ୍ପର୍କରେ ପ୍ରଶିକ୍ଷଣ ଦେବାପାଇଁ ସେଠାରେ ଜଣେ ଶିକ୍ଷକ/ନିର୍ଦ୍ଦେଶକ ଥାଆନ୍ତି । ଏହି ଶିକ୍ଷକ ଗ୍ରାମ୍ୟ ଭାଷାରେ 'ନାଚ ମାଷ୍ଟର' । ଏହି ପ୍ରଶିକ୍ଷକଙ୍କର ଯାତ୍ରାଭିନୟ, ନୃତ୍ୟ, ଗୀତ ଓ ଅଭିନୟ ସମ୍ପର୍କରେ ଆବଶ୍ୟକୀୟ ଜ୍ଞାନ ଥାଏ । ଚୁକ୍ତି ମୁତାବକ ସେ ଗ୍ରାମର ଦଣ୍ଡନାଟ୍ୟାନୁଷ୍ଠାନ ତରଫରୁ ଯାତ୍ରାଭିନୟ ସକାଶେ ମାସିକ ଅର୍ଥ ନିଅନ୍ତି ।

ଯାତ୍ରାଭିନୟରେ ଦଣ୍ଡବାଦ୍ୟର ଆବଶ୍ୟକତା ପ୍ରାୟ ନଥାଏ ଏଥିପାଇଁ ଯୋଡି ନାଗରା, ଡ୍ରମ୍ (Drum), ହାରମୋନିଅମ୍, ଝାସିଓ, ଖୋଳ, ତବଲା, କ୍ଲାରିଓନେଟ, ବଂଶୀ ପ୍ରଭୃତି ଆବଶ୍ୟକ ହୁଏ ।

ନାରୀ ଭୂମିକାରେ ଅଭିନୟ ପାଇଁ ଉଦ୍ଦିଷ୍ଟ କଳାକାରମାନେ ବର୍ଷର କୌଣସି ସମୟରେ କେଶ କାଟନ୍ତି ନାହିଁ । ଚରିତ୍ରାନୁଯାୟୀ ପୁରୁଷ ଭୂମିକାର ଅନେକ କଳାକାର କିଛି ପରିମାଣରେ କେଶ ବୃଦ୍ଧି କରିଥାନ୍ତି । ସମସ୍ତ ଅଭିନେତାଙ୍କର ସଂଳାପ ଓ ଗୀତାଭ୍ୟାସ ବାଦ୍ୟଯନ୍ତ୍ର ସହାୟତାରେ କରାଯାଏ । ଯୁଗରୁଚିରୁ ହେଉ ବା ଆଧୁନିକ ପ୍ରଭାବରୁ ହେଉ, ଏହି ଯାତ୍ରାଭିନୟ ର କଳାକାରମାନେ ଆଧୁନିକ ଗୀତ, ସଂଳାପ, ସିନେମା ଅଭିନୟ ଏବଂ ବେଶପୋଷାକକୁ ଅଧିକ ମାତ୍ରାରେ ଅନୁସରଣ କରିଥାନ୍ତି । ଏହି ଯାତ୍ରାଭିନୟ , ବରାଦ ମୁତାବକ ବର୍ଷର ଅନ୍ୟ ଦିନମାନଙ୍କରେ କରନ୍ତି, ସେଥିପାଇଁ କୌଣସି ପ୍ରତିବନ୍ଧ ନଥାଏ ।

*

## ସମାଜ ସଂସ୍କାର

ଦଣ୍ଡନାଟକୁ ନୀରିକ୍ଷଣ କଲେ ଏଥିରେ ସମାଜ ସଂସ୍କାରର ଅନେକ ବୀଜ ନିହିତ ଥିବା ଲକ୍ଷ୍ୟ କରାଯାଇପାରେ । ଏହି ସଂସ୍କାର ସର୍ବଶ୍ରେଷ୍ଠ ଓ ସାଂପ୍ରତିକ ମାନଦଣ୍ଡରେ ଅତ୍ୟାଧୁନିକ । ସମାଜରୁ ଅସ୍ପୃଶ୍ୟତା ଦୂରୀକରଣରେ ଏହାର ଆଦର୍ଶ ସର୍ବଦା ଅନୁକରଣୀୟ ।

ସମ୍ପ୍ରତି ସମସ୍ତ ସମ୍ପ୍ରଦାୟର ବ୍ୟକ୍ତି ଏଥିରେ ଅଂଶଗ୍ରହଣ କରୁଥିବାରୁ ଏହା ଗଣତନ୍ତ୍ରର ଏକ ଆଦର୍ଶ ନମୁନା । ଈଶ୍ୱରଙ୍କ ସନ୍ତାନ ଭାବରେ ଏହାର ଭୋକ୍ତାମାନେ ନିଜକୁ ପ୍ରତିପାଦିତ କରୁଥବାରୁ ବିଶ୍ୱମୈତ୍ରୀର (ଅମୃତସ୍ୟ ପୁତ୍ରାଃ) ସନ୍ଦେଶ ଏଥିରେ ଥାଏ ।

ଚଢେୟା-ଚଢେୟାଣୀ ନୃତ୍ୟ ପ୍ରସଙ୍ଗରେ ବିଧବା ବିବାହ ପ୍ରଥମେ ଦଣ୍ଡନାଟରେ ଦେଖାଯାଇଛି । ଏହା ଆଧୁନିକ ଯୁଗର ପରିକଳ୍ପନା ନୁହେଁ । ଏହା ପ୍ରାଚୀନ ଆଦିବାସୀ ପରମ୍ପରାରୁ ଆନୀତ । ଆଦିବାସୀ ସମାଜରେ ଛାଡପତ୍ର, ପୁନର୍ବିବାହ ଏବଂ ବିଧବା ବିବାହ ସାଧାରଣ ପ୍ରଥା । ସ୍ୱାମୀର ମୃତ୍ୟୁପରେ ଦେବର ସହ ବିବାହ ନିଷିଦ୍ଧ ନୁହେଁ । ଏପରି ବିବାହ ସତ୍ତ୍ୱେ ଉଭୟ ସ୍ତ୍ରୀ ଓ ପୁରୁଷ ଶ୍ରମଜୀବୀ ହୋଇଥିବା ଯୋଗୁଁ ସେମାନଙ୍କ ପାରିବାରିକ ଜୀବନ ସୁଖମୟ । ଆଦିବାସୀ ସମାଜର ଏହି ପ୍ରଥା ବର୍ତ୍ତମାନ ଭାରତ ସମେତ ସମସ୍ତ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତକୁ ସଂକ୍ରମିତ । ସଂପ୍ରତି ଏହାକୁ ସରକାରୀ ସ୍ୱୀକୃତି ମିଳିଥିବା ଉଲ୍ଲେଖନୀୟ ।

ଅବୈଧ ସନ୍ତାନ ସମାଜରେ ଆବାହମାନ କାଳରୁ ବାସନ୍ଦ ଏବଂ ନିର୍ଯ୍ୟାତିତ । ଏହାର ପ୍ରତିବାଦ ଦଣ୍ଡନାଟରେ ଦେଖାଦେଇଛି । ଅନୁଚିତ ସନ୍ତାନ ପାଇଁ ପୁରୁଷ ଓ ନାରୀ କିଛି ଭୁଲ

କରିଥାଇ ପାରନ୍ତି । କିନ୍ତୁ ଶିଶୁର ଦୋଷ ? ତାର ଜନ୍ମ ପାଇଁ ସେ ନିଜେ କାହିଁକି ସମାଜରେ ବାସନ୍ଦ ହେବ ? ଏପରି ଚିତ୍ର ଦେଖିବାକୁ ମିଳେ ସଉରାଣୀ ଠାରେ । ଦଣ୍ଡନାଟରେ ସଉରାଣୀ ଚରିତ୍ର ଏକ ଅବୈଧ ସନ୍ତାନର ପ୍ରତୀକ । ଏହା ସେ ଆତ୍ମପରିଚୟ ପ୍ରଦାନ କଲାବେଳେ ଦର୍ଶକଙ୍କୁ ପ୍ରଶ୍ନ କରିଥାଏ ।

ଏକାଧିକ ବିବାହର ଦାରୁଣ ଯନ୍ତ୍ରଣା ଦଣ୍ଡନାଟରେ ସୁସ୍ପଷ୍ଟ । ଚଢେୟା, ଶବର, ବୀଣାକାର ପ୍ରଭୃତି ଚରିତ୍ରମାନଙ୍କର ଦୁଇଦୁଇଟି ସ୍ତ୍ରୀଙ୍କ ମଧ୍ୟରେ ଝଗଡା ଓ ମନାନ୍ତର ପାରିବାରିକ ଅଶାନ୍ତି ସୂଚକ । ସ୍ୱାମୀ ଏଥିରେ ବ୍ୟତିବ୍ୟସ୍ତ ଏବଂ ସମାଧାନ କରିବାରେ ଅତି ଅସହାୟ । ଏକାଧିକ ବିବାହ ସତରେ କି କଷ୍ଟଦାୟକ ଓ ଦୁଃଖମୟ । ସାଂପ୍ରତିକ କାଳରେ ଏପରି ଦୃଷ୍ଟାନ୍ତ ବିରଳ ନୁହେଁ । ତେଣୁ ଉତ୍ତମ ପାରିବାରିକ ଜୀବନ ପାଇଁ ଏଥିରୁ ଶିକ୍ଷାଲାଭ କରାଯାଇପାରେ ।

ଦଣ୍ଡନାଟ ମୁଖ୍ୟତଃ ଶୈବାନୁଷ୍ଠାନ ହେଲେ ମଧ୍ୟ ଅନ୍ୟାନ୍ୟ ଦେବଦେବୀ ବିଶ୍ୱାସରେ କୌଣସି ଅନ୍ତରାୟ ନାହିଁ । ଭୋକ୍ତାମାନେ ଶକ୍ତି, ବିଷ୍ଣୁ, ଲକ୍ଷ୍ମୀ, ତୁଳସୀ ପ୍ରଭୃତି ଦେବଦେବୀଙ୍କ ମହିମାଗାନ କରିଥାନ୍ତି । ଏହା ବ୍ୟତୀତ ଖ୍ରୀଷ୍ଟିୟାନ ଓ ମୁସଲମାନ ଧର୍ମକୁ ସମ୍ମାନ ଦେବା ଉଦ୍ଦେଶ୍ୟରେ ଦଣ୍ଡସୁଆଙ୍ଗରେ ପଠାଣ, ଫକୀର, ଜମାଦାର ପ୍ରଭୃତି ଅତିରିକ୍ତ ଚରିତ୍ର ସଂଯୋଜନା କରାଯାଇଛି । ଏହା ସାଂପ୍ରଦାୟିକ ଭେଦ ଭାବ ଦୂରୀକରଣ ଉଦ୍ଦେଶ୍ୟରେ ପରିକଳ୍ପନା କରାଯାଇଥିବାରୁ ଦଣ୍ଡନାଟର ଉଦ୍ୟମ ପ୍ରଶଂସନୀୟ ।

''ଶରୀର ମାଦ୍ୟଂ ଖଳୁ ଧର୍ମ ସାଧନମ୍ ।'' ଶରୀର ଭଲ ରହିଲେ ସବୁ କିଛି ଭଲ ରହେ । ତେଣୁ ଉତ୍ତମ ଶରୀର ଚର୍ଚ୍ଚା ମଣିଷର ଶ୍ରେଷ୍ଠ ଧର୍ମ । ଧୂଳି, ପାଣି, ଅଗ୍ନି ଓ ବନ ଦଣ୍ଡକୁ ଶାରିରୀକ ସୁସ୍ଥତା ପ୍ରତି ଗୁରୁତ୍ୱ ଆରୋପ କରାଯାଇଛି । ଝୁଣାର ଗନ୍ଧ ଶରୀର ଉପଯୋଗୀ ତେଣୁ ଅଗ୍ନିଦଣ୍ଡ ଆବଶ୍ୟକ । ଉପବାସ ଦ୍ୱାରା ଚିତ୍ତ ସଂଯତ ହୁଏ । ସାତ୍ତ୍ୱିକ ଆହାର ଦ୍ୱାରା ଶରୀରର ଅଶେଷ କଲ୍ୟାଣ ସାଧିତ ହୁଏ । ଏହା ଦଣ୍ଡନାଟର ଅନ୍ୟତମ ଦିଗ୍‌ଦର୍ଶନ ।

ଦଣ୍ଡନାଟର ଆଲୋଚନାରୁ ଜଣାଯାଏ ଯେ ଗୋଟିଏ ସଭ୍ୟତା ସହ ଅନ୍ୟ ଏକ ସଭ୍ୟତାର ସଙ୍ଘର୍ଷ ହେବାଫଳରେ ତତ୍କାଳୀନ ସମାଜରେ ଅନେକ ପରିବର୍ତ୍ତନ ସଂଘଟିତ ହୋଇଛି । ଏ ପରିପ୍ରେକ୍ଷୀରେ ଶୈବଧର୍ମର ଉନ୍ମେଷ, ବୌଦ୍ଧଧର୍ମର ଅବନତି ଏବଂ ଅନେକ ବୌଦ୍ଧଧର୍ମାବଲମ୍ବୀ ଅସ୍ପୃଶ୍ୟ ହେବା ଉଲ୍ଲେଖଯୋଗ୍ୟ । ଏହି ଅସ୍ପଶ୍ୟବର୍ଗଙ୍କ ସହ ରାଜ-ପ୍ରତିଷ୍ଠିତ ଶୈବ ମନ୍ଦିରର ସମ୍ପର୍କ ପ୍ରାୟ ରହିଲା ନାହିଁ ଓ ଶୈବଧର୍ମକୁ ଆନ୍ତରିକତାର ସହ ଗ୍ରହଣ କଲେ ମଧ୍ୟ ଶିବମନ୍ଦିରମାନଙ୍କରେ ସେମାନଙ୍କୁ ପ୍ରବେଶ ଅନୁମତି ମିଳିଲା ନାହିଁ । ତେଣୁ ଏହି ଗୋଷ୍ଠୀ ଶିବଙ୍କୁ

ଦେବସ୍ତରରୁ ଲୋକସ୍ତରକୁ ନେଇ ଗ୍ରାମର ଶେଷ ଭାଗରେ ପ୍ରତିଷ୍ଠିତ କଲେ ଏବଂ ଶିବଙ୍କୁ ନୂତନ ନୂତନ ନାମରେ ଅଭିହିତ କଲେ । ଯଥା- ଚନ୍ଦନେଶ୍ୱର, ରତ୍ନେଶ୍ୱର, ଅସୁରେଶ୍ୱର, ଗୁପ୍ତେଶ୍ୱର, ଚିନ୍ତାମଣିଶ୍ୱର, ଚଣ୍ଡେଶ୍ୱର ପ୍ରଭୃତି । ଦ୍ୱିତୀୟତଃ, ଦଣ୍ଡନାଟର ମେରୁପର୍ବ ଗ୍ରାମର ଶେଷ ଭାଗରେ ବା ନିର୍ବାଞ୍ଚନ ସ୍ଥାନରେ ହେଉଥିଲା । ଶିବଙ୍କୁ ଦଣ୍ଡନାଟର ମୁଖ୍ୟ ଆରାଧ୍ୟ ଦେବତା ଭାବରେ ଗ୍ରହଣ କଲାପରେ ଗୋଟାଏ ମନ୍ଦିର ଆବଶ୍ୟକ ମନେ କରିବାରୁ ଏହି ମେରୁସ୍ଥାନ ସମୀପରେ ଶିବମନ୍ଦିର ସ୍ଥାପନ କରିଥିବା ସମ୍ଭବ । ଏହି ମନ୍ଦିରରେ-ଶିବ ଗ୍ରାମର କୌଣସି ଏକ ବିଶିଷ୍ଟ ନାମାନୁସାରେ ନାମିତ । ଦଣ୍ଡନାଟ ପରମ୍ପରା ଅନୁଧ୍ୟାନ କଲେ ଦେଖାଯାଏ ଯେ ଏହା ରାଜପ୍ରତିଷ୍ଠିତ ଶିବମନ୍ଦିର ଅପେକ୍ଷା ଲୋକପ୍ରତିଷ୍ଠିତ ଶିବମନ୍ଦିର ସହ ଅଧିକ ସଂପୃକ୍ତ, ଏଣୁ ପରମ୍ପରାନୁସାରେ ଦଣ୍ଡବେତ ପ୍ରଭୃତି ଉପକରଣମାନ ମେରୁପର୍ବପରେ ଏସବୁ ମନ୍ଦିରମାନଙ୍କରେ ସ୍ଥାପନ କରିଥାନ୍ତି । ଦଣ୍ଡନାଟ ଓଡିଶାର ନିଜସ୍ୱ ନୃତ୍ୟ ପରମ୍ପରା । ଓଡିଶା ବ୍ୟତୀତ ଅନ୍ୟାନ୍ୟ ଅଞ୍ଚଳରେ ଥିବା ଶିବମନ୍ଦିରମାନଙ୍କରେ ବ୍ରାହ୍ମଣମାନେ ପୂଜକ ରୂପରେ ଦେଖାଯାନ୍ତି । କିନ୍ତୁ ଓଡିଶାର ଶିବମନ୍ଦିରମାନଙ୍କରେ 'ମାଳୀ' ନାମକ ନିମ୍ନ ସଂପ୍ରଦାୟ ଏହି ସେବା ଓ ପୂଜାଦି କରିଥାନ୍ତି । ଉଚ୍ଚ ଜାତିର ଲୋକେ ପ୍ରାଧାନ୍ୟ ବିସ୍ତାର କରୁଥିଲେ ସୁଦ୍ଧା ନିମ୍ନ ଜାତିର ଲୋକେ ସମାଜରେ ଅବହେଳିତ ହେବା ଉଚିତ ନୁହେଁ । ଏହା କଣ ସେମାନଙ୍କ ପ୍ରତି ସମ୍ମାନ ନୁହେଁ ''ଅସ୍ପୃଶ୍ୟ ଜାତିର ସୃଷ୍ଟି ଦୁଇଟି ସଭ୍ୟତାର ଏହିପରି ଗୋଟାଏ ସଂଘର୍ଷ ଜନିତ ଏବଂ ଶିବପୂଜା ଅବ୍ରାହ୍ମଣ ପୂଜାବୋଲି ପୂର୍ବରୁ ଗୃହୀତ । ମାତ୍ର କାଳକ୍ରମେ ପୁଣି ଦୁଇ ସଭ୍ୟତାର ମିଳନ ସେତୁର ଆୟୋଜନ ହୋଇଛି । ଦଣ୍ଡନାଟଟି ସମ୍ପୂର୍ଣ୍ଣ ଶୈବ ଓ ଶାକ୍ତ ବା ଲିଙ୍ଗ ଓ ଯୋନି ବା ଆଦିମମାନବର ପ୍ରଥମ ପ୍ରେରଣା ଜନିତ ବିଧି ଆଚାର ସମ୍ଭୂତ ବୋଲି ମନେ ହୁଏ ।'' (୯୩) ପରବର୍ତ୍ତୀ କାଳରେ ସମାଜ ସଂସ୍କାର ଉଦ୍ଦେଶ୍ୟରେ ଅନେକ ଅନେକ ପ୍ରେରଣା ଯୋଗାଇଛି ।

*

## ଦଣ୍ଡନାଟ : ମହତ୍ୱପୂର୍ଣ୍ଣ ଶିକ୍ଷାନୁଷ୍ଠାନ

ଦଣ୍ଡନାଟ ଯେ ମନୋରଞ୍ଜନଧର୍ମୀ ଗଣନୃତ୍ୟ ତାହା ନୁହେଁ, ଏଥିରୁ ଅନେକ ବିଷୟ ଶିକ୍ଷା ଲାଭ କରିବାକୁ ପଡେ । ଏହା ସ୍ପଷ୍ଟ ଯେ ମଣିଷ ମଣିଷ ମଧ୍ୟରେ ସହଯୋଗ, ଶାନ୍ତି ଓ ମୈତ୍ରୀର ବାଣୀ ପ୍ରଚାର କରେ । ସରଳ ଜୀବନଯାପନ, ସୁଖମୟ ସଂସାର, ଉଚ୍ଚାକାଂକ୍ଷା ପାଇଁ ଏହା ଏକ ପବିତ୍ର ମହତ୍ୱପୂର୍ଣ୍ଣ ଶିକ୍ଷାନୁଷ୍ଠାନ ।

ଦଣ୍ଡନାଟର 'ଦ' ଅକ୍ଷରକୁ ନେଇ ଉପନିଷଦରେ ଏକ ସୁନ୍ଦର ମତ ରହିଛି- 'ଯଦା ମେଘଗର୍ଜନଂ ଭବତି ତଦା ଦ-ଦ-ଦ ଇତି ଶବ୍ଦଃ ତ୍ରିବାରଂ ଶ୍ରୂୟତେ ''। ଭାଷାର ଗାମ୍ଭୀର୍ଯ୍ୟ ଏବଂ

ଉପମାର ମହତ୍ତ୍ୱ ଏଠାରେ ପ୍ରତିପାଦିତ । ବୃହଦାରଣ୍ୟକୋପନିଷଦର ୫ମ ଅଧ୍ୟାୟରେ ପ୍ରଜାପତି ବ୍ରହ୍ମାଙ୍କ ତ୍ରିଲୋକ ପ୍ରତି 'ଦ' ପ୍ରଦତ୍ତ ଅର୍ଥ ଭିନ୍ନ ପ୍ରକାର ହୋଇଛି । ଦେବତାଙ୍କ ପକ୍ଷରେ 'ଦ'ର ଅର୍ଥ-ଦମନ, ମନୁଷ୍ୟ କ୍ଷେତ୍ରରେ ଦାନ ଏବଂ ଅସୁରମାନଙ୍କ ପାଇଁ 'ଦ'ର ଅର୍ଥ- ଦୟାକର । ଏ ସଂପର୍କରେ ବିଚାର କରାଯାଇ ପାରେ । ଦେବତାମାନେ କାମୁକ । ଏହାର ଉଦାହରଣ ଅନାବଶ୍ୟକ । କାମ ଦେବଚିତ ରିପୁ କୁ ସଂଯମ ଦ୍ୱାରା 'ଦମନ' କରାଯାଏ । ଏହା ଥିଲା ସ୍ରଷ୍ଟାଙ୍କ ନିର୍ଦ୍ଦେଶ । ମଣିଷ ଜନ୍ମଠାରୁ ଲୋଭୀ । ଲୋଭର ମାତ୍ରାଧିକ ପ୍ରୟୋଗ ସମାଜର କ୍ଷତି ସାଧନ କରେ । ତେଣୁ ଲୋଭକୁ ଆୟତ୍ତରେ ରଖିବା ପାଇଁ ଦରକାର 'ଦାନ' । ସେହିପରି କ୍ରୋଧ ଆସୁରିକ ପ୍ରବୃତ୍ତି ହୋଇଥିବା ଯୋଗୁଁ 'ଦୟା' ଦ୍ୱାରା ସଂଯମିତ ହୁଏ । କାମନା (ବାସନା), ଲୋଭ ଓ କ୍ରୋଧ ଦ୍ୱାରା ସଂକ୍ରମିତ ସାଂପ୍ରତିକ ସମାଜକୁ ଏଥିରୁ ଉଦ୍ଧାର ପାଇଁ ଦଣ୍ଡନାଟ ପ୍ରବୃତ୍ତି, ଲୋଭ, କ୍ରୋଧ 'ଦମନ' କରିବାକୁ ସ୍ପଷ୍ଟ ନିବେଦନ କରିଛି ।

ଅନ୍ୟ ପକ୍ଷରେ ଦଣ୍ଡନାଟକୁ ଏକ ବାସ୍ତବ ଧର୍ମୀ ନୃତ୍ୟ-ନାଟିକା (Realistic Dance-Drama ) କହିବା ଠିକ୍ ମନେ ହୁଏ । କାରଣ ଏହା ସମସ୍ତ ପ୍ରକାର ନାଟକର ଏକ ମିଶ୍ରଣ - ଖେଚୁଡି ଖାଦ୍ୟ ପରି । ଏହା ସମାଜର ସମସ୍ତ ପ୍ରକାର ରୀତିନୀତି, ଆଚାର, ବ୍ୟବହାର, ପୂଜା, ଧର୍ମ ପ୍ରଭୃତିର ଏକ ସମାହାର । ବାଳକଠାରୁ ବୃଦ୍ଧ ଯାଏ ସମସ୍ତଙ୍କୁ ସ୍ୱତନ୍ତ୍ର ଖୋରାକ ଯୋଗାଇଛି ।

ଦଣ୍ଡନାଟରେ ଚଢେୟା ଚଢେୟାଣୀ ନୃତ୍ୟ ପ୍ରସଙ୍ଗରେ ପଞ୍ଚପକ୍ଷୀ (ଶୁକ, ସାରୀ , ମୟୂର, କପୋତ ଓ ରାଜହଂସ)କୁ ବଧ ନ କରିବା ପାଇଁ ଶିବଙ୍କ ନିର୍ଦ୍ଦେଶ ବୌଦ୍ଧିକତା ଦୃଷ୍ଟିରୁ ବେଶ୍ ତାତ୍ପର୍ଯ୍ୟ ପୂର୍ଣ୍ଣ । ସତ୍ୟ, ସୁନ୍ଦର, ଶାନ୍ତି, ପ୍ରୀତି ଓ ମୈତ୍ରୀର ପ୍ରତୀକ ସ୍ୱରୂପ ଏହି ପଞ୍ଚପକ୍ଷୀକୁ ଗ୍ରହଣ କରାଯାଇଥାଏ । ଯେଉଁ ବ୍ୟକ୍ତି ଏହି ନୀରିହ ପଞ୍ଚ ପକ୍ଷୀକୁ ବଧ କରେ, ତାହାଠାରେ ଏହି ପଞ୍ଚଗୁଣ ନାହିଁ ବୋଲି ଧରି ନିଆଯିବା ଯୁକ୍ତି ସଙ୍ଗତ । ଏବଂ ସେ ଜୀବନ୍ତ-ଶବ, ଚଢେୟାର ମୃତ୍ୟୁ ପଶ୍ଚାତରେ ଏହି କାରଣ ନିହିତ । ଦଣ୍ଡନାଟ ପରଂପରା ଦ୍ୱାରା ପ୍ରବର୍ତ୍ତିତ ଏହି ପକ୍ଷୀଗୁଡିକ ସମ୍ପ୍ରତି ଜାତୀୟ ପକ୍ଷୀ ଭାବରେ ସ୍ୱୀକୃତ । ଏହି ପ୍ରସଙ୍ଗଟି ଉଭୟ ବୌଦ୍ଧିକ ଓ ରାଷ୍ଟ୍ରୀୟ ବିଚାରରେ ଗୁରୁତ୍ୱପୂର୍ଣ୍ଣ । ଏହି ପଞ୍ଚ ପକ୍ଷୀକୁ ଜାତୀୟ ପକ୍ଷୀ ଭାବରେ ଘୋଷଣା କରିବା ପୂର୍ବରୁ ଦଣ୍ଡନାଟରେ ଏହାର ଆଭାଷ ପ୍ରଥମେ ମିଳିଥିଲା । ତେଣୁ ଦଣ୍ଡନାଟର କବି ଏଥିପାଇଁ ପ୍ରଶଂସନୀୟ ।

ଆମ ଦେଶ ଗ୍ରୀଷ୍ମ ପ୍ରଧାନ ଦେଶ । ତାପ ସହ୍ୟ କରିବାର ଶକ୍ତି ଆମପାଇଁ ଏକାନ୍ତ ପ୍ରୟୋଜନ । ଏ ଦୃଷ୍ଟିରୁ ଭୋକ୍ତାଙ୍କ ଗରମ ଧୂଳିରେ ଗଡିବା ସହ ଅନ୍ୟାନ୍ୟ ଅଭିନୟ ଏବଂ ଉତ୍ତପ୍ତ ଖରାରେ ଦର୍ଶକଙ୍କ ଉତ୍ସାହ ତାପ ସହ୍ୟ ଶକ୍ତିକୁ ବୃଦ୍ଧି କରିଥାଏ । ଏହା ବ୍ୟତୀତ ଉତ୍ତପ୍ତ ପରିବେଶରୁ ନିଜକୁ ରକ୍ଷା କରିବା ପାଇଁ ଦଣ୍ଡଭୋକ୍ତାମାନେ କେବଳ ସୂତା ଲୁଗା ବ୍ୟବହାର କରନ୍ତି । କୌଣସି

ସମୟରେ ଭୋକ୍ତାମାନେ ସିନ୍ଥେଟିକ୍, ନାଇଲନ୍, ସିଲ୍କ ବସ୍ତ୍ର ବ୍ୟବହାର କରନ୍ତି ନାହିଁ । ଦଣ୍ଡନାଟରେ ଅଗ୍ନି ଦଣ୍ଡ ଖେଳ ଉତ୍ତପ୍ତ ବାୟୁ ମଣ୍ଡଳକୁ ଶାନ୍ତ କରିବାରେ ସହାୟକ ହୋଇଥାଏ । ତେଣୁ ଏହି ନାଟ ଦେଶର ଭୌଗଳିକ ପରିସ୍ଥିତିକୁ ନେଇ ସାଂସ୍କୃତିକ ରୂପରେଖ ଦେବାର ଅଭିପ୍ରେତ । ଦଣ୍ଡୁଆମାନଙ୍କ ଦୈନନ୍ଦିନ ଜୀବନର କଟକଣା ଦ୍ୱାରା ସେମାନେ ନିଜକୁ ଯେ କୌଣସି ପରିସ୍ଥିତିରେ ଶୃଙ୍ଖଳାର ସହ ସମ୍ଭାଳି ନେବାର ପ୍ରେରଣା ପାଇଥାନ୍ତି । ଏହାଦ୍ୱାରା ସେମାନେ ନିଜ ନିଜ ଇନ୍ଦ୍ରିୟ ଉପରେ ଜୟ କରିବାର ଶକ୍ତି ଅନେକ ପରିମାଣ ରେ ଲାଭ କରନ୍ତି ।

ତେଣୁ ନାଟ୍ୟଶାସ୍ତ୍ରରେ କୁହାଯାଇଛି-

ଧର୍ମମର୍ଥ୍ୟଂ ଯଶସ୍ୟଂଚ ସୋପଦେଶଂ ସମଗ୍ରହମ୍
ଭବିଷ୍ୟତଶ୍ଚ ଲୋକସ୍ୟ ସର୍ବକର୍ମାନୁଦର୍ଶକମ୍ । (୧/୧୪)

ଏହା ଦଣ୍ଡନାଟ ପାଇଁ ସମ୍ପୂର୍ଣ୍ଣ ପ୍ରଯୁଜ୍ୟ ।

ବାସ୍ତବତଃ ଦଣ୍ଡନାଟ ନାଟକପରି ମୌଖିକ କଳାର ପ୍ରଦର୍ଶନ ମଧବିତ୍ତ ଶ୍ରେଣୀର ବିଳାସ ନୁହେଁ । ଏଥିରେ ସମ୍ପୃକ୍ତ ଭୋକ୍ତାଙ୍କୁ ନାନାପ୍ରକାର କଠିନ ଓ ପୀଡାଦାୟକ କାର୍ଯ୍ୟ ସମ୍ପାଦନ ଏବଂ ପ୍ରଦର୍ଶନ କରିବାକୁ ପଡିଥାଏ । ତେଣୁ ଦଣ୍ଡନାଟକୁ ଦଣ୍ଡବ୍ରତ କୁହାଯିବା ଠିକ୍ ହେବ ।

ଆଧୁନିକ ଚଳଚ୍ଚିତ୍ର, ଦୂରଦର୍ଶନ ଓ ଯାତ୍ରାର ପ୍ରଭାବ ଦଣ୍ଡନାଟକୁ ଧୀରେ ଧୀରେ ଗ୍ରାସ କଲାଣି । ଏଥିରେ ଥିବା ଅନେକ ପାରମ୍ପରିକ ନୃତ୍ୟ ବିଲୟ ହୋଇ ସାରିଛି । ସଂପ୍ରତି ଦର୍ଶକର ଧୈର୍ଯ୍ୟ ନାହିଁ ପରମ୍ପରା ପ୍ରତି ଦୃଷ୍ଟି ଦେବାକୁ । ପ୍ରଭା ଓ ଚଢେୟା ନାଚ ପରେ ଅନେକ ନାଟ୍ୟ ଦଳ ଦର୍ଶକର ରୁଚି ଅନୁଯାୟୀ କିମ୍ବା ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କରିଦେଉଛନ୍ତି । ଆଧୁନିକ ଯନ୍ତ୍ର ସଙ୍ଗୀତର ପ୍ରବର୍ତ୍ତନ ଦଣ୍ଡନାଚର ଆଦିମତାକୁ ଅନେକ ପରିମାଣରେ ବ୍ୟାହତ କରିଛି । ତଥାପି କେତୋଟି ଦଣ୍ଡଦଳ ପରମ୍ପରାଠାରୁ ଏପର୍ଯ୍ୟନ୍ତ ଦୂରେଇ ଯାଇ ନାହାଁନ୍ତି । ସମ୍ପ୍ରତି ଏହାର ପୁନରୁଦ୍ଧାର ଆବଶ୍ୟକ । ସରକାରୀ ପୃଷ୍ଠପୋଷକତାର ବ୍ୟବସ୍ଥା ହେଲେ ସମ୍ପ୍ରତି ଏହି ସମାଜ ଧର୍ମୀ ଆଧ୍ୟାତ୍ମିକ ନାଟ୍ୟ ପରମ୍ପରା, ଅଖଣ୍ଡ ରୂପରେ ଆମ ସମାଜକୁ ଉଦ୍‌ବୋଧିତ କରିବା ସଙ୍ଗେ ସଙ୍ଗେ ସାଂସ୍କୃତିକ ପରମ୍ପରାକୁ ମଧ ଅକ୍ଷୁର୍ଣ୍ଣ ରଖି ପାରିବ ।



# ପାଦଟୀକା


୧। ସାହୁ, ଲକ୍ଷ୍ମୀ ନାରାୟଣ । ଦଣ୍ଡନାଟ । (୧ମ ସଂ) । କଟକ: ୧୯୪୭, ପୃଷ୍ଠା ୧ ।

୨। -- ଦଣ୍ଡନାଟ । ସହକାର । ୨୩/୧୧,୧୯୪୩,ପୃ ୪୭୭ ।

୩। ଆଚାର୍ଯ୍ୟ,ଭରତ । ନାଟ୍ୟଶାସ୍ତ୍ରମ୍ । ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ,୧୯୬୩, ୪/୨୬୩୪ ।

୪। ଆଚାର୍ଯ୍ୟ, ନନ୍ଦିକେଶ୍ୱର । ଅଭିନୟ ଦର୍ପଣମ୍ । ଦିଲ୍ଲୀ, ଚଉଖମ୍ବା ସଂସ୍କୃତ ପ୍ରତିଷ୍ଠାନ,୧୯୮୯, ଶ୍ଳୋ ୧୧ ।

୫। ଆଚାର୍ଯ୍ୟ,ଭରତ । ନାଟ୍ୟଶାସ୍ତ୍ରମ୍ । ଭୁବନେଶ୍ୱର-ଓଡିଶା ସାହିତ୍ୟ ଏକାଡେମୀ ୧୯୬୩,୧।୭୩ ।

୬। ଓଡିଶା କଲଚରାଲ ଫୋରମ୍ । ଓଡିଶାର ଲୋକ ସଂସ୍କୃତି । କଟକ ଗ୍ରନ୍ଥ ମନ୍ଦିର,୧୯୮୫ । ପୃ ୧୨୦ ।

୭। ରଥ, ରଘୁନାଥ । ନାଟ୍ୟମନୋରମା । ଭୁବନେଶ୍ୱର, ଓଡିଶା ସଙ୍ଗୀତ ନାଟକ ଏକାଡେମୀ, ୧୯୭୬, ୫।୭୯ ।

୮ । ଦାଶ, କୁଞ୍ଜ ବିହାରୀ, ଓଡିଆ ଲୋକଗୀତ ଓ କାହାଣୀ । ଶାନ୍ତିନିକେତନ ବିଶ୍ୱଭାରତୀ, ୧୯୫୮,ପୃ ୧୩୭ ।

୯ । ଦାଶ, ଧୀରେନ୍ । ଦଣ୍ଡନାଟ । ଭୁବନେଶ୍ୱର- ଓଡିଶା ସାହିତ୍ୟ ଏକାଡେମୀ, ୧୯୮୨, ପୃ ୨ ।

୧୦ । ଦଣ୍ଡୀଙ୍କ ଦଶକୁମାର ଚରିତ । (ନନ୍ଦୀ)

୧୧ । ଦାଶ,ଧୀରେନ୍ । ଦଣ୍ଡନାଟ । ପୃ ୨

୧୨ । ରଥ, ରଘୁନାଥ । ନାଟ୍ୟ ମନୋରମା । ୫।୮୦ ପୂର୍ବାଂଶ ।

୧୩ । ଗୈରୋଲା, ବାଚସ୍ପତି । ଭାରତୀୟ ନାଟ୍ୟ ପରମ୍ପରା ଔର ଅଭିନୟ ଦର୍ପଣଂ । ଦିଲ୍ଲୀ- ଚୌଖମ୍ବା ସଂସ୍କୃତ ପ୍ରତିଷ୍ଠାନ, ୧୯୮୯, ପୃ ୩୦ ।

୧୪ ।  ସାହୁ, ଲକ୍ଷ୍ମୀ ନାରାୟଣ । ଦଣ୍ଡନାଟ । ପୃ .୧ ।

୧୫ ।  ତତ୍ରୈବ, ପୃ ।

୧୬ ।  ମୁନି, ଭରତ । ନାଟ୍ୟଶାସ୍ତ୍ରମ୍ । ୩।୧୨ ।

୧୭ ।  ମିଶ୍ର, ପ୍ରସନ୍ନ କୁମାର । ପୂର୍ବ ଭାରତରେ ହିନ୍ଦୁ ଲୋକମିଥ୍ : ଓଡ଼ିଶା କଟକ, ଓଡ଼ିଶା, ବୁକ୍ ଷ୍ଟୋର,୧୯୮୧, ପୃ୧୫୫ ।

୧୮ ।  Chand. R.P., Bhanja Dynasty of Mayurbhanj and their Ancient Capital Khiching,Mayurbhanj : Archaelogical Department, 1929, P. 14 .

୧୯ ।  ମିଶ୍ର, ପ୍ରସନ୍ନ କୁମାର । ପୂର୍ବ ଭାରତରେ ହିନ୍ଦୁ ଲୋକମିଥ,ଓଡ଼ିଶା, ପୃ ୧୫୯ ।

୨୦ ।  ସାହୁ, ଲକ୍ଷ୍ମୀ ନାରାୟଣ । ଦଣ୍ଡନାଟ । ପୃ ୧୧୬ ।

୨୧ ।  ଶର୍ମା, ଭଗବତ ଶରଣ । ଭାରତୀୟ ସଙ୍ଗୀତ କା ଇତିହାସ । ହାଥରସ ସଙ୍ଗୀତ କାର୍ଯ୍ୟାଳୟ, ପୃ ୧୭ ।

୨୨ ।  ତତୈବ, ପୃ ୧୮ ।

୨୩ ।  ଓଡ଼ିଶା କଲ୍‌ଚରାଲ ଫୋରମ୍ । ଓଡ଼ିଶାର ଶୈବ ସଂସ୍କୃତି । (ସଂ) ଭୁବନେଶ୍ୱର, ୧୯୮୩, ପୃ ୩୦ ।

୨୪ ।  ସାଲବେଗ ।

୨୫ ।  ଗୈରୋଲା, ବାଚସ୍ପତି । ଭାରତୀୟ ନାଟ୍ୟ ପରମ୍ପରା ଔର ଅଭିନୟ ଦର୍ପଣ । ଦିଲ୍ଲୀ ଚୌଖମ୍ବା ସଂସ୍କୃତ ପ୍ରତିଷ୍ଠାନ,୧୯୮୯, ପୃ ୮୩ ।

୨୬ ।  ଦାଶ, କୁଞ୍ଜ ବିହାରୀ । ଓଡ଼ିଆ ଲୋକଗୀତ ଓ କାହାଣୀ । ପୃ ୧୩୬

୨୭ ।  ମହାପାତ୍ର, ଖଗେଶ୍ୱର । ଚର୍ଯ୍ୟାଗୀତିକା । କଟକ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୭୫, ପୃ ୧୪୪ ।

୨୮ ।  ମହାପାତ୍ର, ମହେଶ୍ୱର । ଅଭିନୟ ଚନ୍ଦ୍ରିକା । ୨ୟ ଭାଗ (ଭାବଖଣ୍ଡ), ପୁରୀ, ଜଗନ୍ନାଥ ଐତିହାସିକ ଗବେଷଣା ସମିତି, ୧୯୬୭,୨୫୦-୨୫୨ ।

୨୯ । ତତ୍ରୈବ, ଶ୍ଳୋ ୫୦୪ ।

୩୦ । ସାହୁ, ଲକ୍ଷ୍ମୀ ନାରାୟଣ । ଦଣ୍ଡନାଟ । ପୃ ୫୦ ।

୩୧ । ତତ୍ରୈବ, ପୃ ୯୫ ।

୩୨ । ନେପାକ,ଭାଗୀରଥି, ଓଡିଶାର ଆଦିବାସୀ । ଭୁବନେଶ୍ୱର : ଭଗୀରଥ ପ୍ରକାଶନ, ୧୯୭୭,ପୃ ୪୫-୪୬ ।

୩୩ । ପଣ୍ଡା, ନିମାଇଁ ଚରଣ । ''ପଶ୍ଚିମ ଓଡିଶାର ଲୋକନାଟ୍ୟ ପରମ୍ପରା ଏକ ସଂକ୍ଷିପ୍ତ ବିବେଚନ ।'' ଓଡିଶା ଯାତ୍ରା ଓ ଲୋକନାଟ୍ୟ ପରିକ୍ରମା । ବୈଷ୍ଣବ ଚରଣ ସାମଲ, ହୃଷିକେଷ ମଲ୍ଲିକ । କଟକ, ବୁକ୍ସ ଏଣ୍ଡ ବୁକ୍ସ, ପୃ. ୨୪୨ ।

୩୪ । ରମେଶ ଚନ୍ଦ୍ର ମହାରଥୀଙ୍କ ସହ ସାକ୍ଷାତକାରରୁ ସଂଗୃହୀତ ।

୩୫ । ନାୟକ, ସନ୍ୟାସୀ, କାମନାଦଣ୍ଡ । ବ୍ରହ୍ମପୁର, ସନ୍ତୋଷୀ ପ୍ରକାଶନୀ,୧୯୮୪,ପୃ. ୬୫ ।

୩୬ । ସନତ କୁମାର ସଂହିତା,୧୬ଶ ଭାଗ, ପୃ ୪୬ ।

୩୭ । ଦାସ, ଭିକାରୀ ଚରଣ । ବୃହତ୍ ଦଣ୍ଡନାଟତତ୍ତ୍ୱ ଗୀତାବଳୀ । କଟକ, ୧୯୫୭, ପୃ . ୧୧ ।

୩୮ । ଦାସ,କାର୍ତ୍ତିକ । ଦଣ୍ଡନାଟ । କଟକ, ବାଣାପାଣି ଭଣ୍ଡାର, ୧୯୨୯, ପୃ.୧୭ ।

୩୯ । ନାୟକ,ସନ୍ୟାସୀ । ବୃହତ୍ କାମନା ଦଣ୍ଡ । ପୃ. ୫୨ ।

୪୦ । ଚନ୍ଦ୍ରମଣି ପ୍ରଧାନଙ୍କ ସହ ସାକ୍ଷାତକାରରୁ ସଙ୍ଗୃହୀତ ।

୪୧ । ନାୟକ, ସନ୍ୟାସୀ । ବୃହତ୍ କାମନା ଦଣ୍ଡ । ପୃ .୫୪ ।

୪୨ । ଦାଶ, ଧୀରେନ୍ । ଦଣ୍ଡନାଟ । ପୃ.୧୯ ।

୪୩ । ସାହୁ, ଲକ୍ଷ୍ମୀନାରାୟଣ । ଦଣ୍ଡନାଟ । ପୃ .୮୯-୯୦ ।

୪୪ । ତତ୍ରୈବ, ପୃ.୧୧୦ ।

୪୫ । ତ୍ରିପାଠୀ, ଦେବୀ ପ୍ରସାଦ । ''ଦଣ୍ଡନାଟର ପୃଷ୍ଠଭୂମି ।'' ଧ୍ରୁବବାଣୀ । ୧/ଏପ୍ରିଲ, ୧୯୭୮,ପୃ.୧୯ ।

୪୬ । ଦାସ, କାର୍ତ୍ତିକ, ଦଣ୍ଡନାଟ । ପୃ.୧୭ ।

୪୭ । କୁଶାପଲ୍ଲୀ ଗ୍ରାମରୁ ସଙ୍ଗୃହୀତ ।

୪୮ । ଭଗବଦ୍ ଗୀତା ,୨/୫୯ ।

୪୯ । ତତ୍ରୈବ, ୨/୬୯ ।

୫୦ । ସାହୁ, ଲକ୍ଷ୍ମୀନାରାୟଣ ,ଦଣ୍ଡନାଟ । ପୃ.୯୪ ।

୫୧ । ତତ୍ରୈବ,ପୃ ୪ ।

୫୨ । ପ୍ରଚଳିତ ଦଣ୍ଡନାଟରୁ ସଂଗୃହୀତ ।

୫୩ । ବ୍ରହ୍ମପୁର ଅଞ୍ଚଳରୁ ସଂଗୃହୀତ ।

୫୪ । ଜିଲୁଣ୍ଡିରୁ ସଂଗୃହୀତ ।

୫୫ । କବିଚନ୍ଦ୍ର, ଆନନ୍ଦ । ଦଣ୍ଡନାଟ । ବେଲଗୁଣ୍ଠା, ଅଞ୍ଚଳରୁ ସଂଗୃହୀତ ।

୫୬ । ତତ୍ରୈବ ।

୫୭ । ତତ୍ରୈବ ।

୫୮ । ନାୟକ,ସନ୍ୟାସୀ । କାମନା ଦଣ୍ଡ । ପୃ ୨୭ ।

୫୯ । ତତ୍ରୈବ, ପୃ ୨୮ ।

୬୦ । କବିଚନ୍ଦ୍ର, ଆନନ୍ଦ । ଦଣ୍ଡନାଟ । (ସଂଗୃହୀତ )

୬୧ । ନାୟକ, ସନ୍ୟାସୀ । କାମନାଦଣ୍ଡ । ପୃ ୩୮ ।

୬୨।୬୩ । କବିଚନ୍ଦ୍ର,ଆନନ୍ଦ । ଦଣ୍ଡନାଟ । (ସଂଗୃହୀତ)

୬୪ । ସାହୁ, ଲକ୍ଷ୍ମୀନାରାୟଣ । ଦଣ୍ଡନାଟ । ପୃ ୪୩-୪୪ ।

୬୫ । ପାଢୀ, ବେଣୀ ମାଧବ । ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତି । କଟକ, ଗ୍ରନ୍ଥମନ୍ଦିର, ୧୯୯୨, ପୃ ୭୯ ।

୬୬ । ନାୟକ, ସନ୍ୟାସୀ । କାମନାଦଣ୍ଡ । ପୃ ୧୧୭ ।

୬୭ । ପାଢୀ, ବେଣୀ ମାଧବ । ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତି । ପୃ ୭୩ ।

୬୮ । ରଥ, ରଘୁନାଥ । ନାଟ୍ୟ ମନୋରମା ।୫।୮୯ ।

୬୯ । ମହାପାତ୍ର,ଖଗେଶ୍ୱର । ଚର୍ଯ୍ୟାଗୀତିକା । ପୃ ୧୧୮ ।

୭୦ । ସାହୁ,ଲକ୍ଷ୍ମୀ ନାରାୟଣ । ଦଣ୍ଡନାଟ । ପୃ ୩୯ ।

୭୧ । ପଣ୍ଡା,ନିରଞ୍ଜନ ଓ ଧୀରେନ୍ ଦାଶ । ଓଡିଶାର ପାଲା । ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ, ୧୯୮୬, ପୃ ୭୮ ।

୭୨ । ନାୟକ, ସନ୍ୟାସୀ । କାମନାଦଣ୍ଡ । ପୃ ୫ ।

୭୩ । ତତ୍ରୈବ, ପୃ ୧୧୪ ।

୭୪ । ପଟ୍ଟନାୟକ,ରଘୁନାଥ । ଦଣ୍ଡନାଟ । (ଝିଲୁଣ୍ଡିରୁ ସଂଗୃହୀତ)

୭୫ । ସାହୁ, ଲକ୍ଷ୍ମୀ ନାରାୟଣ । ଦଣ୍ଡନାଟ ।ପୃ ୭୯ ।

୭୬ । କୁମାର ହସନ । ସମ୍ବଲପୁରୀ ଲୋକ ସାହିତ୍ୟ । କଟକ, କେ.କେ.ମିଶ୍ର ଏଣ୍ଡ୍ କୋ, ୧୯୮୩, ପୃ ୮ ।

୭୭ । ମହାପାତ୍ର,ଚକ୍ରଧର,ଓଡିଶାର ଲୋକଗୀତ । ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ,ପୃ ୩୯୯-୪୦୦ ।

୭୮ । କର, ମହାଦେବ ଗଞ୍ଜିଆଗଳ ଦଣ୍ଡନାଟ । ସାରୁ (ଗଞ୍ଜାମ) ଗୋବିନ୍ଦ ଚନ୍ଦ୍ର ପୁସ୍ତକାଳୟ, ୧୯୩୬, ପୃ ୧ ଓ ୩ ।

୭୯ । ବିଶି, ଭରତଚନ୍ଦ୍ର । ଦଣ୍ଡନାଟ । କଟକ, ପଦ୍ମାଳୟା ପ୍ରକାଶନୀ, ପୃ, ୫ ।

୮୦ । ଆଚାର୍ଯ୍ୟ, ଧନଞ୍ଜୟ, ଦଶରୂପକମ୍ । ବାରାଣସୀ, ଚୌଖମ୍ବା ବିଦ୍ୟାଭବନ, ୧୯୮୮,୪/୧ ।

୮୧ । ମୁନି,ଭରତ, ନାଟ୍ୟଶାସ୍ତ୍ରମ୍, ଭୁବନେଶ୍ୱର,ଓଡିଶା ସାହିତ୍ୟ ଏକାଡେମୀ, ୧୯୬୩,୬/୪୯-୫୦ ।

୮୨ । କବିରାଜ, ବିଶ୍ୱନାଥ । ସାହିତ୍ୟ ଦର୍ପଣ, ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ,୧୯୭୫,ପୃ,୨୪୨-୨୪୩ ।

୮୩ । Nicol, A. The Theory of Drama (Indian reprint) New Delhi : Doaba House, 1974, p. 192.

୮୪ । ନାୟକ, ସନ୍ୟାସୀ, କାମନାଦଣ୍ଡ, ପୃ,୭୮-୭୯ ।

୮୫ । ପଟ୍ଟନାୟକ, ରଘୁନାଥ, ଦଣ୍ଡନାଟ । (ସଂଗୃହୀତ)

୮୬ । ଗାମୁଣ୍ଡି (ଗଞ୍ଜାମରୁ ସଂଗୃହୀତ )

୮୭ । ପାଢୀ, ବେଣୀମାଧବ, ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତି । କଟକ, ଗ୍ରନ୍ଥମନ୍ଦିର , ୧୯୯୨, ପୃ, ୮୫ ।

୮୮ । ମହାନ୍ତି, ମନୀନ୍ଦ୍ର । ଓଡିଆ ଲୋକନାଟକରେ ଆନଦ୍ଧ ବାଦ୍ୟଯନ୍ତ୍ର । କୋଣାର୍କ,ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ, ୭। ୧୯୯୩ ।

୮୯ । ସାହୁ, ଲକ୍ଷ୍ମୀନାରାୟଣ । ଦଣ୍ଡନାଟ,ପୃ , ୩୫ ।

୯୦ । ରାୟ, ବୁଦ୍ଧଦେବ । ଲୋକସାଙ୍ଗତିକୀ । କଲିକତା ଫାର୍ମାକେଏଲ୍ ଏମ୍.ପ୍ରା. ଲି, ୧୯୮୭, ପୃ ୨୬ ।

୯୧ । ତତ୍ରୈବ, ପୃ ,୨୭ ।

୯୨ । ହରିଚନ୍ଦନ, ନୀଳାଦ୍ରିଭୂଷଣ । ଜାପାନୀ ନୋ' ନାଟକ ଓ ଓଡିଆ ଲୋକନାଟ୍ୟ । ଝଙ୍କାର, ଅକ୍ଟୋବର, ୧୯୮୨,ପୃ ୫୮୮ ।

୯୩ । ସାହୁ, ଲକ୍ଷ୍ମୀନାରାୟଣ । ଦଣ୍ଡନାଟ । ପୃ,୮୫ ।

*****

# ସହାୟକ ଗ୍ରନ୍ଥସୂଚୀ

## ସଂସ୍କୃତ

୧ । ଆଚାର୍ଯ୍ୟ, ଧନଞ୍ଜୟ; ଦଶରୂପକମ୍, । ବାରାଣସୀ : ଚୌଖମ୍ବା ବିଦ୍ୟାଭବନ, ୧୯୮୮ ।

୨ । ଆଚାର୍ଯ୍ୟ,ନନ୍ଦିକେଶ୍ୱର । ଅଭିନୟ ଦର୍ପଣମ୍, ଦିଲ୍ଲୀ,ଚୌଖମ୍ବା ସଂସ୍କୃତ ପ୍ରତିଷ୍ଠାନ, ୧୯୮୯ ।

୩ । ଆଚାର୍ଯ୍ୟ, ଭରତ । ନାଟ୍ୟଶାସ୍ତ୍ରମ୍ । ଭୁବନେଶ୍ୱର,ଓଡିଶା ସାହିତ୍ୟ ଏକାଡେମୀ, ୧୯୬୩ ।

୪ । କବିରାଜ, ବିଶ୍ୱନାଥ । ସାହିତ୍ୟ ଦର୍ପଣ । ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ, ୧୯୭୫ ।

୫ । ମହାପାତ୍ର ମହେଶ୍ୱର । ଅଭିନୟ ଚନ୍ଦ୍ରିକା । ପୁରୀ, ଜଗନ୍ନାଥ ଐତିହାସିକ ଗବେଷଣା ସମିତି,୧୯୬୭ ।

୬ । ରଥ, ରଘୁନାଥ । ନାଟ୍ୟମନୋରମା । ଭୁବନେଶ୍ୱର, ଓଡିଶା ସଙ୍ଗୀତ ନାଟକ ଏକାଡେମୀ, ୧୯୭୬ ।

୭ । ଶ୍ରୀମଦ୍ ଭଗବତ୍ ଗୀତା ।

୮ । ସନତକୁମାର ସଂହିତା ।


## ଓଡିଆ


୯ । ଓଡିଶା କଲଚରାଲ ଫୋରମ୍ । ଓଡିଶାର ଶୈବସଂସ୍କୃତି । (ସଂ) ଭୁବନେଶ୍ୱର, ୧୯୮୩ ।

୧୦ । କବିଚନ୍ଦ୍ର, ଆନନ୍ଦ । ଦଣ୍ଡନାଟ । କଟକ, ଦାଶରଥି ପୁସ୍ତକାଳୟ, ୧୯୭୪ ।

୧୧ । କୁମାର, ହସନ୍ । ସମ୍ବଲପୁରୀ ଲୋକ ସାହିତ୍ୟ । କଟକ, କେ.କେ ମିଶ୍ର ଏଣ୍ଡ୍ କୋ, ୧୯୮୩ ।

୧୨ । କର, ମହାଦେବ । ଗଞ୍ଜିଆଗଳ ଦଣ୍ଡନାଟ । ସାରୁ, ଗୋବିନ୍ଦଚନ୍ଦ୍ର ପୁସ୍ତକାଳୟ, ୧ ୩୬ ।

୧୩ । ଦାଶ,କୁଞ୍ଜବିହାରୀ । ଓଡିଆ ଲୋକଗୀତ ଓ କାହାଣୀ । ଶାନ୍ତିନିକେତନ, ବିଶ୍ୱଭାରତୀ, ୧୯୫୮ ।

୧୪ । ଦାଶ,ଧୀରେନ୍ । ଦଣ୍ଡନାଟ । ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ, ୧୯୮୨ ।

୧୫ । ଦାଶ, କାର୍ତ୍ତିକ । ଦଣ୍ଡନାଟ । କଟକ, ବୀଣାପାଣି ଭଣ୍ଡାର, ୧୯୨୯

୧୬ । ଦାସ, ଭିକାରୀଚରଣ । ବୃହଦ୍ ଦଣ୍ଡନାଟ ତତ୍ତ୍ୱ ଗୀତାବଳୀ । କଟକ, ୧୯୫୭ ।

୧୭ । ନେପାକ,ଭାଗୀରଥି । ଓଡ଼ିଶାର ଆଦିବାସୀ । ଭୁବନେଶ୍ୱର, ଭଗୀରଥ ପ୍ରକାଶନ, ୧୯୭୭ ।

୧୮ । ନାୟକ, ସନ୍ୟାସୀ । କାମନାଦଣ୍ଡ । ବ୍ରହ୍ମପୁର, ସନ୍ତୋଷୀ ପ୍ରକାଶନୀ, ୧୯୮୪ ।

୧୯ । ପଟ୍ଟନାୟକ,ରଘୁନାଥ । ଦଣ୍ଡନାଟ । କିଳୁଣ୍ଡି, ଗଞ୍ଜାମ (ପୋଥି) ।

୨୦ । ପାଢ଼ୀ, ବେଣୀମାଧବ । ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତି । କଟକ, ଗ୍ରନ୍ଥମନ୍ଦିର, ୧୯୯୨ ।

୨୧ । ପଣ୍ଡା, ନିରଞ୍ଜନ ଓ ଧୀରେନ୍ଦ୍ର ଦାଶ । ଓଡ଼ିଶାର ପାଲା । ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୮୬ ।

୨୨ । ପଣ୍ଡା ସତ୍ୟନାରାୟଣ । ଭାଷଣ ମଞ୍ଜୁଷିକା । ବାଲେଶ୍ୱର,ଶାନ୍ତି ପ୍ରକାଶନୀ, ୧୯୯୩ ।

୨୩ । ମିଶ୍ର, ପ୍ରସନ୍ନ କୁମାର । ପୂର୍ବ ଭାରତରେ ହିନ୍ଦୁ ଲୋକମିଥି, ଓଡ଼ିଶା,କଟକ, ଓଡ଼ିଶା ବୁକ୍ ଷ୍ଟୋର, ୧୯୮୧ ।

୨୪ । ମହାପାତ୍ର,ଖଗେଶ୍ୱର । ଚର୍ଯ୍ୟାଗୀତିକା । କଟକ,ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୬୫ ।

୨୫ । ମହାପାତ୍ର,ଚକ୍ରଧର । ଓଡ଼ିଶାର ଲୋକଗୀତ । ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ । କଟକ ।

୨୬ । ସାହୁ, ଲକ୍ଷ୍ମୀନାରାୟଣ । ଦଣ୍ଡନାଟ । (୧ମ ସଂ) କଟକ, ୧୯୪୭ ।

୨୭ । ସାମଲ,ବୈଷ୍ଣବଚରଣ ଓ ହୃଷିକେଶ ମଲ୍ଲିକ । ଓଡ଼ିଆ ଯାତ୍ରା ଓ ଲୋକନାଟ୍ୟ ପରିକ୍ରମା । କଟକ, ବୁକ୍ସ ଏଣ୍ଡ ବୁକ୍ସ ।

## ହିନ୍ଦୀ

୨୮ । ଗୈରୋଲା, ବାଚସ୍ପତି । ଭାରତୀୟ ନାଟ୍ୟପରମ୍ପରା ଔର ଅଭିନୟ ଦର୍ପଣ । ଦିଲ୍ଲୀ, ଚୌଖମ୍ବା ସଂସ୍କୃତ ପ୍ରତିଷ୍ଠାନ, ୧୯୮୯ ।

୨୯ । ଶର୍ମା, ଭଗବତଶରଣ । ଭାରତୀୟ ସଙ୍ଗୀତକା ଇତିହାସ । ହାଥରସ,ସଙ୍ଗୀତ କାର୍ଯ୍ୟାଳୟ ।

## ବଙ୍ଗଳା

୩୦ । ରାୟ,ବୁଦ୍ଧଦେବ, ଲୋକସଙ୍ଗୀତିକା । କଲିକତା: ଫାର୍ମା କେଏଲ୍ ଏମ୍ ପ୍ରା:ଲି ୧୯୮୭ ।

୩୧ । ରାୟ,ସୁକୁମାର । ଲୋକସଙ୍ଗୀତ ଜିଜ୍ଞାସା । କଲିକତା : ଫାର୍ମା କେଏଲ୍ଏମ୍ ପ୍ରା:ଲି, ୧୯୮୭ ।

## ଇଂରାଜୀ

32. Chand. R.P., Bhanja Dynasty of Mayurbhanja and their Ancient Capital Khiching, Mayurbhanja Archaelogical De partment' 1929.

33. Nicoll, A .The Theory of Drama (India reprint) New Delhi, Doaba House, 1974.

## ପତ୍ରପତ୍ରିକା

୧ । ତ୍ରିପାଠୀ, ଦେବୀପ୍ରସାଦ । "ଦଣ୍ଡନାଟର ପୃଷ୍ଠଭୂମି" ଧ୍ରୁବବାଣୀ । ୫ । ଅପ୍ରେଲ୍, ୧୯୮୨ ।

୨ । ପାଣି, ପ୍ରଫୁଲ୍ଲ କୁମାର । 'ଓଡିଶାରେ ଦଣ୍ଡନାଟର ପରମ୍ପରା", ଗୋଲ୍ଲର୍ଣ୍ଣିକା ୩ । ୯୦ ।

୩ । ବିଶ୍ୱାଳ, କୃପାସିନ୍ଧୁ । "ଦଣ୍ଡନାଟ", ଝଙ୍କାର । ୩୪।୯ (ଡିସେମ୍ବର), ୧୯୮୨ ।

୪ । ମହାନ୍ତି,ମହିନ୍ଦ୍ର । "ଓଡିଆ ଲୋକନାଟକରେ ଆନଦ୍ଧ ବାଦ୍ୟଯନ୍ତ୍ର ।" କୋଣାର୍କ, ୮୭।୧୯୯୩ ।

୫ । ହରିଚନ୍ଦନ, ନୀଳାଦ୍ରିଭୂଷଣ । "ଜାପାନୀ ନୋ' ନାଟକ ଓ ଓଡିଆ. ଲୋକନାଟ୍ୟ ।" ଝଙ୍କାର । ୩୪।୮ (ଅକ୍ଟୋବର) , ୧୯୮୨ ।


*****